# ସମରୁ ଯେତେ ଆଶା

ଓ ଅନ୍ୟ ଦୁଇଟି ଉପନ୍ୟାସ





# ମଣିଷ ଯେତେ ଆଶା
# ଓ
# ଅନ୍ୟ ଦୁଇଟି
# ଉପନ୍ୟାସ

ଶୁକଦେବ ସାହୁ

ମନର ଯେତେ ଆଶା ଓ
ଅନ୍ୟ ଦୁଇଟି ଉପନ୍ୟାସ

ଲେଖକ :
ଶୁକଦେବ ସାହୁ

ପ୍ରକାଶକ :
ନାଳନ୍ଦା
ବିନୋଦବିହାରୀ
କଟକ-୭୫୩୦୦୨

ନୂତନ ନାଳନ୍ଦା ସଂସ୍କରଣ
୧୫ ଅଗଷ୍ଟ, ୧୯୭୯

ମୁଦ୍ରଣ :
ବୀଣାପାଣି ପ୍ରିଣ୍ଟର୍ସ
କଟକ

ମୂଲ୍ୟ : ବାରଟଙ୍କା ପଚାଶ ପଇସା

**Manara Jete Asha O**
**Anya Duiti Upanyasa**
Written by
**Sukadev Sahu**

Published by
**Nalanda**
Binodebehari
Cuttack-753002

Nalanda New Edition
15th August, 1979

Printed at :
**Binapani Printers**
Cuttack

**Price :**
**Rupees Twelve & Fifty Paise**

## ମୁଖଶାଳା :



୧୯୫୧ ମସିହାରେ ମନର ଯେତେ ଆଶା, ପରବାସୀ ଓ ଝଡ଼ ଓ ଝରାଫୁଲ ପ୍ରଥମେ ପ୍ରକାଶ ପାଇଥିଲା । ଏହା ପରେ ବହି ଗୁଡ଼ିକର ଆଉ କେତୋଟି ସଂସ୍କରଣ ପ୍ରକାଶ ପାଇ ଶେଷ ହୋଇ-ଯାଇଛି । ଏହା ପ୍ରଥମେ ପ୍ରକାଶିତ ହେବା ବେଳେ ବହୁ ବନ୍ଧୁ, ପାଠକ, ପାଠିକା ବହିଗୁଡ଼ିକର ଉଚ୍ଛ୍ୱସିତ ପ୍ରଶଂସା କରି ମୋତେ ଯେପରି ଉତ୍ସାହ ପ୍ରଦାନ କରିଥିଲେ—ତା'ହା ଭୁଲିବାର ନୁହେଁ । ବିଶେଷ ଭାବେ, 'ମନର ଯେତେ ଆଶା' ପାଠକ ପାଠିକାମାନଙ୍କର ହୃଦୟକୁ ସ୍ପର୍ଶ କରି ଅକୁଣ୍ଠିତ ସ୍ନେହ ଲାଭ କରିଥିଲା ।

ସମୟର ସ୍ରୋତରେ ଏହା ମଧ୍ୟରେ ଦୀର୍ଘ ଅଠେଇଶ ବର୍ଷ ବିତିଗଲାଣି । ଲେଖକ ଜୀବନର ବହୁ ସ୍ମୃତିବିଜଡ଼ିତ ସେହି ଦିବାରାତ୍ରିର ସ୍ୱପ୍ନଗୁଡ଼ିକ ବ୍ୟଥା, ବେଦନା ଓ ମଧୁରତାରେ ଅତୀତରେ କେତେ ସୁନ୍ଦର ଓ ପ୍ରୀତିଦାୟକ ଥିଲା—ତାହା ଆଜି କଳ୍ପନାର ବାହାରେ । ଜୀବନର ପ୍ରଥମ କର୍ମକ୍ଷେତ୍ର କଲିକତା, ୨୨ ନମ୍ବର ମଣ୍ଟଲେନ୍—ସେହିଠାରେ ଯେଉଁ କେତୋଟି ବର୍ଷ ବିତିଛି ତାହାର କର୍ମ ପ୍ରବାହର ଧାରା ପରବର୍ତ୍ତୀ ଜୀବନରେ ମୋତେ ବହୁତ ବାଟ ଆଗେଇ ନେଇଛି । ବିଗତ ଦିନର ପ୍ରବାସୀ ଜୀବନର ସ୍ମୃତି—ସାହିତ୍ୟ ସାଧନା ଭିତରେ ବଡ଼ ହେବା ପାଇଁ ସ୍ୱପ୍ନ, ଦୁଃଖ ଭିତରେ ଆଶା ଆଉ ଆନନ୍ଦର ଆଲୋକ ଆଜି ବି ମାନସମୁକୁରରେ ବାରଂବାର ପ୍ରତିଫଳିତ ହେଉଛି । ଆଜି କଟକର କର୍ମବହୁଳ ଜୀବନ ଭିତରେ ସେଦିନର ସରସତା ଆଉ ଫେରି ଆସିବ ନାହିଁ ।

ଏହି ତିନୋଟି ଉପନ୍ୟାସ ଲେଖିବା ବେଳର ମନର ଅବସ୍ଥା ଆଜି ଜୀବନର ମଧ୍ୟାହ୍ନରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ଅତୀତ ଜୀବନରେ ଯାହା ଥିଲି ସହଜ ସୁନ୍ଦର ସେହି ଅନୁଭୂତି କଳ୍ପନା ଆଜି ନିଜକୁ କିପରି ଖାପ ଖୁଆଇ ପାରୁନାହିଁ । ଏଣୁ ସ୍ଥଳ ବିଶେଷରେ ବହୁଗୁଡ଼ିକରେ ପରିବର୍ତ୍ତନ କରିବାକୁ ଇଚ୍ଛା ଥିଲେ ବି ତାହା କରିପାରିଲି ନାହିଁ । କାରଣ ଯୌବନ ବସନ୍ତର ପ୍ରଥମ ସୁରଭିତ ସ୍ପର୍ଶ ମନପ୍ରାଣକୁ ଆମୋଦିତ କରି ଯେଉଁ ମଧୁରଛନ୍ଦ ତୋଳିଥିଲି, ସେହି ପୁଲକଭରା ସୁରଭିତ ଛନ୍ଦକୁ ପୁଣି ନିଜ ହାତରେ ମାରି ଦିଅନ୍ତି କିପରି !

ଏହି ତିନୋଟି ଉପନ୍ୟାସ ଏକତ୍ର ପ୍ରକାଶିତ ହେବାବେଳେ ପୁଣି ଥରେ ମୋର ପ୍ରିୟ ପାଠକ, ପାଠିକା ଓ ବନ୍ଧୁମାନଙ୍କୁ ସ୍ମରଣ କରୁଛି । ଆଶା ରଖୁଛି, ସେମାନଙ୍କର ସେହି ଅଯାଚିତ ସ୍ନେହ କରୁଣା ମୋ ପ୍ରତି ଊଣା କରିବେ ନାହିଁ ।

ଶେଷରେ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ମୋର ପ୍ରିୟ ଜନ୍ମମାଟି ଧୂମାତ ଇନ୍ଦ୍ରପୁରରେ ସ୍ଥାପିତ ମଧୁସୂଦନ ପାଠାଗାର—ତାର କଳେବର କ୍ଷୁଦ୍ର ହେଲେ ବି—ଯୌବନରେ ମୋର ପଢ଼ିବାର ଯେଉଁ ଅଦମ୍ୟ ତୃଷ୍ଣା, ତାହା ବହୁ ପରିମାଣରେ ମେଣ୍ଟାଇଛି । 'ମଧୁସୂଦନ ପାଠାଗାର' ମନରେ ଯେଉଁ ସ୍ୱପ୍ନ, ଯେଉଁ ପ୍ରେରଣା ଭରିଦେଇଛି—ତାହା କଦାପି ଭୁଲି ହେବ ନାହିଁ । ସେହି ପାଠାଗାର ଓ ତାର ସ୍ଥାପୟିତାମାନଙ୍କୁ ମୋର ହୃଦୟର ଶ୍ରଦ୍ଧା, ପ୍ରୀତି ଓ ଉଚ୍ଛ୍ୱସିତ ଆବେଗ ଜଣାଇ ନିଜକୁ ଧନ୍ୟ ମନେ କରୁଛି ।

କବିତା ଭବନ
ଯୋବ୍ରା, କଟକ-୩
୧୫ ଅଗଷ୍ଟ, ୧୯୭୯

ଶୁକଦେବ ସାହୁ

ଜୀବନଟା କ ଖାଲି ଆକୁଳ ନୟନରେ ଚୁହିଁବା
କୁଟୀରେ ଏକା ବସି ଉଦାସ ଗୀତ ନିତ ଗାଇବା
ପାଗଳ ବେଶ ସାଜି
କ୍ଷିପ୍ତ ଘନ ଆଜି
ଉଦାସେ କହୁଯାଏ ଯାହାକୁ ଖୋଜୁ ସେ ତୋ କାହିଁବା ?

ବୈକୁଣ୍ଠନାଥ ପଟ୍ଟନାୟକ



ଶୁକଦେବ ସାହୁଙ୍କ 'ମନର ଯେତେ ଆଶା' ମୂଳରେ ଅବଶ୍ୟ କୌଣସି ବିଶିଷ୍ଟ ଜୀବନ ଦର୍ଶନ ନଥିଲା ପରି ମନେହୁଏ । ଅଥଚ ଅତି ସାଧାରଣ ଘଟଣାକୁ ଅତି ସୁନ୍ଦର, ତରଳ ଓ କମନୀୟ ଚିତ୍ରଣ ଦ୍ୱାରା ଲେଖକ ନିଶ୍ଚେ ଶକ୍ତିଶାଳୀ ଲେଖନୀର ପରିଚୟ ଦେଇଛନ୍ତି । ଭାଷା ଅତି ସ୍ୱାଭାବିକ, ଅର୍ଥାତ୍ ଭାବ ସଙ୍ଗେ ସଙ୍ଗେ ସହଜ । ବର୍ଣ୍ଣନା ସାଙ୍ଗରେ ସାମୟିକ ଘଟଣାକୁ ଖାପ ଖାଇବା ଭଳି ଅତି ସାଧାରଣ ତୁଳନା ବଡ଼ ମନୋରମ ଓ ମନରଞ୍ଜକ ମଧ୍ୟ ।

"ଡଗର"



'ମନର ଯେତେ ଆଶା' ଉପନ୍ୟାସଟି ପଢ଼ିଲି । ପଢ଼ୁ ପଢ଼ୁ ମାଳତୀର ବେଦନାରେ ନିଜକୁ ଉବୁଡ଼ୁବୁ ନ କରି ରହି ପାରିଲି ନାହିଁ । ଅନେକଥର ଆଖିରୁ ମୋର ଝରି ପଡ଼ିଲା ସମ୍ବେଦନାର ଅଶ୍ରୁ । ମଝିରେ ମଝିରେ ଉପନ୍ୟାସ ସହିତ ମାଳର ଗତି ଏପରି କରୁଣ ଅଶ୍ରୁସିକ୍ତ ହୋଇଛି ଯେ ପାଠକ ସେଥିରେ ସମଭାଗୀ ନ ହୋଇ ରହିପାରେ ନାହିଁ । ଏପରି ଏକ ସାର୍ଥକ ଉପନ୍ୟାସ ଲେଖି ଶୁକଦେବବାବୁ ଉତ୍କଳ ସାହିତ୍ୟକୁ ଋଦ୍ଧିମନ୍ତ କରିଥିବାରୁ ଧନ୍ୟବାଦାର୍ହ ହେବା ସଙ୍ଗେ ସଙ୍ଗେ ମୋର ଅଭିନନ୍ଦନ ନିଅନ୍ତୁ ।

କେଶବ ଚନ୍ଦ୍ର ମେହେର

ସୋନପୁର





ଚେହ୍ନୁଅର ଭରା ଶରତ ।

ନଈ ସେପାଖରେ କାଶଫୁଲର ହସ ସହିତ ହସ ମିଳାଇ ଏପାଖରେ ଜହ୍ନିଫୁଲ ବି ହସି ଉଠିଲଣି । କୁଆଡ଼ର ଏ ପବନଟା ବହି ଆସି ମନରେ ଗୋଟାଏ କି ନୂଆ ନିଶା ଲଗାଇ ଦେଉଥାଏ । କେଉଁ ଅଜଣା ଭାବନାରେ ଗୋଡ଼ ଦିଇଟା ମୋର ତଳେ ଲାଗୁ ନ ଥାଏ । ମନଟା ଯାଇ କେଉଁ ଦୂର ପବନରେ ଉଡ଼ୁଥାଏ ।

ସେପାଖ ଘରୁ ବୋଉ ଡାକିଲା, ମାଲ 'ଭଜା' ଭଜା ସରିଲା ? ବୋଉ ଡାକ ଶୁଣି କଡ଼ାକୁ ଅନାଇଲି ବେଳକୁ ଭଜାଗୁଡ଼ା ପୋଡ଼ିଗଲାଣି । ତରବରରେ ଚୁଲି ଉପରୁ କଡ଼ାଟା ଓହ୍ଲାଇ ଭଜାଗୁଡ଼ା କାଢ଼ି ପକାଇଲି । ବୋଉ ସେତିକିବେଳେ ଘର ଭିତରକୁ ପଶି ଆସିଲା । ବୋଉକୁ ଦେଖି ଦେହରୁ ରକ୍ତ ଶୁଖିଗଲା ମୋର । କଡ଼ାକୁ ଅନାଇ ବୋଉ କହିଲା, କାଲେ କଣ କରୁଥିଲୁ କି, ଭଜାଗୁଡ଼ାକ ପୋଡ଼ି ଅଙ୍ଗାର ହୋଇଗଲାଣି ? ତୁନି ହୋଇ ତଳକୁ ମୁହଁ ପୋତି ଛିଡ଼ା ହେଲି । ବୋଉ କହିଲା, ଏତେ ଝିଅଟାଏ ହେଲୁଣି—ଏଯାଏ ଟିକିଏ ରାନ୍ଧି ବାଢ଼ି ଶିଖିଲୁ ନାହିଁ, ଆଉ ବାହା ହେଲେ ଶାଶୂ ଶଶୁରଙ୍କୁ ରାନ୍ଧି ବାଢ଼ି କେମିତି ପରଷିବୁ ମ !

କା ଉପରେ ରାଗୁଚ ମାଉସୀ ? ପରିଚିତ ଗଳା ସ୍ୱର ଶୁଣି ଅନାଇଲି । ଦେବଭାଇ ହସି ହସି ଘର ଭିତରକୁ ପଶି ଆସୁଥାନ୍ତି । ଦେବଭାଇଙ୍କୁ ଦେଖି ବୋଉର ରାଗଟା ପାଣି ପରି ଥଣ୍ଡା ହୋଇଗଲା । ହସି ହସି କହିଲା, ଏଇ ମାଲ ଉପରେ । ଏତେ ଝିଅଟାଏ ହେଲାଣି— ଟିକିଏ ରାନ୍ଧି ବାଢ଼ି ବି ଆସୁନି । ଭଜା ଭାଜିବାକୁ ପଠାଇଲି ଯେ ଭଜାଗୁଡ଼ା ସବୁ ପୋଡ଼ି ଦେଇଛି । ଭାତ ଗାଳିବାକୁ ଦିନେ କହିଲି ଯେ— ଭାତ ଗାଳୁ ଗାଳୁ ହାତ ଗୋଟାକ ଫୁଟୁକା କରିଦେଲା । ବାହା ହେଲେ ସେ କଣ କେମିତି କରିବ ସେଇ କଥା ତାକୁ ପଚାରୁଥିଲି ।

ବାହା ହେଲେ ସବୁ ଠିକ ହୋଇଯିବ ମାଉସୀ । ତା ପାଇଁ କାହିଁକି ଏତେ ବ୍ୟସ୍ତ ହେଉଛନ୍ତି । ଦେବଭାଇ କଥା ଶୁଣି ବୋଉ କହିଲା, ନା ଦେବ, ତାକୁ ଖାଲି ମୁହଁ ଦେଲାରୁ ସେ ସେମିତି ହେଉଚି । ବାପ ତ କିଛି କହିଲେ ନାହିଁ— ମୁଁ ଯଦି ଟିକିଏ ଆକଟି ବସିଲି ଓଲଟି ସେ ମୋ ଉପରେ ବଗିଡ଼ି ଝିଅ ପଟ ନେବେ । ଦେବଭାଇ ହସି ହସି କହିଲେ, ମାଉସୀ, ଏଠି ସିନା ଫାଙ୍କି ମାରି ବୁଲୁଚି— ଶାଶୂ ଘରେ କିଏ ଇମିତି କରିବ । ଇମିତି କଲେ ଯେତେବେଳେ ଦୁମ୍ ଦୁମ୍ ମାଡ଼ ବସିବ, ସବୁ ବଳେ ସିଧା ହୋଇ ଯିବନି କି । ଦେବଭାଇଙ୍କ କଥା ଶୁଣି ମୋତେ ଭାରି ହସ ଲାଗିଲା । ମୁହଁରେ ଲୁଗା ଦେଇ ବହେ ହସିଲି । ମନ ହେଲା କହି ଦେବାକୁ, ଦେବଭାଇ ତୁମକୁ ଭଲଲୋକି କରିବାକୁ ଆମେ କିଏ ଡାକିଥିଲୁ ? କିନ୍ତୁ ବୋଉ ସାମନାରେ ତୁଣ୍ଡ ଖୋଲିଲି ନାହିଁ ।

ବୋଉ କହିଲା, ଯା, ଦେବଭାଇ ପରା ଛୁଡ଼ା ହେଲେ । ସେଘରକୁ ଡାକି ନେଇଯା । ବସାଇଥିବୁ— ମୁଁ ପଛରେ ଯାଉଚି । ଦେବଭାଇଙ୍କି ଡାକି ଏ ଘରକୁ ଆସିଲି । ଖଟ ଉପରେ ସତରଞ୍ଜିଟା ବିଛାଇ ଦେଲି । ଟିକିଏ ଗୁଡ଼ି ଦେବଭାଇ ଆସିଲେ । ମୁହଁରେ ହସ—ଆଖିରେ ଆବେଗ । ତାଙ୍କ ଆଡ଼କୁ ଅନାଇବାକୁ ମୋତେ ଭାରି ଲାଜ ମାଡୁଥାଏ । କହିଲି, ଦେବଭାଇ, ବସ । ସେ ମୁରୁକିହସା ଦେଇ ବସି ପଡ଼ିଲେ । କହିଲେ, ମାଳ ଏଡ଼ୁଟାଏ ତ ହେଲୁଣି, ବୁଦ୍ଧି ଶୁଦ୍ଧି ଆଉ କେବେ ଫେରିବ, ପୁଅଝିଅର ମା ହେଲେ ନାଁ କିଏ । ଦେବଭାଇଙ୍କ କଥା ଶୁଣି ମୁହଁଟା ମୋର ଲାଜରେ ପୋଡ଼ିଗଲା । ବାହାରକୁ ପଳାଇ ଆସିବାକୁ ବସିଲି । ସେ ଡାକିଲେ, ମାଳ ଶୁଣ୍ । ନ ଶୁଣିଲି ପରି ଚାଲି ଆସିଲି ଦୁ' ପାହଣ୍ଡ । ସେ କହିଲେ, ତୋ ଶାଶୂ ଶଶୁର ରାଣ ମାଳ ଶୁଣ୍ । ଚଢ଼ି ମାଡ଼ିଲି । ପଳାଇ ଆସିବାକୁ ବସିଲି । ଦୁଆରବନ୍ଧ ନ ଡେଉଣୁ ପୁଣି ପଛରୁ କହିଲେ, ମାଳ ତୋ ଦେବ ଭାଇ ରାଣ, ଶୁଣ୍ । ଦୁଆର ମୁହଁରେ ଛୁଡ଼ା ହେଲି । ଆଗକୁ ପାଦ ଚଳିଲା ନାହିଁ । କହିଲି, ଦେବଭାଇ ରାଣ ପକାଇବ ତ ଆଉ ଦିନେ ତମ ପାଖ ମାଡ଼ିବି ନାହିଁ । ସେ ହସିଲେ । କହିଲେ, ଏତେ ଲୋଭ କେବେଠୁ ହେଲା । ତୋ ଶାଶୂ ଶଶୁର ହେଲେ ନାହିଁ—ମୁଁ ହେଲି ! ତାଙ୍କ କଥା ଶୁଣି ନ ହସି ରହି ପାରିଲି ନାହିଁ । ସେ ମୋ ହାତକୁ ଧରି କଡକି ଟାଣି ନେଲେ । କହିଲେ, ମାଳ ନିଳ ଆକାଶର ଦରିଆ ବୁକୁରେ ପହଁରି ପହଁରି ଧଳା ବଗପକ୍ଷୀ ଲହଡ଼ି କାଟି ଗଲେ ଯେମିତି ସୁନ୍ଦର ଦିଶେ— ସେମିତି ତୋର ମୁହଁଟି ସୁନ୍ଦର—ଭାରି ସୁନ୍ଦର । କହିଲି, ଦେବଭାଇ କୁଆଡ଼େ ଥାଅ ମାସେ ପନ୍ଦର ଦିନରେ ଥରେ ଆସି ଇମିତିକା ଖାଲି ମନରଖା କଥା କୁହ । ମୋତେ ସେସବୁଡ଼ା ଭଲ ଲାଗୁନି । ଯାଉଚି—ତମେ ବସ । ଚାଲି ଆସିଲି । ଯେତେ ଡାକିଲେ ଶୁଣିଲି ନାହିଁ ।

ଏ ଘରେ ଆସି ବୋଉ କଢରେ ପହଞ୍ଚିଲାବେଳକୁ ରନ୍ଧାବଢ଼ା ସରିଥିଲା । ବୋଉ କହିଲା, ଯା'ଲୋ ମାଲ ଦେବଭାଇଙ୍କି ଡାକଆଣ । ଦୁହେଁ ସାଙ୍ଗହୋଇ ଦି'ଟା ଖାଇଦେବ । ବୋଉ କଥା ଶୁଣି ମୁଁ ଆସନ ପକାଇ ପାଣି ଦି' ଗିଲାସ ଥୋଇ ଗଲି ଦେବଭାଇଙ୍କି ଡାକିବାକୁ ।

ଦେଖିଲାବେଳକୁ ଦେବଭାଇ ନାହାନ୍ତି । ଭାବିଲି, ତାଙ୍କ ଡାକ ନ ଶୁଣି ଚାଲି ଆସିଲି ବୋଲି ବୋଧହୁଏ ଘୋଷା ହୋଇ ପଳାଇଛନ୍ତି । ମନର ସବୁ ସରାଗ ମୋର ମଉଳିଗଲା । ଜାଣି ନ ଥିଲି ଏମିତି ଟିକକ କଥାରେ ସେ ଘୋଷା ହୋଇ ଚାଲିଯିବେ ବୋଲି । ମନଟା ମୋର ଦେବଭାଇଙ୍କ ବିହୁନରେ ନୀରବରେ କାନ୍ଦି ଉଠିଲା । ହୃଦୟରେ ତା'ର କରୁଣ ମୂର୍ଚ୍ଛନା ଖେଳିବାକୁ ଲାଗିଲା ।

ବୋଉ ପଚାରିଲା, ଦେବ ଆସିଲା ନାହିଁକି ? କହିଲି, ଚାଲିଗଲେଣି । ବୋଉ କହିଲା, କାହିଁକି ତୁ ଅଟକାଇଲୁ ନାହିଁ ନା କଣ ? କହିଲି, ଅଟକାଇଲେ କଣ ହେବ ବୋଉ ବଡ଼ଲୋକ ସେ, ସବୁବେଳେ ଗରିବ ଘରଟା କଣ ତାଙ୍କୁ ଭଲ ଲାଗେ ? ଆସିଥିଲେ ଖୁସିରେ— ଚାଲିଗଲେ ସିମିତି ଖୁସିରେ । ବୋଉ କିଛି ନ ବୁଝି ଖାଲି ଉପରେ ଉପରେ ହସି କହିଲା, ନାଁ ଦେବ ଆମର ସିମିତିକା ପିଲା ନୁହେଁ ।



ଦିନ ପରେ ଦିନ ଗଡ଼ିଗଲା—ପୂର୍ଣ୍ଣିମି ଦିନ । ସେଦିନ ଆକାଶରେ ତୋର ଜହ୍ନଟି କେଡ଼େ ସୁନ୍ଦର ଦିଶୁଥାଏ । ମିଞ୍ଜି ମିଞ୍ଜି ହୋଇ ଆକାଶରେ ଶତ ତାରା ଦୀପାଳି ଜଳି ଉଠୁଥାଏ । ଧୀର ପବନରେ ଦୋହଲି ଦୋହଲି ବଉଦ-ନଉକାଗୁଡ଼ା ଭାସି ବୁଲୁଥାଏ ସରଗ-ଦରିଆରେ । ଆମ ବାରିରେ ଜହ୍ନିଫୁଲଗୁଡ଼ା ଫୁଟି ଉଠିଥାଏ କେତେ କେଜାଣି—ପାଖୁଡ଼ାରେ ତାର ସବୁଠୁ ବେଶି ଜହ୍ନ ଆଲୁଅ । ସେଇଥିପାଇଁ ରୂପ ଗଉରବ ନେଇ ସେ ହସି ହସି ଲେଟି ପଡ଼ୁଥାଏ ।

ନିଥର ଆକାଶରେ ଦଳଛିଡ଼ା ବଗୁଲିଟା ଡାକିଗଲା କର୍‌ର କରର । ମୁଁ ଯେଉଁଆଡ଼କୁ ଚାହିଁ ସରଗର ଶୋଭା ଦେଖୁଚି, ଏତିକିବେଳେ ପଛରୁ କିଏ ଆଖି ଦି'ଟା ବୁଜି ଧରିଲା । ଭାବିଲି, ଦେବଭାଇ ତ ନୁହନ୍ତି—ତେବେ ନିଶ୍ଚୟ ଏ ଝରଣା । କହିଲି, ଝରଣା ଆଖି ଖୋଲ । ସେ ହାତ ଛାଡ଼ି କରି କରି ହୋଇ ହସି ଉଠିଲା । କହିଲା, କାଲେ ଟୋକି, ଭାରି କାହିଁକି ପ୍ରେମରେ ଗଦ ଗଦ । ସେ କହିଲା, ଆଉ କଣ ଖାଲି ତୋରି ପରି ଘରକଣରେ ମୁହଁ ଶୁଖେଇ ବସିବି, ଟିକିଏ ହସିବି ନାହିଁ କହିଲି, ହଁଲୋ ଝରଣା ତୁ କଣ କରିବୁ—ବୟସ ତ ତୋତେ କରାଇ ଦେଉଚି । ଏଇଟା ତୋର ଗୁଣ ନୁହେଁ—ତୋର ବୟସର ଗୁଣ । କା ପ୍ରେମରେ ପଡ଼ିଲୁଣି କାଲେ ଟୋକୀ !

ପ୍ରେମ କଥା ଶୁଣି ଝରଣା ମୋତେ କଟମଟ କରି ଅନାଇଲା । କହିଲା, କାଲେ ଟୋକୀ ପ୍ରେମ, ବୟସର ଗୁଣ, ଭାରି ତ ବଡ଼ ବଡ଼ କଥା କହୁଚୁ । କା କଥାରୁ ଏ ସବୁ ଶିଖିଚୁ କାଲେ ! ଟୋକୀ ବୁଡ଼ି ବୁଡ଼ି ପାଣି ପିଉଚି । ଝରଣା କଥା ଶୁଣି ମୋତେ ଭାରି ହସ ମାଡ଼ିଲା । ହସି ହସି ପଚାରିଲି, ଆଲୋ ପୋଡ଼ାମୁହିଁ, ଏତେ

ଦାନଯାକ ଥିଲୁ କୋଉଠି ? ଝରଣା କହିଲା, ବୋଉ ଦେହ ପରା ଭଲ ନ ଥିଲା । ଗୁଡ଼ ଆପନ୍ତ କପର ପଚାରିଲି, ଦେବକ୍ଷ ଘରେ ଅଛନ୍ତି ନା କଟକରେ ? ଝରଣା କହିଲା, ନାଁ ଭାଇ ତ ଘରେ ଅଛନ୍ତି ସବୁବେଳେ । କହିଲି କାହିଁ ଇଆଡ଼େ ତ ଟିକେ-ପାଦ ପଡୁନାହିଁ ! ଭାଇଙ୍କୁ କହିବ, ମାଲ କହୁଥିଲା ଆଜି କାଲି ତମେ ଖୁବ ବଡ଼ଲୋକ ହେଇଗଲଣି । ଝରଣା ହସିଲା । କହିଲି, ଭାଇଙ୍କୁ ଦଣ୍ଡେ ନ ଦେଖିଲେ ଖୁବ ବଣା ହୋଇଯାଉଚୁ ଲୋ । କହିଲି, କେଜାଣି ଝରଣା ଦେବଭାଇ ତୋର କି ମନ୍ତର କରି ଦେଇଚି—ତୋ:ତେ ଜଣା । ଝରଣା ଓଠରେ ହସ ଝଟକିଲା । କହିଲି, ମନ୍ତର ନୁହେଁ ଲୋ—କାଉଁରୀ କାଠି ଛୁଇଁ ଦେଇଚନ୍ତି । ଦିନେ ପୁଣି ପକ୍ଷୀରାଜ ଘୋଡ଼ା ନେଇ ତୋ ର କବାଟରେ ପହଞ୍ଚିବେ ଲୋ—ଏତେ ଉଚ୍ଛନ୍ନ କାହିଁକି ? ଖାଲି ସଜବାଜ ହେଇ ବସିଥା । ଝରଣାକୁ ପୁଲାଏ ଚିମୁଟି ପକାଇ କହିଲି, ଆଉ ଦିନେ ଇମିତିକା କଥା କହିବୁ ନାହିଁ । ଝରଣା ମୁହଁ ହଲାଇ କହିଲା, କହିବ—ନିଶ୍ଚୟ କହିବ—ଆହୁରି କହିବ । ମାରିବାକୁ ଗୋଡ଼ାଇଲି—ଝରଣା ଦଉଡ଼ି ପଳାଇଲା ବାହାରକୁ ।

ଟିକିଏ ପରେ ପୁଣି ଫେରି ଆସିଲା । ମୁହଁରେ ତାର ଉଲ୍‌ସି ଉଠୁଚୁ ମୃଦୁ ମୃଦୁ ହସ । କହିଲି, ଭାଇଙ୍କର କାଲି ଜନ୍ମଦିନ ମାଲ । ଭାଇ କହିଚନ୍ତି, ତୁ କାଲି ସଞ୍ଜବେଳେ ଆମ ଘରକୁ ଯିବୁ । ନିଶ୍ଚୟ, ଭୁଲିବୁ ନାହିଁ । କହିଲି, ଭାଇଙ୍କର ଜନ୍ମଦିନ, ଭାଇ ତ ଟିକେ ପଚାରୁ ନାହାନ୍ତି । ତୁ କାହିଁକି ଉପରେ ପଡ଼ି ମନ ଟିକେ ରଖିବୁ ଟେଣା ! ଭାଇଙ୍କୁ କହିବୁ ମୁଁ ଯିବି ନାହିଁ । ଝରଣା କହିଲା, ଯିବୁ ନା । କହିଲି, ନାଁ ନାଁ—ତିନିଥର କରି ସତ୍ୟ କରି କହୁଛି ମୁଁ ଯିବି ନାହିଁ । କାହିଁକି ଯିବି ? ସେଦିନ ସେ ତ ଟିକେ କଥାରେ ରାଗି ନ ଖାଇ ନ ପିଇ ଚାଲିଗଲେ—ମୁଁ କାହିଁକି ତାଙ୍କ ଜନ୍ମଦିନକୁ ଯିବି ? ଝରଣା କହିଲା, ହଇଲେ ଟୋକୀ—କମିତି ନ ଯିବୁ ମୁଁ ଦେଖିବି । କାନରେ ଗଣ୍ଠି ପଡ଼ିଲା ଏଇ କଥା । ଏତିକି କହି ସେ ଚାଲିଗଲା । ମୁହଁରେ ତାର ଉଚ୍ଛୁଳା ହସ ଲହଡ଼ି ଭାଙ୍ଗୁଥିଲା ।

ରାତି ସେତେବେଳକୁ ଦୁ' ଘଡ଼ି ହେଲଣି । ଆକାଶରେ ମେଘ ଡାକିଚି । ଚାରିଆଡ଼େ ଗୁଡ଼ିକର ଗୋଟାଏ ବିରାଟ କଳା ପରଦା କିଏ ବିଛାଇ ଦେଇଚି । ଗାଁ ରାସ୍ତାରେ ଲୋକ-ଗହଳି କମି ଆସିଲଣି । ଚାରିଆଡ଼ ନିଶୂନ ଜଣାଯାଉଚି ।

ହଠାତ୍ କୁଆଡ଼େ ଥିଲା ମେଘଟା ଟୁପୁରୁ ଟପୁରୁ ଗୀତ ଗାଇ ଆସିଲା—ଆମ ବାଡ଼ିପଟ ତୋଟା ମାଳ ଭିତରୁ । ସୁ ସୁ ହେଇ ଶୀତଳ ପବନ ପରଶି ଗଲା ।

ତା ଆରଦନ । ଗୋଧୂଳିର ଶେଷ ଆଲୁଅଟିକ ହଜିଗଲା । ମାଡ଼ି ଆସିଲା ଦୂର ପାହାଡ଼ ସେପଟରୁ ଖାଲି କୁହୁଡ଼ିଘେରା ଅନ୍ଧାର । ରାତି ଆସିଲା । ଦୂର ଦେବାଳୟରୁ ଶଙ୍ଖ ଘଣ୍ଟା ବାଜି ଉଠିଲା । ଟିକିଏ ପରେ ସଞ୍ଜ ପହରର ପତଳା ଅନ୍ଧାର କାଟି ଆକାଶରେ ଉଇଁଲା ତୋରା ଜହ୍ନଟିଏ ।

ବୋଉ ଭାତ ରାନ୍ଧୁଛି । ମୁଁ ଦୁଆରେ ବସି ପଢ଼ିବା କାଟୁଛି । ଦେବଭାଇ ସେତିକ-ବେଳେ ହସି ହସି ଘର ଭିତରକୁ ପଶି ଆସିଲେ । ସଫା ଧୋତି ଉପରେ ତାଙ୍କର ସିଲ୍କ ପଞ୍ଜାବିଟା ଜକ ଜକ କରୁଥାଏ । ପଚାରିଲେ, ମାଉସୀ କଣ କରୁଛ ? ବୋଉ କହିଲା, କଣ କରିବି ଦେବ—ଭାତ ହାଣ୍ଡିଟା ବସେଇଛି । ମାଳକୁ ତ କିଛି ଆସିଲା ନାହିଁ—ମୁଁ ନ କଲେ କରିବ କିଏ ? ଦେବଭାଇ ବୋଉକୁ ଦଣ୍ଡବତ କଲେ । ବୋଉ ପଚାରିଲା, କଣ କଲେ ଦେବ ? ଦେବଭାଇ ହସି ହସି କହିଲେ, ଆଜି ପରା ମୋର ଜନ୍ମଦିନ ମାଉସୀ ! ବୋଉ ଡାକିଲା, ମାଳ ଦେବଭାଇଙ୍କୁ ଦଣ୍ଡବତ କର । ଭାରି ଅଡୁଆ ଲାଗିଲା । କିଛି ନ କହି ସେଇଠି ମୁଣ୍ଡ ନୋଇଁଲି । ଦେବଭାଇ ହସି ହସି କହିଲେ, ମାଉସୀ ମାଳ ମୋତେ ଦଣ୍ଡବତ ହେଉନାହିଁ । ବୋଉ କହିଲା, କଲୋ ମାଳ, ଦେବଭାଇଙ୍କୁ ଦଣ୍ଡବତଟା ମାରୁ ନାହିଁକି ? କହିଲି, ହେଲାଣି ପରା—କେତେ ଥର ହେବକି ? ଦେବଭାଇ ଚିଡ଼ାଇବାକୁ କହିଲେ, ନାଁ ମାଉସୀ ମୋତେ ଦଣ୍ଡବତ ହେଇନାହିଁ—ମାଳ ଏବେ ମିଛେଇ ହେଲାଣି ଆଜିକାଲି ! ଦେବଭାଇଙ୍କ କଥାଶୁଣି ଏତେ ଅଭିମାନରେ ବି ମୋତେ ହସ ମାଡ଼ୁଥାଏ । ବୋଉ କହିଲା, ହେଲା ଏବେ, ଆଉ ଥରେ ଦଣ୍ଡବତଟା କର । ବଡ଼ଭାଇ—ମାନ୍ ତ ତୋର ତଳେ ପଡ଼ି ଯାଉନାହିଁ !

କଣ କରିବି—ଉଠିଆସି ବୋଉ ସାମନାରେ ଆଉଥରେ ଦଣ୍ଡବତ କରିବାକୁ ଯାଉଛି ଦେବଭାଇ କହିଲେ, ଥାଉ ସେଇ କଣ ହେଲାନାହିଁ ! ବୋଉକୁ କହିଲେ—ମାଉସୀ, ଆଜି ମୋର ଜନ୍ମଦିନ—ମାଳ ଟିକେ ଯିବ ଆମ ଘରକୁ । ମୁଁ କହିଲି, ନାଁ ମୁଁ ଯିବି ନାହିଁ । ବୋଉ ହସିଲା । କହିଲା ମା'ଟା ପରା, ଯା ଦେବଭାଇ ନିଜେ ଆସିଚନ୍ତି ଡାକିବାକୁ— ନ ଗଲେ ତାଙ୍କ ମନରେ କଷ୍ଟ ହେବ । କହିଲି, କାହିଁକି ବୋଉ— ସେଦିନ ଆମ ଘରେ ନ ଖାଇ ଦେବଭାଇ ଚାଲି ଯାଇଥିଲେ । ମୁଁ ତ କାହିଁ ତାଙ୍କ ଉପରେ ଟିକିଏ ହେଲେ ରାଗିନାହିଁ—ସେ ରାଗିବେ କାହିଁକି ? ବୋଉ ହସୁଥାଏ । ଦେବଭାଇ କହିଲେ, ଆଜି ନ ଗଲେ ମୁଁ ଆଉ ତମ ଘର ଦିନେ ହେଲେ ବି ମାଡ଼ିବି ନାହିଁ । କହିଲି, ନ ଆସିଲେ ଆମେ ତମ ପଛରେ କାନ୍ଦି କାନ୍ଦି ଗୋଡ଼ାଇବୁ କି ଦେବଭାଇ ! ଦେବଭାଇ ରାଗିଗଲେ । କହିଲେ ହଉ ଥା । ସେ ଚାଲିଯିବାକୁ ପାଦ କାଢ଼ିଲେ । ବୋଉ କହିଲା, ଦେବ ମୋ ରାଣ—ଫେରିଆ । ଦେବଭାଇ ଅଟକି

ଗଲେ । ଦେଖିଲି ସେ ଭାରି ରାଗିଗଲେଣି । ମୁହଁଟା ଲାଲ ଦିଶୁଚି । ବୋଉ କହିଲା, ଯା ମାଲ । ଲୁଗାଟା ପାଲଟିଆ । ତରବରରେ ସେପାଖ ଘରୁ ବାସୀ ଧୋବଶାଢ଼ୀଟା ପିନ୍ଧି ବାହାରି ଆସିଲି । ଦେବଭାଇ ମୋ ଆଡ଼କୁ ଚାହିଁ ମୁରୁକି ମୁରୁକି ହସିଲେ । କ୍ଷଣିକର ରାଗ ତାଙ୍କର ଉଭାଇ ଯାଇଥିଲା ସେତେବେଳକୁ ।

ଝରଣା କହିଲା, କାଲେ ଟୋକା—ଆସୁ ନ ଥିଲୁ ପରା ! ତିନିଥର କରି ସତ୍ୟ କରିଥିଲୁ । ହସି ହସି କହିଲି, ବୋଉ ପଠେଇଲା—କଣ କରିବି, ନ ଆସି ଚାରା କଣ ? ଝରଣା କହିଲା, ହଁ ତୋର ମୋଟେ ମନ ନ ଥିଲା । ଦେଖୁନୁ, ତୋ ଆଖି, ତୋ ବେଶ କେମିତି କହୁଚି । କହିଲି, ସିମିତି ଚଢ଼ାଇବୁ ତ ଝରଣା ଚାଲିଯିବ । ଝରଣା କହିଲା, ଚାଲିଗଲେ ମୁଁ କଣ ଦେବଭାଇ ହେଇଚକି—ତୋ ପଛରେ ଗୋଡ଼ାଇ ଯିବ । ଦେବଭାଇ ଆସି ସେହିକ୍ଷଣି ପହଞ୍ଚିଲେ । ଝରଣା କହିଲା, ଭାଇ ମାଲ କାଲି ସତ୍ୟ କରିଥିଲା ଆସିବ ନାହିଁ ବୋଲି—ପୁଣି କିମିତି ଆସିଲା କି ? ଦେବଭାଇ ଟିକିଏ ହସିଦେଲେ । କହିଲେ, ଯା ଝରଣା—ମାଲ ଓ ତୁ ଦୁହେଁ ସେ ଘରେ ଖାଇଦିଅ । ଏତିକି କହି ସେ ଚାଲିଗଲେ ।

ଝରଣାଙ୍କ ଫୁଲ ବଗିଚାରେ ମଲ୍ଲୀଫୁଲର ମୁକୁଳା ହାଟରେ ସେଦିନ ଜ୍ୟୋସ୍ନାରସର କାଟତି ଖୁବ୍ ବେଶି । କହିଲି, ଝରଣା ଦେଖ୍‌ନା ମଲ୍ଲୀଫୁଲଗୁଡ଼ା କି ସୁନ୍ଦର ହେଇଚି ! ଝରଣା କହିଲା, ତୋଠୁ କଣ ସେ ବେଶୀ ସୁନ୍ଦର ? ଖାଲି କଥା କଥାକେ ଝରଣା ମୋତେ ଆଘାତ ଦେବାକୁ ଭାରି ଭଲପାଏ । ତା କଥାରେ କି ଆନନ୍ଦ ଥାଏ କେଜାଣି ମୁଁ ତାକୁ ଛଳ କରି ପାରେନା ।

କେତେ ହସଖୁସିରେ ସେଦିନ ରାତିଟା ତାଙ୍କର ଘରେ କଟିଲା !



ପିଲାଟି ଦିନରୁ ଝରଣାର ମୋର ଭାରି ଭାବ । ଏକା ବୟସର ବୋଲି ସବୁବେଳେ ଆମର ମନ ମିଳେ—କେତେ ସରଗ ସେପଟ ଅଛୁଣ୍ଡା ଗପ ପଡ଼େ । ଦିନ ଗଡ଼ିଚାଲେ, ତା ସଙ୍ଗେ ସଙ୍ଗେ ଝରଣାର ମୋର ସ୍ନେହ ମମତା ଦିନୁ ଦିନୁ ବଢ଼ି ଉଠେ । ସେ ସବୁବେଳେ ଆମ ଘରକୁ ଆସେ । ବାପା ତାର ଗାଁର ଜମିଦାର । ସବୁବେଳେ ତାଙ୍କ ଘରେ ଲୋକବାକ ପୂରି ରହିଥାନ୍ତି । ସେଇଥିପାଇଁ ବୋଉ ମୋତେ ଆକଟେ—ତାଙ୍କ ଘରକୁ ବେଶି ଛାଡ଼ିଦିଏନି । ଝରଣା କିନ୍ତୁ ନିତି ଦଉଡ଼େ ଆମ ଘରକୁ । ଦିହିଁଙ୍କ ଜୀବନ ଗତି ସମାନ ତାଳରେ ଆଗେଇ ଚାଲେ ।

ଝରଣା ଉପରେ ଦି' ଭାଇ । ସୁରଭାଇ, ଦେବଭାଇ । ସୁରଭାଇ ସବା ବଡ଼—ତା ପରେ ଦେବଭାଇ—ତା ତଳକୁ ଝରଣା । ଦି' ପୁଅଙ୍କୁ ବାପା ତାଙ୍କର ପଢ଼ାଇଥିଲେ । କିନ୍ତୁ ସୁରଭାଇ ବେଶୀ ପାଠ ପଢ଼ିଲେ ନାହିଁ । ମାଇନର ତିନି ତିନିଥର ଫେଲ୍ ହୋଇ ଘରେ ରହିଲେ । ମହାଜନୀ ଧନ୍ଦା, ଘରର ହାନିଲାଭ ସବୁ ସେ ବୁଝନ୍ତି । ବାପ ତଳକୁ ସେ ଘରର ମାମଲତକାର । ଦେବଭାଇ ଆର ବରଷ ବି. ଏ. ପାଶ୍ କଲେ । ଚାକିରି କରିବାକୁ ବସିଥିଲେ । ତାଙ୍କ ବାପା ବଳି ମଉସା ମନାକଲେ । କହିଲେ, ଦେବ, ଆମର କଣ ଅଭାବ ଅଛି ଯେ ତୁ ଯିବୁ ବିଦେଶକୁ କେଇଟା ଟଙ୍କାକୁ ଚାକିରି କରି । ଘରେ ଏଇ ମହାଜନୀ କାରବାର ଦେଖିଲେ ସେଇଥିରେ ତୋର ପେଟ ଅପୋଷା ରହିବ ନାହିଁ । ଦେବଭାଇ ବାପାଙ୍କ କଥା ଏଡ଼ି ଦେଇ ପାରିଲେ ନାହିଁ । ଘରେ ରହିଲେ । ନାଁକୁ ଖାଲି ମହାଜନୀ ଧନ୍ଦାରେ ଟିକେ ବ୍ୟସ୍ତ ଥିଲାପରି ମାସରେ ଥରେ ଦି'ଥର କଟକ ଦଉଡ଼ନ୍ତି । ସେଇଥିରେ ବାପା ତାଙ୍କର ଖୁସି—ଦେବ ମୋର ମଣିଷ ହେଇଚି ।

ଦେବଭାଇ ଝରଣାଠୁ ପାଞ୍ଚବରଷ ବଡ଼ । ସେ ଯେତେବେଳେ ମାଇନର ପାଶ୍ କଲେ ମୁଁ ପଢୁଥାଏ ଚତୁର୍ଥ ଶ୍ରେଣୀରେ । ଝରଣା ମୋ ସାଙ୍ଗ, ତାଙ୍କ ଘରକୁ ଗଲେ ଦେବଭାଇ ଝରଣାକୁ ମୋତେ ଆଦର କରନ୍ତି । ଅଙ୍କ କହି ଦିଅନ୍ତି । ସବୁବେଳେ ସେ ଆମ ଦୁହିଁଙ୍କର ପାଠପଢ଼ା ଖବର ବୁଝନ୍ତି । ମୋତେ ଏକଲା ପାଇଲେ ବେଳେ ବେଳେ କୋଳକୁ ଟାଣି ନେଇ ଗେଲ୍ ଖେଳନ୍ତି ।

ସମୟର ଅସରନ୍ତି ସ୍ରୋତ ଭିତରେ ଦିନେ ଦେବଭାଇ ଆମକୁ ଛାଡ଼ି ଚାଲିଗଲେ କଟକ । ମୁଁ ଷଷ୍ଠ ଶ୍ରେଣୀରୁ ରହିଲି । ଝରଣା ଆଉ ବର୍ଷେ ପଢ଼ିଲା । ମଝିରେ ମଝିରେ ମଝିରେ ଦେବଭାଇ ଝରଣା କଥକ ମୋ କଥକ ଚିଠି ଦିଅନ୍ତି । ପ୍ରତି ଛୁଟିରେ ସେ ଘରକୁ ଆସିଲେ ମୋ ପାଇଁ କେତେ ନୂଆ ଜିନିଷ କିଣି ଆଣନ୍ତି । ବୋଉ ଗାଳି ଦିଏ । କୁହେ, ଦେବ ଏ ସବୁ କାହିଁକି ଆଣିଲୁ ? ଦେବଭାଇ ହସନ୍ତି । କହନ୍ତି, ଝରଣା ପାଇଁ ଆଣିଲି—ଆଉ ମାଲ ପାଇଁ ଆଣନ୍ତି ନାହିଁ ? ସେ କଣ ମୋର ନିଜର—ମାଲତୀ କଣ ପର ? ତାଙ୍କ କଥା ଶୁଣି ମନଟା ମୋର କୁଣ୍ଢେମୋଟ ହୋଇଯାଏ ।

ବି. ଏ. ପାଶ୍ କରି ଘରକୁ ଫେରି ଆସିବା ପରେ ଭାବିଥିଲି ଦେବଭାଇ କିଛି ବଦଳି ଯାଇଥିବେ । ବଡଲୋକ—କେତେବେଳେ କୋଉ ମନ ! ପିଲାଦିନର ଟିକି ନଖି କଥା କଣ ସବୁବେଳେ ଘସିମାଜି ହୋଇ ତାଙ୍କ ମନରେ ରହିଥିବ । ନିଶ୍ଚୟ ସେ ବଦଳି ଯାଇଥିବେ । କିନ୍ତୁ ମୋଉ ଦେବଭାଇ—ଠିକ୍ ସେହିପରି । ବରଂ ପିଲାବେଳଠୁ ଆହୁରି ହୋଇଚନ୍ତି ସରଳ—ସୁନ୍ଦର । ଦେବଭାଇଙ୍କ ରୂପରେ କି ତେଜ ଥିଲା କେଜାଣି ତାଙ୍କ ଆଡ଼କୁ ଭଲ କରି ଥରେ ଅନାଇଁ ପାରେନା ।

ସେ କିନ୍ତୁ ପିଲାଦିନ ପରି ସବୁବେଳେ ମୋ ସାଙ୍ଗରେ ଗେଲ ଖେଳନ୍ତି । ନିଇତି ଆମ ଘରଆଡ଼େ ଦିଆଁ ରେଇ ଥରେ ଦି'ଥର ଆସନ୍ତି । ଏକଲା ପାଇଲେ ମୋତେ କୋଳକୁ ଆଉଜାଇ ନିଅନ୍ତି । ମୁଁ କୁହେ ଛୁଃ, ଦେବଭାଇ, ଏ କଣ କରୁଚ, ଛାଡ଼ । ସେ ଛାଡ଼ି ଦିଅନ୍ତି କେତେ କଷ୍ଟରେ । ବେଳେ ବେଳେ ମୋ ଗାଲରେ ତାଙ୍କ ମୁହଁଟା ଲଗାଇ ଦିଅନ୍ତି, କିଛି କହି ପାରେନା । କଣ କହିବି କିଛି ଭାବି ପାରେନା ।

ତଥାପି ବେଳେ ବେଳେ କୁହେ, ଦେବଭାଇ ମୋତେ କଣ ପିଲା ମନେ କରିଚ ସବୁଦିନ କଣ ସମାନ ଥାଏ ! ସେ ଶୁଣନ୍ତି ନାହିଁ । କହନ୍ତି, ମାଲ ତୋତେ ଦେଖିଲେ ମୁଁ ନିଜକୁ ଭୁଲିଯାଏ । କାହିଁକି କିଛି ବୁଝିପାରେନା । କେତେଥର ଭାବେ ଆଉ ଆସିବି ନାହିଁ ତମ ଘରକୁ । ତଥାପି ରହି ପାରେନା—ଆସେ । •

ତୋର କ୍ଷଣକର ସ୍ନେହ ମୋତେ ଅନ୍ଧ କରି ଦେଇଛି ମାଲ, ସବୁ ଦୁର୍ବଳତା ଏଡ଼ାଇ ନିଜକୁ ବଞ୍ଚାଇ ପାରିଲି ନାହିଁ ।

ବାପା ମୋର ଗାଁ ମାଇନର ସ୍କୁଲର ମାଷ୍ଟର । ଦେବଭାଇଙ୍କି ବାପା ଭାରି ସ୍ନେହ କରନ୍ତି । ଦେବଭାଇ ମଧ୍ୟ ସେମିତି । ବାପାଙ୍କ କଥା କେବେ ତଳେ ପକାଇ ଦିଅନ୍ତି ନାହିଁ । ତାଙ୍କରି ପାଖରେ ପଢ଼ି ସେ ମଣିଷ ହୋଇଚନ୍ତି । ବାପା କୁହନ୍ତି, ଆଜକୁ ତିରିଶବର୍ଷ ହେଲା ଅନେକ ଛାତ୍ରଙ୍କୁ ମୁଁ ଦେଖି ଆସିଚି—କିନ୍ତୁ ଦେବ ପରି ପିଲା ମୁଁ ଦେଖି ନାହିଁ । ଦେବଭାଇ ଆମ ଘରକୁ ଆସିଲେ ବୋଉ ବି ଭାରି ଆଦର କରେ । ସ୍ନେହ-ଆଦର ପାଇଲେ ପଶୁ ପକ୍ଷୀ ବି ନିଜର ହୋଇଯାନ୍ତି—ଆଉ ଦେବଭାଇ ମଣିଷ—ସେ ନିଜର ହେବେ ନାହିଁ ! ଦେବଭାଇ ଆସନ୍ତି—ଝରଣା ଆସେ—କେତେ ହସ ଖୁସିରେ ଧାନବୁଡ଼ା କଟିଯାଏ ।

ଆମ ବାଡ଼ି ବଗିଚାରେ ଶେଫାଳୀ ଫୁଲର ତୋରାହିସ ଲଭ ଲଭ ଆସିଲା । କୁଆଁର ପୁନେଇଁ ଜହ୍ନର ଶେଷ ସରାଗଟିକ ଲୁଚିଗଲା ପାହାନ୍ତା ପହରର ଫିକା ଆଲୁଅ ଭିତରେ । ଶରତର ପରବ ବଢ଼ାଇ ଦେଇ ବହି ଆସିଲା ଉତ୍ତର ଦିଗରୁ ଶିରଶିର ଶୀତ ପବନ । ସକାଳ ସୁରୁଯର ନାଲି କିରଣ ଝଟକ ଉଠିଲା, କାକରବରୁରା ଦୂବଘାସ ଉପରେ । କେବେ କେଉଁଦିନ ହେମନ୍ତ ଆସି ଶରତ ପଛେ ପଛେ ଚାଲିଗଲା କୁଣିଆ ପରି । ମାଡ଼ି ଆସିଲା ଘନ କୁହେଳିକା ପରଦା ଟାଣି ଖାଲି ଦେହଥରା ଶୀତ ।

ସେଦିନ ଦିପହରେ କୁଆଡ଼େ ଥିଲେ ଦେବଭାଇ ଆମ ଘରଆଡ଼େ ଗଡ଼ି ପଡ଼ିଲେ । ବାପା ସ୍କୁଲରୁ ଫେରି ନ ଥାନ୍ତି । ବୋଉ ନ ଥାଏ ଘରେ । ମୁଁ ଉଠି ଦେବଭାଇଙ୍କୁ ବସିବା ପାଇଁ ସପଟା ପାରିଦେଲି । ସେ ବସିପଡ଼ିଲେ । ପଚାରିଲି, ଏତେବେଳେ କେମିତି ଗଡ଼ି ପଡ଼ିଲେ ଦେବଭାଇ ? ସେ ହସିଲେ । କହିଲେ, ମାଉସୀ କାହାନ୍ତି ? କହିଲି, ନାହିଁ । ସେ କହିଲେ, ସୁରଭାଇଙ୍କର ବାହାଘର ଏଇ ପନ୍ଦରରେ । ଯାଇଥିଲି ତାଙ୍କ ଶଶୁର ଘରକୁ । ନୂଆବୋଉକୁ ଦେଖି ଆସିଲି । ପଚାରିଲି, ମନକୁ ପାଇଲାତ ? ସେ ହସି ହସି କହିଲେ, ପାଇବ ନାହିଁ ! ଦେଖିବାକୁ ଭାରି ସୁନ୍ଦରୀ । ତୁ ସିନା କହୁ ମୁଁ ଭାରି ସୁନ୍ଦରୀ—କିନ୍ତୁ ନୂଆବୋଉ ମୋର ଶହେଗୁଣ ତୋଠାରୁ ରୂପରେ ଗୁଣରେ ସୁନ୍ଦରୀ । ତାଙ୍କ କଥାରେ ମ ଚଢ଼ି ହସି ହସି କହିଲି, ସୁନ୍ଦର ହେଲେ ସେ ସିନା ସୁରଭାଇଙ୍କର ହେବେ, ଆଉ ତ ତମର ହେବେ ନାହିଁ । କଥାକୁ ବୁଲାଇ ପୁଣି କହିଲି, ହଁ କାହିଁକି ବା ନ ହେବ—ମନ ନେଲେ ସବୁ ହେବ ଭିତରେ ଭିତରେ । ଖାଲି ଟିକେ ନେଇ ଆଣି ଥୋଇ ଜାଣିଲେ ହେଲା । ସେଥିକୁ ତମେ କୋଉ ବା ଅପାରଗ ?

ମୁହଁଟା ତାଙ୍କର ରଙ୍ଗା ପଡ଼ିଗଲା । କହିଲେ, ମାଲ ତୁ ଖୁବ୍ ଦୁଷ୍ଟ ହେଲୁଣି । କହିଲି, ମୁଁ କାଁ ଡରେ ? ସେ ଉଠି ପଡ଼ି ମୋତେ ମାରିବାକୁ ହାତ ଉଞ୍ଚେଇଲେ । ଘରକୁ ପଳାଇ ଆସିଲି । ସେ ମୋ ପଛେ ପଛେ ଘର ଭିତରକୁ ପଶି ଆସି କବାଟଟା ବନ୍ଦ କରିଦେଲେ । ମୋତେ ଜବରଦସ୍ତ ଟାଣି ନେଲେ ତାଙ୍କ କୋଳ ଭିତରକୁ । ଭିଡ଼ି ଧରି ମୋତେ ବାରମ୍ବାର ଚୁମ୍ବନ କଲେ । ଛଟିପିଟି ହୋଇ କହିଲି, ଦେବଭାଇ ତମ ଗୋଡ଼ ତଳେ ପଡ଼ୁଛି ଛାଡ଼ିଦିଅ—ମୋ ରାଣ ତମକୁ, ଛାଡ଼ିଦିଅ । ସେ ଛାଡ଼ିଦେଇ କବାଟ ଫିଟାଇ ପଦାକୁ ପଳାଇଗଲେ । ଦେହଟା ମୋର ବରଡ଼ାପତର ଭଳି ଥରୁଥାଏ ।

ସେଇଦିନଠୁ ଦେବଭାଇ ପନ୍ଦରଦିନ ଆମ ଘର ମାଡ଼ିଲେ ନାହିଁ । ଝରଣା ନିଇତି ଆସେ—ଯାଏ । ଦେବଭାଇଙ୍କ କଥା ପଚାରିବ ପଚାରିବ ବୋଲି ନିଇତି ଭାବେ କିନ୍ତୁ ପରକ୍ଷଣରେ ସେଦିନ କଥା ମନେ ପଡ଼ିଯାଏ । ସବୁ ଲାଜ ଯାକ ଆସି ତଣ୍ଟିକୁ ଜାବୁଡ଼ି ଧରେ—କିଛି ପଚାରି ପାରେନା ।

ସେଦିନ ରାତିରେ ଅମୁହାଁ ଅନ୍ଧାରରେ ଆମ ଗାଁଟା ହଜି ଯାଇଥାଏ । ଗଛବୁଦା ସବୁ ପାହାଡ଼ ପାଲଟି ଯାଇଥାଆନ୍ତି । ଠାଏ ଠାଏ ଜୁଳୁଜୁଳିଆ ପୋକ ରୋଷଣୀ ଜାଳୁ-ଥାଆନ୍ତି—ସତେ ଯେପରି ଅନ୍ଧାରମୂଳକ ରଜାପୁଅର ବାହାଘର ହେଉଛି ।

ମୁଁ ଘରେ ବସି ରାନ୍ଧୁଛି । ଝରଣା ଡାକିଲା, ମାଲ, ଲୋ ମାଲ । କହିଲି ଆଲୋ ଝରଣା, ମୁଁ ଏଇଠି ଅଛି । ଝରଣା ଆସିଲା । ଓଠରୁ ତାର ହସର ଝରଣା ଝରି ପଡ଼ୁଥାଏ । ପଚାରିଲି, କଲେ ଟୋକୀ ଭାରିତ ଖୁସି ! ସେ କହିଲା, କାଲି ସକାଳେ ସୁରଭାଇଙ୍କର ବାହାଘର । ନୂଆ ଭାଉଜ ଅସିବ । ଖୁସି ହେବ ନାହିଁ ଆଉ କଣ କାନ୍ଦି ବୁଲିବ !

ହଁ ଲୋ ଝରଣା, ନୂଆବୋଉ ଆସିବ ବୋଲିତ ଭାଇ ଭଉଣୀ ଦିହେଁ ଭାରି ଖୁସି । କିନ୍ତୁ ଦେବଭାଇଙ୍କର ଖୁସି ହେବାର ହେଲେ କିଛି କାରଣ ଅଛି—ତୋର ତ କିଛି ନ ଥିଲା ପରି ଜଣାପଡ଼ୁଛି । ଝରଣା କହିଲା, କଣ କହୁଚୁ ଲୋ ଟୋକୀ ଏତେ ବୁଲେଇ ବୁଲେଇ—ଠିକେ କଥାକୁ ସଳଖ କରି କହ ଭଲା । ହସି ହସି କହିଲି, ନୂଆବୋଉଙ୍କ ମିଠା କଥା, ଆଉଜଣ ହାଣୀ, ସୁନ୍ଦର ରୂପ ଏ ସବୁ ଦେଖିଲେ ଦେବ-ଭାଇଙ୍କର ସିନା କିଛି ଫାଇଦା ହେବ—ଆଉ ତୋର କଣ ହେବ ? ତୁ କାହିଁକି ଏତେ ହସ ଖୁସିରେ କଖାରୁ ଗଛ ପରି ଲୋଟେଇ ପଡ଼ୁଛୁ ଲୋ ! ଝରଣା କଚ୍ଚ କରି

ହେଇ ହସି ହସି ମୋ ଉପରକୁ ଆଉଜି ପଡ଼ିଲ । କହିଲ, ଦେବଭାଇଙ୍କି କହିଦେବ ଯେ, ରହିଥା । କହିଲି, କହୁନୁଁ , ତୋ ଦେବଭାଇଙ୍କି ମୁଁ କଣ ଡରିଚି ?

ବୋଉ ଆସି ପଚାରିଲା, ତୋ ରନ୍ଧା ବଢ଼ା ସରିଲା ନାଇ ? ସେତେବେଳକୁ ସବୁ କାମ ମୋର ସରିଥିଲା । କହିଲି, ହଁ ବୋଉ ସବୁ ସରିଲାଣି । ଝରଣା ଉଠିଲା । କହିଲା, ଯାଉଚି ନାଇ ଅନେକ ରାତି ହେଲାଣି । ସେ ଚାଲିଗଲା । ସେତେବେଳକୁ ଘର ଅନ୍ଧାର ପଡ଼ିଲାଣି । ଦେହ ହାତ କୋଳ ମାରି ନେଇ ଯାଉଥାଏ । ବାପା ଟିଉସନରୁ ଫେରି ନଥାନ୍ତି । ବୋଉ ମୁଁ ଦହେଁ ତାଙ୍କର ଆସିବା ପର୍ଯ୍ୟନ୍ତ ଅନାଇ ରହିଲୁ ।



ଖୁବ୍ ଧୂମ୍ଧାମରେ ସୁରଭାଇଙ୍କର ବାହାଘର ହୋଇଗଲା । ବାହାଘର ପୂର୍ବଦିନ ଦେବଭାଇ ମୋତେ ଆସିଥିଲେ ନେବାକୁ । ସେତେବେଳେ ମୋ ଦେହ ଭଲ ନ ଥିଲା—ଜର ହେଉଥିଲା । ବୋଉ ପଠାଇଲା ନାହିଁ । ଦେବଭାଇ ମନ ଦୁଃଖରେ ଫେରିଗଲେ ।

ବାହାଘର ପନ୍ଦର ଦିନ ପରେ । ଦିନେ ଖରାବେଳେ ଝରଣା ଆସି ଜିଦ୍ ଧରି ମୋତେ ଟାଣି ଟାଣି ନେଇଗଲା । ତାଙ୍କ ଘରେ ପଶିଗଲା ବେଳକୁ ଦେବଭାଇଙ୍କ ସଙ୍ଗରେ ଭେଟ ହେଲା । ଦେବଭାଇ ମୋତେ ଦେଖି ହସି ହସି ବାଆଁରେଇ ଚାଲିଗଲେ ।

ନୂଆବୋଉଙ୍କ କଡରେ ଯାଇ ପହଞ୍ଚିଲି । ମୋତେ ଦେଖି ସେ ଲାଜ କରି ଟିକେ ଓଢ଼ଣା ଟାଣିଦେଲେ । ଝରଣା କହିଲା, ନୂଆବୋଉ, ସେ ମୋ ସାଙ୍ଗ ମାଳତୀ ପରା—ଏତେ ଲାଜ କରୁଚ କାହିଁ ମ ! ତଥାପି ନୂଆବୋଉ ଶୁଣିଲେ ନାହିଁ । ଝରଣା ଜୋର କରି ତାଙ୍କ ମୁଣ୍ଡରୁ ଓଢ଼ଣା ଟାଣି ଦେଲା । ଓଢ଼ଣାତଳୁ ତାଙ୍କର ରୂପକଥାର ସରଗପରୀ ମୁହଁଟି ହସି ଉଠିଲା । ଲାଜ ସଙ୍କୋଚ ଛାଡ଼ି ମୋତେ କଡକୁ ଡାକିଲେ । ଝରଣା, ମୁଁ ଦିହେଁ ତାଙ୍କ କଡରେ ବସି ପଡ଼ିଲୁ । ହସି ହସି ପଚାରିଲି—ନୂଆବୋଉ, ଆଖି ଦି'ଟା କାହିଁକି ଲାଲ ପଡ଼ିଚ, କାଲି ରାତିଟା କଣ ଉଜାଗରରେ ପାହିଚ କି ? ତାଙ୍କ ନାଲିଓଠରେ ହସର ବିଜୁଳି ଖେଳିଗଲା । କହିଲେ, ଆଉ କେତେଟା ଦିନ ଗଲେ ଦିହେଁ ଜାଣିବ ନାହିଁକି ? ଏତେ ପଚାରି ବୁଝୁଚ କାହିଁକି ? ନୂଆବୋଉ କଥାର ଦାଢ଼ୁଆ ଛୁରୀଟା ଇମିତି ଆମ ଉପରେ ପଡ଼ିବ ବୋଲି ଜାଣି ନ ଥିଲି । ଭାରି ଲାଜ ମାଡ଼ିଲା । କହିଲି, ନୂଆବୋଉ ଗୋଟିପଣେ ସୁରଭାଇଙ୍କର ହେବ ନାହିଁ ମ—

ଦେବଭାଇଙ୍କର ବ ଠିକେ ଠିକେ ହେବ । ସେ ହସି ହସି କହିଲେ, ମୁଁ ନହେଲେ ତମେ ଏବେ ଠିକେ ଦେବଭାଇଙ୍କର ହେଲେ ହେବ ନାହିଁ ମାଳ ! ଝରଣା କଲ କଲ ହେଇ ହସି ଉଠିଲା । କହିଲା, ନୂଆବୋଉ, ଠିକେ କଣ—ସେପରି ଗୋଟିକ-ଯାକ ଦେବ ଭାଇଙ୍କର ! ନୂଆବୋଉ କହିଲେ, ସତେ ! ଆଖିରେ ତାଙ୍କର ବିସ୍ମୟ ଓ ଆନନ୍ଦର ଆଭା । ମୁହଁଟା ମୋର ଯେ ଢ଼ିଗଲା । ଉଠି ପଳାଇ ଆସୁଥିଲି । ନୂଆବୋଉ ଲୁଗାକାନିଟା ଟାଣି ଧରି କହିଲେ, ମୋ ଧଣ ମାଳ, ବସ । ଏଇ ଠିକକ କଥାକୁ ଏତେ ଛଳ କରୁଚ ? ବସିଲି । କେତେ ଆଉରି ଗପ ପଡ଼ିଲା । ବଦାୟ ନେଇ ଆସିଲା ବେଳେ ନୂଆବୋଉ କହିଲେ, କାଲି ଆସିବ ମାଳ ! ହଉ ବୋଲି କହି ଚାଲି ଆସିଲି ।

ରାତିରେ ଶୋଇଲାବେଳେ ନୂଆବୋଉଙ୍କର କଥା କାନ ପାଖରେ ବାଜି ଉଠୁଥିଲା । ତାଙ୍କର ସବ୍ୟଗଭର୍ଭା ସରଗଶିଖା ରୂପ ମୋ ଆଖି ଆଗରେ ନାଚି ଉଠୁଥିଲା । ଶୋଉ ଶୋଉ କେତେବେଳେ ଦେବଭାଇ ପବନ ପରି ଲଘୁ ଗତିରେ ଆସି ମନରେ ମୋର ଭାବନାଦୀପ ଜାଳିଦେଇ ଚାଲିଯା'ନ୍ତି—ଜାଣି ପାରେନା । ଆଖି ଆଗରେ ଭାସି ଉଠେ ଖାଲି ତାଙ୍କର ସୁନ୍ଦର ରୂପ—ମନଭୁଲାଣିଆ ସୁଆଦମିଶା ହସ ।

ତା ପରଦିନ ଦି' ପହରେ । ବୋଉକୁ କହି ପୁଣି ଝରଣା ଘରକୁ ଗଲି । ଆମ ଘରଠୁ ଦଶ ପନ୍ଦରଟା ଘର ପରେ ଝରଣାଙ୍କ ଘର । କୋଠାଘର । ନୂଆ କରି ଆଉ ବରଣ୍ଡ କଳି ମଉସା ତିଆରି କରିଛନ୍ତି ।

ମୋତେ ଦେଖିଲାକ୍ଷଣି ନୂଆବୋଉ, ଝରଣା ଦୁହିଁଙ୍କ ମୁହଁରେ ହସର ସରୁ ରେଖାଟିଏ ଫୁଟି ଉଠିଲା । ନୂଆବୋଉ କହିଲେ—ମାଳ, ତମକୁ କାଲିଠୁ ଦେଖିଲାବେଳୁ ଖାଲି ମୋର ମୋ ସାନଭଉଣୀ ଲଳିତା କଥା ମନେ ପଡ଼ୁଚି । ସେ ଠିକ୍ ତମରି ପରି । ପରଜାପତି ପରି ସୁନ୍ଦର ଫୁରୁ ଫୁରୁ । ତମ ରୂପଟି ଦେଖିବାକୁ ଯେମିତି—ତା' ରୂପଟି ଅବିକଳ ସିମିତି । ତମକୁ ଦେଖିଲେ ମୋର ଯେମିତି ମନେ ହେଉଚି ଲଳିତା ମୋ ପଛେ ପଛେ ନିଜଭଉଣୀର ସ୍ନେହ-ଶରଧା ଭୁଲି ନ ପାରି ଗୋଡ଼ାଇ ଆସିଚି । ପଚାରିଲି—ନୂଆବୋଉ ତମେ କେଇ ଭଉଣୀ ? ନୂଆବୋଉ, କହିଲେ, ଆମେ ତିନ ଭଉଣୀ । ମୋ ଉପରେ କୁସୁମ ବୋଲି ଗୋଟିଏ ଭଉଣୀ ମରିଯାଇଚି । ଆଉ ଅଛୁ ଆମେ ଦି' ଜଣ । ଭଗବାନ ଆମକୁ ଭାଇ ସ୍ନେହରୁ ବଞ୍ଚିତ କରିଛନ୍ତି ।

ଇମିତି ତାଙ୍କ ଘରର କେତେ ସୁଖ ଦୁଃଖ ବଜଡ଼ିତ ଛୋଟଛୋଟ କାହାଣୀ ନୂଆବୋଉ କହି ଚାଲିଲେ । ଆମେ ଦୁହେଁ ସବୁ ଶୁଣୁଥାଉଁ । କେତେବେଳ ପରେ କଣ ଗୋଟାଏ କାମରେ ମାଉସୀ ଡାକିଲେ—ଝରଣା ଉଠିଗଲା । ନୂଆବୋଉ ଗପୁଥାନ୍ତି ତାଙ୍କ ସାଙ୍ଗ ସାଥିଙ୍କ କଥା । ମୁଁ ସବୁ ଶୁଣୁଥାଏ ଏକ ଧ୍ୟାନରେ ।

ହଠାତ୍ ସେଇ ଘରକୁ ଦେବଭାଇ ପଶି ଆସିଲେ । ମୁଣ୍ଡରୁ ଲୁଗାଟା ଖସି ପଡ଼ିଥିଲା । ଦେବଭାଇଙ୍କୁ ଦେଖି ଲୁଗାକାନଟା ମୁଣ୍ଡ ଉପରକୁ ଟିକେ ଟାଣିଦେଲି । ସରମରେ ମୁହଁ ତଳକୁ ହୋଇଗଲା । ନୂଆବୋଉ ହସି ହସି କହିଲେ, ମୋ କଡରେ ଖାଲି ଲାଜ କରୁଚ, ନାଁ ଆଉ କେତେବେଳେ ଦେବଭାଇଙ୍କୁ ଲାଜ କର ମାଲ ! ମୁଁ କିଛି କହିଲି ନାହିଁ—ମୃଦୁମୃଦୁ ହସିଲି । ନୂଆବୋଉ କହିଲେ—ଦେବ, ମାଲଟି ଯେମିତି—ମୋର ସାନଭଉଣୀ କଳଟାଟା ବି ଠିକ୍ ସେମିତି । ମାଲକୁ ଦେଖି ମୁଁ ଲଳନା କଥା ପାସୋର ପକାଇଚି । କାଲିଠୁ ମାଲ ହୋଇଚି ମୋର ଭଉଣୀ । ଦେବଭାଇ କହିଲେ, ଆଜି ମାଲ ଏଠି ଅଛି—କାଲି ସକାଳେ କୁଆଡ଼େ ଉଡ଼ିଯିବ ନୂଆବୋଉ ଏହି ଅଡ଼େଇ ଦିନ ପାଇଁ ଏତେ ସ୍ନେହ ମମତା କାହିଁକି ଲଗାଉଚମ ! ନୂଆବୋଉ ହସି ହସି କହିଲେ, ସେ ଯିବ କୁଆଡ଼େ ତାକୁ ପରା ପୋଷା ମନେଇ ମୁଁ ରଖିବ ସବୁଦିନ ପାଇଁ ! ସେ ମୋତେ ସେତେବେଳେ ଡାକିବ ଅପା—ମୁଁ ତାକୁ ଇମିତି ଓ କୁଥିବ ମାଲ । କେତେ ହସ ଖୁସିରେ ଚଳୁଥିବୁ ଦି ଯା'ପର । ତମ ମନକୁ କଣ ଯିବ ନାହିଁ ଦେବ ?

ଦେବଭାଇ ମୁହଁଟା ଲାଜରେ ଲାଲ ପଡ଼ିଗଲା । କିଛି ନ କହି ସେ ଗ୍ଲଲିଗଲେ । ଗ୍ଲଲିଗଲାବେଳେ ତାଙ୍କ ଓଠରେ କଣିକାଏ ହସ ଲାଗି ରହିଥିଲା । ସେ ଗ୍ଲଲି-ଗଲାରୁ ମୁଁ ଟିକେ ଆଶ୍ୱସ୍ତ ହେଲି । ନୂଆବୋଉଙ୍କର ଶେଷ ପରିହାସ କଥାଗୁଡ଼ା ମୋ ହୃଦୟ ଭିତରେ ଗୋଟାଏ ଗୋଟାଏ ଅଳିଭାଗାର ଟାଣି ଦେଉଥିଲା । ଦେବଭାଇ ଗ୍ଲଲିଗଲାରୁ ମୁଁ ଉଠିପଡ଼ିଲି । କହିଲି, ଯାଉଚି ନୂଆବୋଉ ଅନେକ ବେଳ ବସିଲିଣି, ବୋଉ ତେଣେ ଖୋଜୁଥିବ । ନୂଆବୋଉ କହିଲେ, ହଉ ଯା, କାଲି ଆସିବ—ନିଶ୍ଚୟ । କହିଲି, ହଉ ।

ନୂଆବୋଉଙ୍କୁ କହି ଆସିଲି ସିନା କିନ୍ତୁ ତା ଆରଦିନ ଆଉ ଯାଇ ପାରିଲି ନାହିଁ । ବୋଉ ଗାଳି ଦେଲା । କହିଲା, ଏତେ ବଡ଼ ଝିଅଟାଏ ହେଲୁଣି—ଖାଲି ସବୁଦିନେ ସାଇବୁଲା ମନର ସବୁ ସରାଗ ମୋର ଝାଉଁଳି ପଡ଼ିଲା । ମନ କଥା ମନରେ ମାରି ଘରେ ରହିଲି ।

ସେଦିନ ସଞ୍ଜ ପହର ଗଡ଼ିଗଲାଣି । ଆକାଶରେ ଜହ୍ନମାମୁଁର ଶଙ୍କଣ ମୁହଁଟି ଜଳି ଉଠୁଚି । ଗୁଡ଼ି ଓ ଆଲୁଅ ଆମ ଦୁଆରେ ଆସି ଲୁଚକାଳି ଖେଳୁଛନ୍ତି ।

ଘରେ ବସି ବସି ଭାବୁଚି କେତେ ଆଉର କଥା । ଭାବନାର ଜାଲ ବୁଣୁ ବୁଣୁ କେତେବେଳେ ଝରଣା ଆସି ଭାବନାର ଖିଅଟା ମୋର ଛିଡ଼ାଇ ଦେଲା । ପଚାରିଲି, କଲେ ଝରଣା, ଏଠି ଆସି ଚୁପି ଚୁପି ଛିଡ଼ା

ଛୁଡ଼ା ହେଉଚୁ କାହିଁକି ? ଝରଣା କହିଲା, ସପନପୁରୀ ରାଜକୁମାରୀ କାଲେ ଯଦି ଭାବନା ଭିତରୁ ମୋତେ ତାଙ୍କର ରାଜକୁମାର ବୋଲି ଭାବି ନଥିବେ—ସେଇଥିପାଇଁ ଚୁପି ଚୁପି ଛୁଡ଼ା ହେଇ ଦେଖୁଥିଲି । କା' କଥା ଏତେ ଭାବୁଚୁ କହିଲେ ମାଳି ! କହିଲି, କା' କଥା ଭାବିବି ଆଉ—ତୋରି କଥା ଭାବୁଚି ପରା ! ଆଠଦିନ ହେଲା କାହିଁକି ଆମ ଘରେ ଟିକେ ତୋର ପାଦ ପଡ଼ୁନାହିଁ । ଦେବଭାଇ ବି ଆମ ଘର ଆଉ ମାଡ଼ୁ ନାହାନ୍ତି । ସମସ୍ତେ ମୋତେ ପର କରି ଦେଲେଣି । ଝରଣା କହିଲା, ନାଁ ମ ମାଳି, ତୋ କଥା ପରା ନୂଆବୋଉର ମୋର ହେଇଚି ଜପାମାଳି । ଆଠଦିନ ହେଲା ତୁ ଆଉ ଆମ ଘରକୁ ଯାଉନାହୁଁ । ନୂଆବୋଉ ଓଲଟି ପରା ତୋ ଉପରେ କେତେ ରୋଷା ହେଇଚନ୍ତି । କହିଚନ୍ତି, ମାଳି ଆସିଲେ ମୁଁ ପଦୁଟିଏ କଥା ବି କହିବି ନାହିଁ । ଉପର ମନରେ ସିନା ଏ କଥା କହିଲେ କିନ୍ତୁ ତୋତେ ସେ ଭାରି ଆଦର କରନ୍ତି ଲୋ ଏଇଲାଗେ ପରା ମୋତେ ପଠେଇଲେ । କହିଲେ, ଯା ଝରଣା, ମଉସୀଙ୍କୁ କହି ମାଳିକୁ ଡାକି ଆଣିବୁ । ଚାଲିଲୁ—ମାଉସୀଙ୍କୁ ସେ ଘରେ କହି ଦେଇ ଆସୁଚି । ମୋ ମନଟା ବି ନୂଆବୋଉଙ୍କ କତିକି ଯିବାକୁ ଠିଆ ହେଇଥିଲା । ଝରଣା ସାଙ୍ଗରେ ତାଙ୍କ ଘରକୁ ଆସିଲି ।

ନୂଆବୋଉ ଘରେ ବସି କ'ଣ ଗୋଟାଏ ବହି ପଢ଼ୁଥିଲେ । ଝରଣା କହିଲା, ନୂଆବୋଉ, ମାଳି ଆସିଲାଣି । ନୂଆବୋଉ ମୋ ଆଡ଼କୁ ନ ଅନାଇ ଅଭିମାନଭରା ଗଳାରେ କହିଲେ, ଆସନ୍ତୁ, ମୁଁ କଣ ତାଙ୍କୁ କଥା କହିବି କି ! ସେ ତ ମୋତେ ଆଠ-ଦିନ ହେଲା ପର କରିଦେଇଛନ୍ତି । ମୁଁ ନୂଆବୋଉଙ୍କ ହାତ ଧରି କହିଲି, କ'ଣ କରିବି, ମୋର କ'ଣ ଆସିବାକୁ ମନ ନାହିଁ । ବୋଉ ଛାଡ଼ନ୍ତି—ମୋର ଗୃହା କଣ ? ଝରଣା କହିଲା, ହଁ ନୂଆବୋଉ, ସେଟାପରା ସ୍ନେହରଙ୍କୁଣୀ । ଯେଉଁଠି ଟିକେ ଆଦର ପାଇବ, ସେଇଠି ପଡ଼ି ରହିଥିବ । ମାଉସୀ ଛାଡ଼ୁନାହାନ୍ତି—ସେ ଆପଣା କପରି ? ନୂଆବୋଉଙ୍କ ମୁହଁରୁ କ୍ଷଣକ ପାଇଁ ଅଭିମାନର ଛାଇ ମିଳାଇଗଲା—ସୁନାପରି ଝଟକି ଉଠିଲା ହସ । ମୋତେ କୋଳକୁ ଟାଣିନେଲେ । କହିଲେ, ମାଳି ମ, କି ଯୋଗରେ ତୁମ ସାଙ୍ଗରେ ଦେଖା ହେଲା କେଜାଣି; ଦିନେ ନ ଦେଖିଲେ ଗୋଟାଏ ଯୁଗ ପରି ଲାଗୁଚି ।

ତା ପରେ ଆମ ତିନିଙ୍କ ଭିତରେ କେତେ ହସ ଖୁସି ଗପକର କଥା ପଡ଼ିଲା । ମେଞ୍ଚାଏ ଜହ୍ନ ଆଲୁଅ ଘର ଭିତରେ ପଶିବାକୁ ଝରକା ପାଖରେ ବାଟ ଉଣ୍ଡୁ-ଥାଏ । ଝରଣା କହିଲା, ଦେଖିଲଣି ନୂଆବୋଉ, ଦୁଆରେ କପରି ସୁନ୍ଦର ରାଣୀଫୁଲ ପରି ଜହ୍ନ ପଡ଼ିଚି ! ଭାରି ମନ ହେଉଚି ଦୁଆରେ ବସି ତାସ ଖେଳିବାକୁ । ନୂଆବୋଉ କହିଲେ, ସତେ ଝରଣା ! ଚାଲି···ମୋର ବି କାହିଁକି ଭାରି ମନ ହେଉଚି—ତୁମେ ଯା ଦେବଭାଇଙ୍କି ଡାକ । ଝରଣା ଦଉଡ଼ିଗଲା ଦେବଭାଇଙ୍କି ଡାକିବାକୁ ।

ଟିକିଏ ପରେ ଦେବଭାଇ ଆସିଲେ । ନୂଆବୋଉ ସତରଞ୍ଜିଟା ଆଣି ଦୁଆରେ ବିଛାଇ ଦେଲେ । ଦେବଭାଇ କହିଲେ, କିଏ କିଏ ହେବ ? ନୂଆବୋଉ କହିଲେ, ତମେ ତମର, ଆମେ ଆମର; ଅର୍ଥାତ୍ ତମେ ତମର ମାଲ, ମୁଁ ଆଉ ଝରଣା । ଦେବଭାଇ ହସିଲେ । ମୁଁ କହିଲି, ନାଁ । ନୂଆବୋଉ, ତମେ ମୁଁ ଆଉ ଝରଣା ଦେବଭାଇ । ଦେବଭାଇ କହିଲେ, ହଉ ହେଲା । ବସ, କେତେ ବୋଝ ଦେବ ଖାଲି ସୁମାର କରିବ । ସମସ୍ତେ ହସି ହସି ଖେଳରେ ବସିଲୁ ।

ଖେଳ ଚାଲିଲା ଟ୍ୱେଣ୍ଟି-ନାଇନ୍ । ଅଧଘଣ୍ଟା ପରେ ଝରଣା ଦେବଭାଇ ହାରିଗଲେ । ସେଟ୍ ଉପରେ ସେଟ୍ ଖାଇଲେ । ନୂଆବୋଉ ହସି ହସି କହିଲେ, ଦେବ ଆମକୁ ବୋଝ ଦେବା ମୁହଁ ତମର, ଦେବଭାଇ ରାଗିଲେ ନାହିଁ । ଓଲଟି ହସି ହସି କହିଲେ, ମୁଁ ତ ଜାଣି ଜାଣି ହାରୁଚି ନୂଆବୋଉ—ତମକୁ ହରେଇଲେ ମାଲ ବିଚାରୀ ମନରେ ଦୁଃଖ କରିବ । ପିଲାଟା, ତା'ର ମୁହଁକୁ ଚାହିଁ ସବୁ ବୋଝ ମୁଁ ନେଉଚି । ମୁଁ ଜାଣେ ଦେବଭାଇ ଖାଲି ଖେଳିବା ଆଗରୁ ଡୋଉ ବାହାର କରନ୍ତି । କିନ୍ତୁ ମୋଟେ ତାଙ୍କୁ ଭଲକରି ଖେଳି ଆସେନା । ସବୁଦିନେ ହାରନ୍ତି—ତଥାପି ମୁହଁ ଟାଣ ଛାଡ଼ନ୍ତି ନାହିଁ ।

ଝରଣା ଖେଳରେ ଜିତିଲେତ ଭଲ—ହାରିଲେ ସତେକି ତା'ର ସବୁ ସମ୍ପତ୍ତି ସରି-ଗଲାପରି ମୁହଁଟାକୁ ହାଣ୍ଡି କରିବ । ଖାଲି ଦେବଭାଇ ଥାଆନ୍ତି ବୋଲି ସେ କିଛି କହୁ ନ ଥାଏ । କିନ୍ତୁ ମୁଁ ଭଲକରି ଜାଣେ ଅନ୍ତର ଭିତରେ ତା'ର ରାଗଟା କୁହୁଳି କୁହୁଳି ଧୂଆଁ ହେଲାଣି । ଝରଣା ରାଗରେ କୁହୁଳା ଧୂଆଁରେ ହଠାତ୍ ପାଣି ପକେଇଦେଇ କହିଲି, ନୂଆବୋଉ ମୁଁ ଆଉ ଖେଳିବି ନାହିଁ—ଏଥିକି ଥାଉ ।

ଖେଳ ଭାଙ୍ଗିଲା । ନୂଆବୋଉ ଦେବଭାଇ ଓ ଝରଣା ଦୁହିଁଙ୍କୁ ଖାଇ ଚିଡ଼ାଇଲେ । ମୁଁ କିଛି କହୁ ନ ଥାଏ । କାଳେ ଦେବଭାଇଙ୍କ ମନରେ କଷ୍ଟ ହେବ । ନୂଆବୋଉ ମୋ ମନକଥା ଜାଣିଲାପରି କହିଲେ, ଦେବ ହାରିଚି ତା ମନରେ ଯେତେ କଷ୍ଟ ନାହିଁ—ମାଲ ଜିତି ତା'ଠୁ ବେଶି କଷ୍ଟ । ଦେଖୁନ ମୁହଁକୁ କମିତି ଶୁଖେଇଚି । ଦେବଭାଇ ମୋ ଆଡ଼କୁ ମୁଗ୍ଧ ଚାହାଣିରେ ଅନାଇଲେ । ତାଙ୍କ ଚାହାଣିରେ କି ମାଦକତା ଥିଲା କେଜାଣି ମୁଁ ଟିକିଏ ନ ହସି ରହି ପାରିଲି ନାହିଁ । ସେ ବାହାରକୁ ଚାଲିଗଲେ ।

ରାତି ସେତେବେଳକୁ ପ୍ରାୟ ଏଗାରଟା ହେଲାଣି । ଶୀତରେ ଜହ୍ନମାମୁଁ ଥରି ଥରି ଟିକିଏ କଳାବଉଦ ଘୋଡ଼ଣି ତଳେ ଉଙ୍କୁମୁ ଟାଣୁଚି । ଚାରିଆଡ଼େ କୁହୁଡ଼ି ଘେରିଚି । ଜହ୍ନ ଆଲୁଅକୁ ହରେଇ ଗଛଲତା ଆଖିରୁ ଟପରି ଟପରି କାକରଲୁହ ଝରି ପଡ଼ୁଚି । ଟିକିଏ ପରେ ସରଗ ରାଇଜର ରଜାପୁଅର ବାହାଘର ହେଲାପରି କେଉଁଠି ଥିଲା ମେଘଟା

ଆସି ଘଡ଼ଘଡ଼ ବାଜା ବଜେଇଲା । ସୁ ସୁ ହୋଇ ପବନ ପିଟିଲା । ବାଉଁଶ ଗଛଗୁଡ଼ା ରଜ ରଜ ହୋଇ ଡାକ ଉଠିଲା ମଣିଷ ମନରେ ଭୟର ପାହାଡ଼ ଡୋଳ ।

କହିଲି, ନୂଆବୋଉ ମେଘ ଆସିଲାଣି କେମିତି ଯିବି ? ନୂଆବୋଉ କହିଲେ, ଆଜି ଦିନକ ରହିଗଲେ ହୁଅନ୍ତା ନାହିଁ ? କହିଲି, ନା ନୂଆବୋଉ, ବୋଉ ତେଣେ ଚିଡ଼ିବ —ରହିବି ବୋଲି କହି ଆସି ନାହିଁ । ନୂଆବୋଉ କହିଲେ, ଦିନେତ ପୁଣି ମୋର କତରେ ରହିବ ମାଲ ! ସେତେବେଳେ ବୋଉ କଣ ଚିଡ଼ିବେ ନାହିଁ ? ତାଙ୍କ କଥାର ମାନେ ସବୁ ବୁଝିଥିଲେ ବି ନ ବୁଝିଲା ପରି କହିଲି, ତମ କତରେ ମୁଁ କାହିଁକି ରହିବି ମ ! ସେ ହସିଲେ । କହିଲେ, ଲୁଚେଇଲେ, କ'ଣ ଲୁଚିବ ? ତମ ମନକଥା ସବୁ ମୁଁ ଜାଣେ ମାଲ !

ସେଇଲାଗେ ଦେବଭାଇ ଆସି ପହଞ୍ଚିଲେ । ନୂଆବୋଉ କହିଲେ, ଦେବ ମାଲକୁ ଟିକେ ଛାଡ଼ିଦେଇ ଆସିବ । ଦେବଭାଇ ମୋତେ ସାଙ୍ଗରେ ଆଣି ଛାଡ଼ିଦେଇ ଗଲେ । ଘରେ ପହଞ୍ଚିଲା ବେଳକୁ ବର୍ଷା ଆରମ୍ଭ ହୋଇ ଯାଇଥିଲା, ବିଜୁଳି ଝଟକୁ ଥିଲା ଛାତିଥରା ଅନ୍ଧାରର ବୁକୁ ଚିରି । ଭାବିଲି, ଘଡ଼ି ଘଡ଼ିକ ପ୍ରକୃତିର ଓଲଟ ପାଲଟ ହେଲାପରି ଜୀବନଟା ବି ସେମିତି ଗତି କରୁଛି । ଆଲୁଅ, ଅନ୍ଧାର, ବରଷା, ଘଡ଼ଘଡ଼ି, ଦୁର୍ଯୋଗ ସବୁଗୁଡ଼ା ସିମିତି ଦୁନିଆ ଦେଉଳକୁ ପାହାଚପରି ଲାଗି ରହିଛି । ମଣିଷ ଝୁଲୁଛି ତାରି ଉପରେ ଖାଲି ବଞ୍ଚି ରହିବାର ପିପାସା ନେଇ ।



ନୂଆବୋଉ ! ସେ ମୋର କିଏ ? କାହିଁକି କେଉଁଠି ଥିଲେ । ଇମିତି କାହିଁକି ସେ ଆସି ମୋତେ ପାଖକୁ ସ୍ନେହ ଦେଇ ଡାକନେଲେ । ମୁଁ ତାଙ୍କର କିଏ ? ସେ ଥିଲେ କୁଆଡ଼େ—ମୁଁ ଥିଲି କୁଆଡ଼େ । ଜଣା ନ ଥିଲା—ଶୁଣା ନ ଥିଲା । ବେଶ୍ ତ ଭଲରେ ଥିଲି; କିନ୍ତୁ ସେ ଆସିଲାଦିନୁ କାହିଁକି ନିଜକୁ ହରାଇ ବସିଲି ଗୋଟାଏ ଆଶାର ମାୟା-ଜାଲ ଭିତରେ । କାହିଁକି ସେ ଗୋଟାଏ ପ୍ରଲୋଭନ ଭିତରେ ମୋତେ ବୁଡ଼େଇ ଦେଉଛନ୍ତି !

ଦେବଭାଇ ! ସେ କାହିଁ କେଉଁଠି । ମୁଁ ତାଙ୍କର କେତେ ତଳେ । ଆମ ଦିହିଁଙ୍କ ଜୀବନକୁ ନେଇ ନୂଆବୋଉ କଣ ଖାଲି ଖେଳ ଖେଳୁଚନ୍ତି ! ନାଁ । ନାଁ । ନୂଆବୋଉ, ସରଗପରି ଉଚ୍ଚ ତାଙ୍କର ମନ—କାଚପରି ସ୍ୱଚ୍ଛ ତାଙ୍କର ଅନ୍ତର । ସେ କାହିଁକି ଜୀବନ ନେଇ ଖେଳ ଖେଳିବେ । ସେ ମହତ୍—ମୋତେ ତାଙ୍କର ସ୍ନେହଦେଇ ପାଖକୁ ଟାଣି ନେଇଚନ୍ତି । ମୁଁ ତାଙ୍କୁ ଚିହ୍ନିପାରି ନାହିଁ—ମୁଁ ତାଙ୍କୁ ହୃଦୟର ଗଭୀର ମୁକୁରରେ ଥରେ ଭଲକରି ଦେଖି ପାରିନାହିଁ ।

କେତେ କେଜାଣି ଭାବେ । ଭାବନାର ଅନାବନା ଭିତରୁ ମୁଁ ଦେଖେ ନୂଆବୋଉଙ୍କୁ । ସେ ପର ନୁହଁନ୍ତି…ଆପେ ଆପେ ମୋତେ ନିଜର କରି ସେ ମୋର ନିଜର ହୋଇ ଯାଇଚନ୍ତି । ଦେବଭାଇଙ୍କି ସତେ କଣ ମୁଁ ପାଇବି…ଜୀବନର ଲୁଚ୍ଚିଛପା ଅଫୁରନ୍ତ ପ୍ରୀତି ଭିତରେ ! ଶୋଇଲାବେଳେ ଭାବନାର ଜ୍ୱାଲାରେ ଛଟପଟ କରେ ମନଟା ମୋର ।

ଦିନେ ଦିନେ ଦେଖେ ଦେବଭାଇ ସପନ ରୂପରେ ଆସି ସବୁ ଭାବନା ମୋର ଦୂର କରି ଦେଇଛନ୍ତି । ଦେହରୁ ବ୍ୟାଆର-ଝାଳ ପୋଛିଦେଇ କହୁଚନ୍ତି, ମାଳ ! ଗତି

ଜାଣିଲେ ଜୀବନଟା ଭାରି ସୁନ୍ଦର । ମୁଁ ତୋ ପଛେ ପଛେ ଅଛି । ତୋତେ ଛାଡ଼ି କୁଆଡ଼େ ଯାଇ ପାରିବ ନାହିଁ ।

ଦିନ ରାତି ସବୁବେଳେ ନୂଆବୋଉଙ୍କର କଥା—ଦେବଭାଇଙ୍କର ସ୍ନେହ—ଝରଣାର ଗେଲ ପରିହାସ ମନ ଉପରେ ଅଲକ୍ଷିତରେ ଆସି ବସା ବାନ୍ଧେ । ଭାବେ କେତେ କେଜାଣି । ଜୀବନର ବିଗତଦିନର ସ୍ମୃତିମଧୁର କ୍ଷୁଦ୍ର କ୍ଷୁଦ୍ର ଦୃଶ୍ୟଗୁଡ଼ା ଆଖି-ଆଗରେ ନାଚଉଠେ । ଦେଖୁ ଦେଖୁ ମନ ଧାଏଁ ପ୍ରଲୋଭନରେ—ହୃଦସ୍ପନ୍ଦଟା କ'ଣ ପାଇବା ପାଇଁ ବ୍ୟାକୁଳ ହୋଇଉଠେ ।

ଇମିତି ଦିନଗୁଡ଼ା କଟିଯାଏ । ନିତିଦିନିଆ ନୂଆ ଭାବନା ଆସେ, ପୁରୁଣା ରହେ ପଛରେ । ଆଶାର ଆଲୁଅ ମନ ଗହନରେ ଖେଳେ ଲୁଚକାଳି ।

ସେଦିନ ଖରାବେଳେ । ବୋଉ ସେ ଘରେ ଶୋଇଥାଏ । ବାପା ଯାଇଥାନ୍ତି ସ୍କୁଲକୁ, ଖାଇସାରି ଟିକେ ଶୋଇବାକୁ ଗଲି । ନିଦ ହେଲା ନାହିଁ—ମନ ହେଲା ଝରଣାଙ୍କ ଘରଆଡ଼େ ଟିକେ ବୁଲି ଆସିବାକୁ । ବୋଉ ଜାଣିଲେ କାଳେ ଗାଳି ଦେବ, ସେଇଥିପାଇଁ ଚୁପି ଚୁପି ତା ଅଜଣାରେ ପଦାକୁ ବାହାରି ଆସିଲି ।

ନୂଆବୋଉ ମୋତେ ଦେଖି କହିଲେ,ମାଲି ମୁଁ ପରା ଏଇଲଗେ ତମ କଥା ଭାବୁଥିଲି । ମନ କଥା ମୋର ମନରେ ତମରି ଭାବନାର ଛନ୍ଦ ତୋଳୁଛି; ଯୋଗକୁ ତମେ ଆସି ପହଞ୍ଚିଲ । ବହୁତ ଦିନ ବଞ୍ଚିବ । ପଚାରିଲି, ଝରଣା କାହିଁ ନୂଆବୋଉ ?
ଝରଣା ଯାଇଚି ତା ସଙ୍ଗାତ ଘରକୁ, ସେ କହିଲେ ।

ଗାଁର ଆର ସାହି ଦାମୋଦର ମହାନ୍ତି ଝିଅ ସୁବାସୀ—ଝରଣାର ସଙ୍ଗାତ । ପିଲାଟି ଦିନରୁ ଦିହିଁଙ୍କର ଭାରି ଭାବ । ଝରଣା ମୋଠୁ ସୁବାସୀକି ଭାରି ଭଲ ପାଏ ।

ନୂଆବୋଉ ସାଙ୍ଗରେ କେତେ ଗପ ପଡ଼ିଲା । କଣ ଗୋଟାଏ କଥାରେ ମୁଁ କହିଲି, ନୂଆବୋଉ ତମେ ଯଦି ସୁରଭାଇଙ୍କି ବାହା ନହୋଇ ଦେବଭାଇଙ୍କି ବାହା ହୋଇଥାନ୍ତ—ତେବେ ଭାରି ଭଲ ହୋଇଥାନ୍ତା । ନୂଆବୋଉ ହସିଲେ—ସାର୍ଥକତାର ହସ । ସତେ ଯେପରି ତାଙ୍କ ମନ କଥା ମୁଁ କହିଦେଲି । ହସି ହସି କହିଲେ, ମୁଁ ବାହା ହୋଇଥିଲେ ତମ ଖାଇବା ପତରରେ ତ ଧୂଳି ପଡ଼ିଥାନ୍ତା । ତମେ କଣ ଇମିତି ଆଉ ନୂଆବୋଉ କତିକି ସ୍ନେହ-ମମତା ନେଇ ଦଉଡ଼ି ଆସୁଥାନ୍ତ ! କହିଲି, ନୂଆବୋଉ କାହିଁକି ମୋତେ ପ୍ରଲୋଭନ ନିଆଁ ଭିତରକୁ ଟାଣି ନେଉଚ ? ଦେବଭାଇ କେଉଁଠି —ମୁଁ କେଉଁଠି । ଦେବଭାଇ ବଡ଼ଲୋକର ପୁଅ—ମୁଁ ଗରିବର ଝିଅ । ସ୍ନେହ, ଭଲପାଇବା ଭିତରେ ମୁଁ କେଉଁଦିନ ଦେବଭାଇଙ୍କ ପାଇବ ବୋଲିତ ଆଶା କରି-

ନାହିଁ । ସେ ମୋତେ ଯେଉଁ ସ୍ନେହର ସ୍ୱାଦ ଟିକେ ଚଖେଇଚନ୍ତି—ମୁଁ ତାହାର ପ୍ରତଦାନରେ ତାଙ୍କୁ ଭଲ ପାଉଚି ସିନା ।

ନୂଆବୋଉ ହସି ହସି କହିଲେ, ମାଲ ଏଇଟା ତୁମର ମନଗଢ଼ା କଥା ନଁ । ହୃଦସ୍ପର କଥା ? ଅନ୍ତର ଭିତରକୁ ଗ୍ଟହିଁ ଥରେ କହିଲ ! ମୁଁ କହିଲି, ନୂଆବୋଉ, ତମେ ଆସିଲା ପରେ ମୋ ମନରେ ଯେଉଁ ଭାବନାର ଝଡ଼ ତୋଫାନ ଉଠେଇଚ—ହୃଦସ୍ପରେ ଯେଉଁ ଆଶାର ନିଆଁ ଜାଳି ଦେଇଚ—ତାର ଫଳ କଣ ହେବ, ଥରେ ନୁହେଁ, ବାର ବାର ହୃଦସ୍ପକୁ ପଗ୍ଟରିଲେ ବି କିଛି ଉତ୍ତର ପାଉନାହିଁ । ନୂଆବୋଉ କହିଲେ, ମାଲ ଏଇ ଅଦିନିଆ ଭାବନାର ଝଡ଼ତୋଫାନ ଦିନେ ଉଭେଇ ଯିବ ଦୂରକୁ······ମନ, ଗହନର ତଳେ ଉଇଁବ ସୁନ୍ଦର କୁଲୁକୁଲିଆ ଟିକି ଜହ୍ନଟିଏ । ଆଶାର ଆଲୁଅ ଖେଳିବ ଜୀବନ ଫୁଲରେ ସବୁ ସଉରଭ ଠୁଳ କରି । ମୁଁ କହିଲି, ନୂଆବୋଉ ସେ ଭାଗ୍ୟ କଣ ମୋର ଅଛି ! ନୂଆବୋଉ ମୋତେ କୋଳକୁ ଟାଣି ନେଇ କହିଲେ, ଅଛି ମାଲ ତମର ଭାଗ୍ୟରେ ଅଛି ।

ସେପାଖ ଘରୁ ମାଉସୀ (ଦେବଭାଇଙ୍କ ବୋଉ) ଡାକିଲେ । ନୂଆବୋଉ କହିଲେ, ଆସୁଚି ମାଲ—ତମେ ଏଇଠି ବସିଥାଅ । ମା କାହିଁକି ଡାକୁଚନ୍ତି ମୁଁ ଶୁଣିଆସେ । ସେ ଗ୍ଟଲିଗଲା ପରେ ମୁଁ ଏକୁଟିଆ ସେଇ ଘରେ ବସି ରହିଲି । ନିସଙ୍ଗ ବୋଧହେଲା । ଟେବୁଲ ଉପରେ ପଡ଼ିଥିବା କାହ୍ନୁବାବୁଙ୍କର "ଅଦେଖା ହାତ" ଆଣି ପଢ଼ି ବସିଲି । ଅନେକ ଦିନ ତଳେ ସେ ବହି ଖଣ୍ଡିକ ପଢ଼ିଥିଲି—ପୁଣି ଥରେ ପଢ଼ିବାକୁ ମନ ହେଲା । ବହି ପଢ଼ିବାରେ ମୁଁ ଏତେ ମୁଗ୍‌ଧ ହେଇଯାଇଚି ଯେ କେତେବେଳେ ଦେବଭାଇ ସେ ଘରକୁ ଆସି ମୋ କଡ଼ରେ ଛିଡ଼ା ହେଇଗଲେଣି—ଜାଣେନା । ସେ ପଗ୍ଟରିଲେ, ମାଲ ! ସେଇଟା କି ବହି କି ?

ଚମକିପଡ଼ି କହିଲି, କାହ୍ନୁବାବୁଙ୍କର ଅଦେଖାହାତ ।

ସେ କହିଲେ, ସତେ ମାଲ କାହ୍ନୁବାବୁଙ୍କର ଅଦେଖାହାତ ବହିଖଣ୍ଡି ପଢ଼ିଲେ ଗୀତାର କରୁଣ ଛବି ଆଖି ଆଗରେ ନାଚି ଉଠେ । ଜୀବନରେ ସେ କେତେ ଆଶା କରି ନ ଥିଲା ! କିନ୍ତୁ କଣ ହେଲା, ଶେଷରେ ତାର ଜୀବନ ଗତିକୁ ଅଦେଖାହାତ ନେଇ ଯୋଇଲା ଅନ୍ୟ ବାଟରେ ।

ମୁଁ କହିଲି, ଇମିତି ଦୁନିଆରେ ଶହ ଶହ ଘଟଣାତ ଘଟୁଚି ଦେବଭାଇ; କିନ୍ତୁ ଗୀତା ଜୀବନର କରୁଣ ଛବିଟାତ ନୂଆ ନୁହେଁ । ନିତିଦିନିଆ ଘଟଣା ଭିତରୁ ସେ

ଗୋଟାଏ ଖାଲି ଜୀବନର ଅସୀମ ବିଫଳତାର ଅଳଭି ସବୁ ଗାରଟିଏ । କିଏ ଜାଣେ ଆମ ଜୀବନରେ ଇମିତି ଗୋଟାଏ ଘଟଣା ନ ଘଟିବ । ଟିକି ଟିକି ଭୁଲ ମାନ-ଅଭିମାନରେ ଅଦେଖାହାତର ଇଙ୍ଗିତ କୁଆଡ଼େ ନେଇ ଜୀବନ ପ୍ରବାହକୁ ତ ପୁଣି ବଦଳାଇ ଦେଉଛି !

ଦେବଭାଇ ହସିଲେ । କହିଲେ, ମାଲ ଭାବିଥିଲି ତୁ ପିଲା—କିଛି ଜାଣୁନା; କିନ୍ତୁ ତୋ ମୁହଁରୁ ଏଇ କଥା ପଦକ ଶୁଣି ମୋର ସେ ଭ୍ରମ ତୁଟିଛି । ସତେ ମାଲ, ଜୀବନର ପଥ ବଡ଼ ଖମଡ଼ା—ଚାଲୁ ଚାଲୁ କୁଆଡ଼େ ଗୋଡ଼ ଖସିଯାଏ କିଛି କଳନା କରି ହୁଏନା । କିନ୍ତୁ ସବୁର ମୂଳରେ ରହିଛି ଏଇ ଅଦେଖାହାତର ଇଙ୍ଗିତ ଆଉ ଚାଳନା । ମୁଁ ତ ଜଣକୁ ଏତେ ଭଲ ପାଏ—କିନ୍ତୁ କାହିଁ ସେ ତ ମୋତେ ଦିନେ ଧରା ଛୁଆଁ ଦିଏନା !

ଜାଣେ ଦେବଭାଇ ମୋତେ ଶେଷକଥା ପଦକ ଦେଖେଇ ଦେଖେଇ କହିଲେ । କହିଲି, ସେ ହୁଏତ ତମକୁ ଉପରେ ଆଡ଼ ଆଡ଼ ହୋଇ ଅନ୍ତର ଭିତରେ ଯଦି ତମର ଛବିକୁ ଅତି ଆପଣାର କରି ରଖିଥାଏ ତେବେ······ତେବେ ଦେବଭାଇ ତାର ତ ଆଉ ଦୋଷ ନୁହେଁ । ତମର ଖାଲି ବୁଝିବା ଭୁଲ ।

ସେ ହସିଲେ । କହିଲେ, ମାଲ, ତୋତେ ଆଉ କଥାରେ ଜିଣି ପାରିଲି ନାହିଁ । ଦିନ ଆସୁଛି ଯେ ରହିଥା । ସେତେବେଳେ କଥାରେ ତୋର ମୋର ହେବ ପରୀକ୍ଷା । ତାଙ୍କ କଥାଟା ଶୁଣି ମୁହଁଟା ମୋର ତଳକୁ ହୋଇଗଲା ଲଜରେ । ସେ ହସି ହସି ମୋ କଡରେ ଆସି ବସିପଡ଼ିଲେ । ଲଜରେ ମୁଁ ଉଠି ଆସୁଥିଲି ବାହାରକୁ, କିନ୍ତୁ ସେ ମୋତେ ଛାଡ଼ିଲେ ନାହିଁ । ଲୁଗା କାନିଟା ଧରି ଅଟକାଇ ରଖିଲେ । ଜବରଦସ୍ତ କୋଳକୁ ଟାଣି ନେଇ ମୋ ଗାଲରେ ଗୋଟିଏ ଚୁମ୍ବନ ଆଙ୍କି ଦେଲାବେଳେ ହଠାତ୍ ନୂଆବୋଉ ସେଇ ଘର ଭିତରକୁ ପଶି ଆସିଲେ । ନୂଆବୋଉଙ୍କୁ ଦେଖି ଦେବଭାଇ ପଳାଇଗଲେ, ଲଜରେ ମୁହଁଟା ପୋଡ଼ିଗଲା ମୋର । ଛିଃ ଛିଃ ନୂଆବୋଉ କଣ ଭାବିଥିବେ ? ପଦାକୁ ପଳାଉ ଆସୁଥିଲି—ନୂଆବୋଉ ମୋ ହାତ ଦି'ଟାକୁ ପାଖକୁ ଟାଣିନେଲେ । କହିଲେ, ଜ ମାଲ ଲୁଚ ଲୁଚ ଖୁବ୍ ତ ! ଘଡ଼ିକ ଆଗରୁ ପରା କହୁଥିଲୁ ଭଲ ପାଇବା ଭିତରେ ଦେବଭାଇଙ୍କି ପାଇବ ବୋଲି କେବେ ଆଶା କରି ନାହିଁ ? କିନ୍ତୁ ଆଶା ନ କରିଥିଲେ ନିଜକୁ କଣ ଇମିତି ଉତ୍ସର୍ଗ କରି ଦିଅନ୍ତ ?

ହଠାତ୍ ଗୋଟାଏ ଅପମାନର ଧକ୍କାରେ ମୋ ଆଖିରେ ଲୁହ ଜକ ଜକ କଲା । କହିଲି, ଦେବଭାଇ ମୋତେ ଜବରଦସ୍ତ······ନୂଆବୋଉ ମୋତେ କୋଳକୁ ଟାଣି

ନେଇ ମୋ ଆଖିରୁ ଗଡ଼ି ଆସୁଥିବା ଲୁହ ଦୁଇ ବିନ୍ଦୁ ପୋଛି ଦେଇ ଦେଇ କହିଲେ, ମାଲି, ମୁଁ ଜାଣେ ମାଲି । ତମ ଦାହିଁଙ୍କ ମନ କଥା ଭଲ କରି ଜାଣେ । ତମ ଦାହିଁଙ୍କି ଏତେ ଆପଣାର କରିଚ—ସ୍ନେହ ଦେଇ ପାଖକୁ ଟାଣି ଆଣିଚ, ତମ ଦାହିଁଙ୍କ ହୃଦୟସ୍ଥ କଥା ମୁଁ ଜାଣିବି ନାହିଁତ ଆଉ ଜାଣିବ କିଏ ?

କହିଲି, ନୂଆବୋଉ, ତମେ କେଡ଼େ ମହତ । ତମକୁ ମୁଁ ଚିହ୍ନି ପାରି ନାହିଁ—ହୃଦୟସ୍ଥର ସବୁ କଥା ଖୋଲି କହିପାରି ନାହିଁ । ମୋତେ କ୍ଷମା କର । ନୂଆବୋଉ କହିଲେ, ମାଲି, ଇମିତି କେତୋଟି କରୁଣ ଓ ବାସ୍ତବ ଅନୁଭୂତି ଭିତରେ ମୋ ଜୀବନ ପସ୍ତି ସାରି ଯାଇଛି—ଅଛି ଖାଲି ସାରା ଜୀବନକୁ ଗୋଟାଏ ସ୍ମୃତିର ସ୍ତୂପ । ମୁଁ ତାଙ୍କ କଥାର ଅର୍ଥ କିଛି ବୁଝିପାରିଲି ନାହିଁ ।



ଦିନଦିନ ବିତିଗଲା । ନୂଆବୋଉଙ୍କ କତିକି ଯିବି ଯିବି ବୋଲି ଆଉ ଯାଇ ପାରିଲି ନାହିଁ । ସବୁବେଳେ ସେଦିନର ଲାଜ ସଂକୋଚ ପାହାଡ଼ ପରି ଆସି ମୋ ଆଗରେ ଠିଆ ହୁଏ । ମୁହଁଟା ମୋର ପୋଡ଼ିଯାଏ ଲାଜରେ—ନୂଆବୋଉଙ୍କ କତିକି ଇଚ୍ଛା ଥିଲେ ବି ଯାଇ ପାରେନା ।

ସେଦିନ କେତେ ରଙ୍ଗର ଆଲୁଅ ଶାଢ଼ୀ ପିନ୍ଧି ଗୋଧୂଳି ଆସି ଆମ ଘର ବାହାରେ ହସୁଥାଏ । ତେଙ୍ଗା ନଡ଼ିଆ ଗଛ ଶିଖରେ ସୁନା କିରଣ ଝଟକୁଥାଏ । ଗୋଧୂଳି ଆସିଛି ବୋଲି ପକ୍ଷୀ ମେଳରେ ଚହଳ ପଡ଼ି ଯାଇଥାଏ । ସେଇଥିପାଇଁ ସେମାନେ ରାବି ରାବି ଏଣେ ତେଣେ ଦଉଡ଼ୁଥାନ୍ତି । ଗାଈଆଳ ଟୋକାର ଗୋଧନ ବାହୁଡ଼ା ବଇଁଶୀର ସ୍ୱର ମନରେ କେଉଁ ସପନ ରାଇଜର ରାଗିଣୀ ତୋଳୁଥାଏ । ବାପା, ବୋଉ ଘରେ ନଥାନ୍ତି । ଘରେ ବସି ମୁଁ ଭାବୁଚି ଦେବଭାଇଙ୍କ କଥା । କାହିଁକି ସେ ମୋତେ ଏତେ ଆପଣାର କରିନେଲେ । ସେ କ'ଣ ସତେ ମୋତେ ଭଲ ପାଆନ୍ତି ସାରା ଜୀବନର ସାଥୀ କରିବାକୁ ? ନା ଦେବଭାଇ ମୋତେ ପ୍ରଲୋଭନ ନାଆଁରେ ଆହ୍ଲାଦ ଦେଇ ପୁଣି ଦିନେ ହୋଇଯିବେ ପର—ଅନ୍ୟର । ଭାବି ଭାବି କିଛି ଠିକ୍ କରି ପାରେନା । ପୁଣି ପରକ୍ଷଣରେ ନୂଆବୋଉଙ୍କ କଥାଗୁଡ଼ା ମନ ଉପରେ ଜଳିଉଠେ । ନିରାଶାର ଅନ୍ଧକାର ଭିତରେ ଆଶାର ଆଲୁଅ ଦେଖେ । ନୂଆବୋଉ ମୋତେ ତାଙ୍କର ଭଉଣୀ ପରି ସ୍ନେହ ଦେଇ ପାଖକୁ ଟାଣି ନେଇଚନ୍ତି । ଦେବଭାଇ ମୋର ହୋଇଚନ୍ତି ।

ହଠାତ୍ ଦେବଭାଇ ପଶି ଆସିଲେ । ପଚାରିଲେ, ମାଳା କଣ ଏତେ ଭାବୁଚୁ ? ମୁଁ କିଛି କହିଲି ନାହିଁ । ଉଠିଯାଇ ସପଟା ଆଣି ପାରିଦେଲି । କହିଲି, ଦେବଭାଇ ବସ । ସେ

ସେ ପଚାରିଲେ, ଆମ ଘରଆଡ଼େ କାହିଁକି ଯାଉନୁ ମାଳ ? ମିଛରେ କହିଲି, ବୋଉ ଛାଡ଼ୁନି । ସେ କହିଲେ, ତୋତେ ଏ କେଇଟାଦିନ ନ ଦେଖି ଗୋଟାଏ ବରଷ ପରି ଲାଗୁଚି, ସତେ ମାଳ ତୁ କଣ ମୋ ଉପରେ ରାଗିଚୁ ? ମୋତେ କଣ ପର ଭାବୁ ? ମୁଁ କହିଲି, ରାଜୀବ ଆମେ ଦେବଭାଇ⋯ତମର ଏଇ ଭଲପାଇବାଟା ଯଦି ଅଭିନୟ ପରି ହୁଏ, ତେବେ ରାଜୀବ ବଡଭାଇର ସବୁ ସରିସିବ । ସେଥିପାଇଁ ବେଳେବେଳେ ତମ ଉପରେ ବିଶ୍ୱାସ କି କରି ହୁଏନା । ସେ କହିଲେ, ସମସ୍ତେ କଣ ସମାନ ! ମୁଁ କହିଲି, କାହାରିକୁ ବିଶ୍ୱାସ ନାହିଁ ଦେବଭାଇ⋯ସମସ୍ତେ ସମାନ । ଭଲପାଇବାର ଛଳ କରି କେତେ ପ୍ରଲୋଭନ ଦେଖାଇ ଶେଷରେ ନିଜର ସବୁ କାମନା ଚରିତାର୍ଥ କରି ଦୂରକୁ ଠେଲି ଦେଇ ଚାଲିଯାଆନ୍ତି । ସେ କହିଲେ, ମୋତେ ତୁ ଏତେ ଅବିଶ୍ୱାସ କରୁ ମାଳ ! ଏତିକି କହି ଉଠିଲେ । କହିଲେ, ଯାଉଚି ମାଳ ! କହିଲି, ବସ ଦେବଭାଇ ! ବୋଉ ଆସୁଥିବ । ସେ ଶୁଣିଲେ ନାହିଁ । କହିଲେ, ନା ଯା' ଉପରେ ତୋର ଏତେ ଅବିଶ୍ୱାସ, ତାକୁ ପାଖରେ ବସାଇବା ଠିକ୍ ନୁହେଁ ମାଳ । ସେ ଚାଲିଗଲେ । ତାଙ୍କର ଶେଷକଥା ଗୁଡ଼ା କ୍ୟାଥାରେ ଭାରି ହୋଇ ଯାଇଥିଲା । ଅଟକାଇ ପାରିଲି ନାହିଁ—ସେ ଚାଲିଗଲା ପରେ କେଜାଣି କାହିଁକି ମନଟା ମୋର ତାଙ୍କର ଭାବନାରେ ଗୋଳେଇ ଘାଣ୍ଟି ହେଲା । ମନ ହେଲା, ଦଉଡ଼ି ଯାଇ ଦେବଭାଇଙ୍କି ଫେରାଇ ଆଣିବାକୁ—କିନ୍ତୁ ପାଦ ଚଳିଲା ନାହିଁ ।

ଦି'ଦିନ ପରେ । ସେଦିନ ସଞ୍ଜବେଳେ ଆକାଶରେ ଜହ୍ନମାମୁଁ ଖିଲି ଖିଲି ହୋଇ ହସି ଉଠିଆସୁଥାଏ । ଗଛପତରର ଫାଙ୍କରେ ଅନ୍ଧାର ଟିକିଏ ଟିକିଏ ଲାଗି ରହି-ଥାଏ । ଦୁଆରେ ଜୋଛନା ଆଲୁଅର ରୁପେଲି ଶେଯ ଉପରେ ସଞ୍ଜୁଆ ସମୀର ଭୁନି ଭୁନି ଆସି ଘାଲି ପାରୁଥାଏ ।

ଝରଣା ଆସି ପହଞ୍ଚିଲା । ଅନେକଦିନ ପରେ ତା ସାଙ୍ଗରେ ମୋର କେତେ ଆଉର ଗପ ପଡ଼ିଲା । କଥା ମଝିରେ ପଚାରିଲି, ଝରଣା ଦେବଭାଇ କାହିଁକି ଆମ ଘରଆଡ଼େ ଆସୁନାହାନ୍ତି ! ଝରଣା କହିଲା, ଭାଇ ନାହାଁନ୍ତି—ଦି'ଦିନ ହେଲା କଟକ ଯାଇଚନ୍ତି, ଗଲାବେଳେ କାହିଁକି ତାଙ୍କ ମନଟା ଭଲ ନ ଥିଲା । କଣ ହେଇଚି କେଜାଣି, ନୂଆବୋଉ ଯେତେ ପଚାରିଲେ କିଛିତ କହିଲେ ନାହିଁ ବୁଝିପାରିଲି, ସେଦିନ ମୁଁ ତାଙ୍କୁ ଯେଉଁ କଡ଼ା କଥା ଦି'ପଦ କହିଥିଲି ବୋଧହୁଏ ସେଇଥିପାଇଁ ତାଙ୍କ ମନ ଭଲ ନ ଥିଲା । ଦେବଭାଇଙ୍କ ମନଦୁଃଖ କଥା ଶୁଣି ମୋ ମନଟା କାହିଁକି ଖାଲି ତାଙ୍କରି ସ୍ମୃତିରେ ଅଧୀର ହେଲା । ଝରଣାସାଙ୍ଗରେ ଆଉ ଗପ କରିବାକୁ ଭଲ ଲାଗିଲା ନାହିଁ । କଥା ବାଆଁରେଇ କହିଲି, ଝରଣା ତୁ ଯା, ମୋତେ କାହିଁକି ଭାରି ନିଦ

ମାଡ଼ିଲଣି । ସେ ଚାଲିଗଲା । ଗଲାବେଳେ କହିଗଲା—କାଲି ଆମ ଘରଆଡ଼େ ଯିବୁ ମାଳ, ନୂଆବୋଉ ବାର ବାର କରି ଗୁଣି ପକେଇ କହିଚନ୍ତି ।

ସେ ଚାଲିଗଲା ପରେ ମୁଁ ଶୋଇ ଶୋଇ ଭାବିଲି ଖାଲି ଦେବଭାଇଙ୍କ କଥା । ମନ-ଗୁହାର ଅନ୍ଧକାର ଭିତରେ କେତେ ଦିନର ସ୍ମୃତି ଝଡ଼ି ହୋଇ ପଡ଼ିଥିଲା; କିନ୍ତୁ ଦେଖିଲି ତା'ରି ଭିତରେ ଦେବଭାଇଙ୍କର ସ୍ମୃତି ଗୁଡ଼ା ସବୁଦିନେ ଯେପରି ନୂଆ ଜକ ଜକ କରୁଚି । କେତେ ଭାବିଲି । କେତେ ହସିଲା ସଞ୍ଜ, କେତେ ନିରୁଛିଆ ଦି'ପହର, କେତେ କଅଁଳ ସୁନେଲି ସକାଳ ମୋର ତାଙ୍କରି ସାଥିରେ କଟିଚି, କେତେ ସେ ମୋତେ ଭଲ ପାଇଚନ୍ତି, ଆଦର କରି ପାଖକୁ ଟାଣି ନେଇଚନ୍ତି···ଭାବୁ ଭାବୁ ଆଖି ପତାରେ କେତେବେଳେ ଆସି ନିଦ ବସା ବାନ୍ଧିଲା ଜାଣେନା ।

ନୂଆବୋଉଙ୍କ କଥାକୁ ଯିବି ଯିବି ବୋଲି ନିଇତି ଭାବେ; କିନ୍ତୁ ବୋଉ ତରଫରେ ଘର କାମ କରୁ କରୁ ଦିନ ଯାଏ—ଯାଇ ପାରେନା । ସେଦିନ ବୋଉଠାରୁ ଶୁଣିଲି ଦେବଭାଇ କାଲି କଟକରୁ ଫେରିଚନ୍ତି । ଭାବିଲି, ଆଜି ଦେବଭାଇ ନିଶ୍ଚୟ ଆମ ଆଡ଼େ ଆସିବେ । ଏତେଦିନ ପରେ ସେ ଘରକୁ ଫେରିଚନ୍ତି—ମୋ କଥାକୁ ଆସିବେ ନାହିଁ ?

କିନ୍ତୁ ଅନେଇ ଅନେଇ ଚାରିଟାଦିନ କଟିଗଲା—ଦେବଭାଇ ଆମ ଘର ଆଡ଼େ ଆସିଲେ ନାହିଁ । ଭାବିଲି, ତେବେ ଦେବଭାଇ ନିଶ୍ଚୟ ମୋ ଉପରେ ସେଦିନ କଥାରେ ରାଗିଚନ୍ତି । ତାଙ୍କୁ ଦେଖିବା ପାଇଁ ମନଟା ବ୍ୟାକୁଳ ହେଲା । ଅତି ଆଗ୍ରହରେ ସେଦିନ ଖରାବେଳେ ଦଉଡ଼ିଗଲି ତାଙ୍କ ଘରକୁ ।

ନୂଆବୋଉ ମୋତେ ଦେଖି କେତେ ଆପସା ମାରିଲେ । କହିଲେ, ମାଳ କାହିଁକି ଆସିନ୍ଥ—ଏଠି ତମର କିଏ ଅଛନ୍ତି ? କହିଲି, କଣ କରିବି ନୂଆବୋଉ ଆସିବାକୁ କଣ ମୋର ମନ ନାହିଁ । ଆସିଲେ ବୋଉ ତେଣେ କଟ କଟ ହେଉଚି—ନ ଆସିଲେ ଏଣେ ତମେ ରାଗୁଚ—ମନରେ ଦୁଃଖ କରୁଚ । ମୁଁ ଖାଲି ମଝିରେ ପଡ଼ି ହିନ୍ତି ସନ୍ତି ହେଉଚି । ନୂଆବୋଉ ହସିଲେ । କେତେ ଆଦର କରି ମୋତେ ପାଖକୁ ଡାକି ନେଲେ । ଦିହିଙ୍କ ଭିତରେ କେତେ ସୁଖ ଦୁଃଖ ରାଇଜର ଅସରନ୍ତି ଗପ ଚାଲିଲା ।

ଗପ ମଝିରେ ହଠାତ୍ ଦେବଭାଇ ଘର ଭିତରକୁ ପଶି ଆସିଲେ । ମୋତେ ଦେଖି ନ ଦେଖିଲା ପରି ମୁହଁଟା ବୁଲାଇ ପରକ୍ଷଣରେ ପଳାଇଗଲେ । ନୂଆବୋଉ କହିଲେ, ଦେବର କ'ଣ ହେଇଚି କେଜାଣି ଏ କେତେଦିନ ହେଲା କାହିଁକି ତା ମନ ଭଲ ନାହିଁ । ହଠାତ୍ ମୁଁ କହି ପକାଇଲି, ନୂଆବୋଉ ଦେବଭାଇ ମୋ ଉପରେ ରାଗି

କରିଛନ୍ତି । ଆମ ଘରେ ବି ତାଙ୍କର ଆଜିକାଲି ଟିକିଏ ପାଦ ପଡ଼ୁ ନାହିଁ । କଣ ବା ଟିକିଏ କଥା ମୁଁ କହୁ କହୁ କହି ପକାଇଚି—ସେଇଆକୁ ସେ ଛଳ କରି ରହିଚନ୍ତି । ନୂଆବୋଉ ହସିଲେ । ସତେ ସେଇଥିପାଇଁ ଦେବ ମନ ଭଲ ନାହିଁ । କାହିଁକି ତମ ଉପରେ ରାଗିଛନ୍ତି କି ମାଳ !

ସେଦିନ ଘଟଣା ସବୁ ନୂଆବୋଉଙ୍କ ଆଗରେ କହିଲି । ନୂଆବୋଉ ସବୁ ଶୁଣି ଶେଷରେ କହିଲେ, ଦେବ ଆମର ସିମିତି ନୁହେଁ । ତମକୁ ସେ କେତେ ଭଲ ପାଏ । ସବୁବେଳେ ତମରି କଥା, ତମରି ପ୍ରଶଂସା ମୋ ମୁହଁରୁ ଶୁଣିଲେ ତା' ମନଟା ଆନନ୍ଦରେ ଫୁଲିଉଠେ—ପୁନେଇଁର ଭରା ନଈ ପରି । ତମରି ପାଇଁ ସେ ପାଗଳ ହୋଇ ଯାଉଛନ୍ତି, ତମକୁ ନ ପାଇଲେ ସେ ନିଜ ଜୀବନକୁ ଆପେ ଆପେ ଜାଳି-ଦେବାକୁ ପଛଘୁଞ୍ଚା ଦେବେ ନାହିଁ । ମୁଁ ତାଙ୍କ ହୃଦୟକୁ ଭଲ କରି ଦେଖିଚି । ତୁମେ ଭୁଲ ବୁଝୁଛ ମାଳ ! ଦେବ ତମରି । କହିଲି, ନୂଆବୋଉ ତା ହେଲେ ଆମ ଦିହିଁଙ୍କ ଝଗଡ଼ାଟା ତମେ ନ ମେଣ୍ଟାଇଲେ ଆଉ ମେଣ୍ଟାଇବ କିଏ ? ନୂଆବୋଉ ହସି ହସି କହିଲେ, ତୁମେ ବସ ମାଳ—ମୁଁ ଦେବଙ୍କୁ ଡାକି ଆଣୁଚି ।

ଟିକିଏ ପରେ ନୂଆବୋଉ ଦେବଭାଇଙ୍କି ଟାଣି ଟାଣି ଆଣି ମୋ କତିରେ ଥୁଆଇଦେଲେ । କହିଲେ, ଦେବ ! ମାଳ ସାଙ୍ଗରେ ଟିକେ ଗପ କର—ମୁଁ ଆସୁଚି । ଦେବଭାଇ ବିରକ୍ତିଭରା ଗଳାରେ କହିଲେ, କି ଗପ କରିବି ? ନୂଆବୋଉ ହସି ହସି କହିଲେ, ଏଇ ଜୀବନର ସୁଖ-ସୁଆଦ ଗପ—ମାଳ ସାଙ୍ଗରେ କିମିତି ଘର କରିବ—କିମିତି ମାଳକୁ ନେଇ ମଧୁଶଯ୍ୟା ରାତିଟା କାଟିବ—ଇମିତି କେତେ ଗପ, ଗେଲ ଥଟ୍ଟା । ଦେବଭାଇଙ୍କ ମୁହଁରେ ଧୋବ କଇଁଫୁଲ ପରି ହସ ଫୁଟି ଉଠିଲା । ଅଭିମାନର ଭାଇ ପରକ୍ଷଣରେ ମିଳାଇଗଲା । କହିଲି, ନୂଆବୋଉ ସିମିତି ଚଡ଼ାଇବତ ମୁଁ ପଳାଇଯିବି । ଯିବାକୁ ଗୋଡ଼ ବଢ଼ାଇଲି ଆଗକୁ । ନୂଆବୋଉ ଜବରଦସ୍ତ ଦେବଭାଇଙ୍କ ପଛକୁ ଠେଲି ଦେଇ କବାଟଟା ବନ୍ଦ କରି ବାହାରୁ ଜଞ୍ଜିର ଦେଇଦେଲେ ।

ମୁଁ ଉଠିଆସି କବାଟ ବାଡ଼େଇଲି । ନୂଆବୋଉ, କବାଟଟା ଖୋଲିଦିଅ, ମୋ ରାଣ । ତଥାପି ସେ ଶୁଣିଲେ ନାହିଁ । ଏହି ସୁଯୋଗ ପାଇ ଦେବଭାଇ ମୋତେ ତାଙ୍କ କୋଳକୁ ଟିକେ ଆଉଜାଇ ନେଲେ । ବାଧାଦେଇ ପାରିଲି ନାହିଁ । ସେ ମୋତେ କୋଳରେ ଜାକି ଧରି ବାରବାର ଚୁମ୍ବନ କଲେ ।

ଟିକିଏ ପରେ ନୂଆବୋଉଙ୍କର ପୁଣି କବାଟ ଖୋଲିବା ଶବ୍ଦ ଶୁଭିଲା । ଦେବଭାଇ ମୋତେ ଛାଡ଼ି ଦୂରକୁ ଘୁଞ୍ଚିଗଲେ । କବାଟ ମୁକୁଳା କରି ନୂଆବୋଉ ପଶି ଆସିଲେ·

ଭିତରକୁ । ମୁହଁରେ ତାଙ୍କର ଉଚ୍ଛୁଳା ହସ ଲହଡ଼ି ଖେଳୁଚି । ଦେବଭାଇ ପଦାକୁ ପଳାଇଲେ । ଲାଜରେ ମୋର ମନେ ହେଲା ସତେ ଯେପରି ମୁଁ ସେଇଠି ମରି ଯାଇଚି । କହିଲି, ନୂଆବୋଉ ତମେ ଭାରି ଦୁଷ୍ଟ ! ଇମିତି ହଇରାଣ କଲେ ଆଉ ଦିନେ ଆସିବି ନାହିଁ । ନୂଆବୋଉ କହିଲେ, ମାଲ ହଇରାଣ କଣ ହେଲଣି ! ଦିନ ପରା ଆସୁଚି···କେତେ ହଇରାଣ ହେବ । ରାତି ରାତି ଉଜାଗରରେ ପାହିଯିବ । ସେତେବେଳେ ଆଉ ଏ ନୂଆବୋଉ ବିଚାରୀର ଦୋଷ ଦେଇ ପାରିବନି । ସେ ଦୋଷଟା ପୁଣି ହେବ କାହାର ? ତମର ନାଁ ତମ ଦେବଭାଇଙ୍କର—ନାଁ ତମ ବୟସର । କାହାର ହେବ ଶୁଣେ ! ଲାଜରେ ମୁଁ ଘରକୁ ପଳାଇ ଆସିଲି । ନୂଆବୋଉ ଯେତେ ଡାକଲେ ଶୁଣିଲି ନାହିଁ ।



ତା'ପର ଦିନଠୁ ଦେବଭାଇ ରୋଜ ରୋଜ ଆମ ଘରକୁ ଆସିଲେ । ଝରଣା ଆସେ —ମୁଁ ନୂଆବୋଉ କତିକି ଯାଏ । କେତେ ହସଖୁସିରେ ଦିନଗୁଡ଼ା ଭାସି ଚାଲେ ସମୟର ସୁଅ ଉପରେ ।

ଛ'ମାସ ପରେ । ସେଦିନ ନୂଆବୋଉ ତାଙ୍କ ବାପଘରକୁ ଫେରି ଯାଉଥାନ୍ତି । ଖବର ପାଇ ମୁଁ ଯାଇଥାଏ ତାଙ୍କୁ ଟିକିଏ ଦେଖା କରିବାକୁ । ଦିନ ବାରଟା ବେଳକୁ ତାଙ୍କ ଘରୁ ଗାଡ଼ି ଆସି ପହଞ୍ଚିଲା । ଚାରିଟାବେଳକୁ ସେ ଆମଠାରୁ ବିଦାୟ ନେଇ ବାହାରିଲେ । ତାଙ୍କୁ ବିଦାୟ ଦେଲାବେଳେ କେଜାଣି କାହିଁକି ଝରଣା ଓ ମୋ ଆଖିରୁ ଲୁହ ଝରି ପଡ଼ିଲା । ସେ ମୋ ହାତ ଧରି କହିଲେ, ଛି କାନ୍ଦୁଚ କାହିଁକି ? କେଇଟାଦିନ ପାଇଁ ଯାଉଚି, ପୁଣି କ'ଣ ଆସିବି ନାହିଁ ? ସୁନା ଭଉଣୀ ମୋର କାନ୍ଦନା । ଏତିକି କହି ତାଙ୍କ ଲୁଗାକାନିରେ ଆମ ଆଖିରୁ ଲୁହ ପୋଛି ଗାଡ଼ିରେ ବସିଲେ । ନୂଆବୋଉ ଚାଲିଯାଉଥାନ୍ତି ବୋଲି ଦେବଭାଇଙ୍କ ମନଟା ବି ଭଲ ନ ଥାଏ । ମୁହଁଟା ଶୁଖିଲା ଦିଶୁଥାଏ । ନୂଆବୋଉ ଦେବଭାଇଙ୍କି କେତେ କଥା କହି ବିଦାୟ ନେଲେ । ତା'ପରେ ଗାଡ଼ି ଚାଲିଲା ଚନ୍ଦନପୁର— ନୂଆବୋଉଙ୍କ ବାପଘରର ପରିଚିତ ରାସ୍ତା ଉପରେ ।

ନୂଆବୋଉ ଚାଲିଗଲା ପରେ ମୁଁ ଆଉ ଝରଣାଙ୍କ ଘରଆଡ଼େ ଯାଏନା । ଦେବଭାଇ ନିଇତି ଆମ ଘର ଆଡ଼େ ଆସନ୍ତି—ଝରଣା ଦିନେ ଦି'ଦିନ ଛଡ଼ାରେ ଆସେ । ହସ, ଖୁସି, ନୂଆ ଭାବନା କେତେ ଆଦର ଅସରନ୍ତି ଗପ ଭିତରେ ପ୍ରାଣ ପୁଲକିତ କରି ଦିନଗୁଡ଼ା ଗଡ଼ିଯାଏ ।

ଆଠଦିନ ହେଲାଣି ଦେବଭାଇ କଟକ ଯାଇଥାନ୍ତି । ଝରଣା ବି କାହିଁକି ଦେଖା ନ ଥାଏ । ଏକଲା ମନଟା ଭଲ ଲାଗୁ ନ ଥାଏ । ସବୁବେଳେ ଏଣୁ ତେଣୁ ଭାବନା ମନ ଉପରେ ଧାଁଧପଡ଼ କରୁଥାଏ, ଘୋଡ଼ା ଦଉଡ଼ ପରି ।

ସେଦିନ ସକାଳେ । ଦୂରରେ···ସେଇ ଝଙ୍କାଳିଆ ଗଛ ଗହଳି ପାହାଡ଼ ଉପରେ ଧାଉଁବଧୂ ସୂର୍ଯ୍ୟ ଧୀପ ସକାଢ଼ି ରଖୁଥାଏ । ସକାଳର ସୁଲୁସୁଲିଆ ବାଆଟା ବଡ଼ ଦୁଷ୍ଟ । ସେ ଦଉଡ଼ି ଦଉଡ଼ି ସମସ୍ତଙ୍କୁ ଛୁଇଁ ଦେଇ ଆମ ବାଡ଼ି ଫୁଲବଗିଚାରୁ ଗନ୍ଧଯାକ ଚୋରି କରୁଥାଏ । ସୁକୁମାରୀ ଫୁଲରାଣୀ ବିଚାରୀ ନଇଁପଡ଼ି ଲାଜ ଓଢ଼ଣୀ ଟାଣି-ଦେଉଥାଏ । ଗଛ ପତ୍ରର ଦୁବଘାସ ଉପରେ ସକାଳର କଅଁଳ ଆଲୁଅ ମୁକୁତାପରି ଝଟକି ଉଠୁଥାଏ ଟିକିଏ ଦୂରରେ—ସେଇ ତାଳବଣ କରରେ ଯୋଉ ଶାନ୍ତୁଆ ନଈ—ତାରି ଉପରେ ସରାଗ ସକାଳର ଆଲୁଅ ରଜାପୁଅ ଆସି ପହଁରି ପହଁରି ଖେଳୁଥାଏ ।

ଘର ଓଳେଉଥି । ହଠାତ୍ ଝରଣା ଆସି ପହଞ୍ଚିଲା । ମୁହଁଟା ତାର ଶୁଖିଯାଇଚି—ବେଦନାର କଳାଛାଇ ଯେପରି ତାର ସରାଗ ଆଲୁଅକୁ ଲୁଚେଇ ଦେଇଚି । ଏତେ ସକାଳୁ ଝରଣାତ କେବେ ଆସେ ନାହିଁ । ତା ଶୁଖିଲା ମୁହଁକୁ ଦେଖି ମୋ ଅନ୍ତରରେ ଗୋଟିଏ ଅଜଣା ଭୟ ମୁଣ୍ଡ ଟେକିଲା । ପଚାରିଲି, କଲେ ଝରଣା କଣ ହୋଇଚି, ମୁହଁଟା କାହିଁକି ତୋର ଶୁଖିଯାଇଚି ? ଝରଣା କହିଲା, ମାଉ ସେ ଘରକୁ ଆ—କହିବି ।

ଦୁହେଁ ସେଘର ଖଟ ଉପରେ ଯାଇ ବସିପଡ଼ିଲୁ । ଝରଣା କହିଲା, ମାଉ କାଲି କଟକରୁ ଦୁ'ଜଣ ଲୋକ ଆସି ଦୁ'ପହରେ ଆମ ଘରେ ପହଞ୍ଚିଲେ । ବାପା ତାଙ୍କ ପାଇଁ ଭାରି ବ୍ୟସ୍ତ ହୋଇ ପଡ଼ିଲେ । ମୋତେ ତାଙ୍କର ଖାଇବା ପିଇବା ଖବର ବୁଝିବାକୁ ଆସି ତାଗିଦ୍ କଲେ । ପଚାରିଲି, ବାପା ସେ କିଏ ? ବାପା କହିଲେ, ସେମାନେ ଦେବ ବାହାଘର ବିଷୟରେ ଆସିଛନ୍ତି । ଡେଙ୍ଗା ହୋଇ ଯେଉଁ ଭଦ୍ର ଲୋକ, ସେ ଅମିୟବାବୁ ମୋର ଅତି ସାଙ୍ଗ । ତାଙ୍କର ଝିଅ ସହିତ ମୁଁ ଦେବକୁ ବାହା ଦେବାକୁ ମାସକ ତଳେ ତାଙ୍କୁ ପୁରୀରେ କବାବ ଦେଇଥିଲି । ସେ ଆଜି ଆସିଛନ୍ତି, ଘର ଦ୍ୱାର ଟିକେ ଦେଖି ଶୁଣି ଯିବେ । ଆଉ ମହାପ୍ରସାଦ ନିର୍ବନ୍ଧ କେବେ ହେବ ···ଦିନ ଠିକ୍ କରି ଦେଇଯିବେ । ତାଙ୍କ କଥା ଶୁଣି ମୋ ପାଟିରୁ ବାହାରି ପଡ଼ିଲା, ବାପା ! ଭାଇତ ନାହାନ୍ତି—ତାଙ୍କ ମତ ନ ନେଇ ମହାପ୍ରସାଦ ନିର୍ବନ୍ଧ ଦିନ ସ୍ଥିର କରିବେ କପରି ? ସେ ଆସନ୍ତୁ । ବାପା ହସିଲେ । କହିଲେ, ପାଗଳୀ—ଦେବ କ'ଣ ମୋ କଥାରୁ ବାହାରିଯିବ । ବାପା ମୁଁ ତାର—ମୁଁ ଯା କରିବି, କଣ ତା

ସୁଖ ଶାନ୍ତି ପାଇଁ ନୁହେଁ ? ଆଉ ଝିଅଟିକି ମଧ୍ୟ ମୁଁ ପୁରୀରେ ଦେଖିଛି । ସୁନ୍ଦର ରୂପ—ଲକ୍ଷ୍ମୀଟି ପରି । ମୁଁ କହିଲି ଯେତେ ହେଲେବି ଦେବଭାଇଙ୍କି ଠିକେ ପଚାରି ଜବାବ ଦେଲେ ଭଲ ହେବ ବାପା । ସେ ମୋ କଥାକୁ କାନ ଦେଲେ ନାହିଁ—ହସି ହସି ଚାଲିଗଲେ । ତାଙ୍କୁ ଜବାବଦେଇ ଦେଲେ ଏହି ମାସ ପନ୍ଦରରେ ମହାପ୍ରସାଦ ନିର୍ବନ୍ଧ କରିବାକୁ ।

ଏହିକଥା ଭାବି ଭାବି କାଲି ରାତିସାରା ନିଦ ହେଇନି ଲୋ ମାଲ—ଖାଲି ତୋର କଥା ବାର ବାର ମନକୁ ଅସ୍ଥିର କରିଛି । ସତେ କଣ ମାଲ ତୋର ଦେବଭାଇଙ୍କ ପ୍ରତି ସବୁ ସ୍ନେହ ଶରଧା ଇମିତି ଜଳି ପୋଡ଼ି ପାଉଁଶ ହୋଇଯିବ କାଲିଠୁ ମୋ ମନରେ ଯେତେ ଦୁଃଖ, ତା ତୁ ବୁଝି ପାରିବୁ ନାହିଁ ।

ଝରଣା କଥା ଶୁଣି ମୋର ସାରା ଶରୀରରେ ତୀବ୍ର ବେଦନା ଅନୁଭବ କଲି । ମୁଣ୍ଡଟା କ'ଣ ହେଇଗଲା । ଭାବିଲି, ସତେ କଣ ତେବେ ଦେବଭାଇ ଆଉ କାହାକୁ ବାହା-ହେବେ—ମୋତେ ଦୂରକୁ ଠେଲିଦେଇ ! ମୁହଁର ଭାବ ବଦଳାଇ ଓଠରେ କ୍ଷୀଣ ହସ ଫୁଟାଇ କହିଲି, ଝରଣା କାହିଁକି ଦୁଃଖ କରୁଚୁ । ମୋଠୁ ସୁନ୍ଦର, ଗୁଣର ନୂଆବୋଉ ତମେ ପାଇବ । କେତେ ହସ ଖୁସିରେ ଦିନ କାଟିବ । ମୁଁ କ'ଣ ତମ ଦେବଭାଇଙ୍କର ଯୋଗ୍ୟ ? ଝରଣା କହିଲା, କାହିଁକି ତୁ କଣ ସୁନ୍ଦରୀ ନୋହୁ—ଗୁଣର ନୋହୁ

କହିଲି, ସୁନ୍ଦରୀ, ଗୁଣର ହେଲେ କ'ଣ ହେଲା ଝରଣା, ମୁଁ ପରା ଗରୀବ । ଗରୀବ କ'ଣ କେବେ ବଡ଼ଲୋକର ସମାନ ହୋଇପାରେ ? ଏଇ ଦୁନିଆରେ ଗରୀବ ବୋଲି ଯୋଉ ଶ୍ରେଣୀଟା ଅଛନ୍ତି ସେମାନେ ବଡ଼ ହତଭାଗ୍ୟ ଲୋ ଝରଣା, ସେମାନଙ୍କ ଆଶା କେବେ ପୂରେନା । ଖାଲି ବୃଥାରେ ବଡ଼ଲୋକର ପ୍ରଲୋଭନ ମରୀଚିକା ପଛେ ପଛେ ସେମାନେ ଦଉଡ଼ନ୍ତି । ଶେଷରେ ପାଆନ୍ତି ଚିର ଜୀବନ ପାଇଁ ଖାଲି ହୃଦୟରେ ଗୋଟିଏ ପୋଡ଼ା ଦାଗ ।

ଝରଣା କହିଲା, ମାଲ ! ବାପା ସୁରଭାଇ ସିନା ତୋତେ ଗରୀବ ଘର ଝିଅ ବୋଲି ଭାବି ଦୂରକୁ ଫିଙ୍ଗି ଦେବେ—କଇଁଫୁଲକୁ ଖତଗଦାରେ ପକାଇଲା ପରି । କିନ୍ତୁ ଦେବ-ଭାଇ ଆଉ ନୂଆବୋଉ କେବେ ତୋତେ ପର କରି ପାରିବେ ନାହିଁ । ଦେଖିବୁ—ସେମାନେ ଆସନ୍ତୁ । ମୁଁ ଆଜି ନୂଆବୋଉ କତିକି ଚିଠି ଦେଇଛି । ସେ ଥିଲେ ନିଶ୍ଚୟ ବାପାଙ୍କୁ ଦେବଭାଇଙ୍କ ମନକଥା କହିଥାନ୍ତେ ।

କହିଲି, ଆଉ କାହିଁକି ପୋଡ଼ା କାଠରେ ଚନ୍ଦନ ଲେପୁଚୁ ? ବଡ଼ ମଉସା ଯେଉଁଟି ଠିକ୍ କରିଚନ୍ତି, ତାକୁ ଭାଙ୍ଗିବାକୁ କେହି ସାହସ କରିବେ ନାହିଁ । ତୁ ସିନା ଦୁଃଖ

କରୁଚୁ; କିନ୍ତୁ ମୋ ମନରେ ଭଲେ ହେଲେ କଷ୍ଟ ନାହିଁଲୋ ଝରଣା ! ମୁଁ ଖୁବ ଖୁସି । ଦେବଖୁଇ ବଡ଼ଲୋକ ଘରେ ବାହା ହେବେ—କେତେ ଧନ ଦଉଲତ, ସୁନା ରୂପା ଆଣିବେ । ରୂପବତୀ ଓ ଗୁଣବତୀ ସ୍ତ୍ରୀ ପାଇବେ । ଏହାଠୁ ବଳି ସୌଭାଗ୍ୟ, ସୁଖର କଥା କଣ ଅଛି ।

ଝରଣା କହିଲା, ମାଲି ପିଲାଟି ଦିନରୁ ତୋ ସାଙ୍ଗରେ ବଢ଼ି ଆସିଲି । ତୋ ମନକଥା ମୁଁ ଜାଣି ଜାଣି ତୋ ସାଙ୍ଗରେ କେତେ ଖେଳ ଖେଳଚ । ନୂଆବୋଉ ନୂଆବୋଉ କେତେ ଡାକଚ, କେତେ ଚିଡ଼ାଇଚ । ଜାଣୁନୁଲେ ମୋର ଏଇ ଡାକ ପଛରେ କେତେ ସ୍ନେହ, ଆନ୍ତରିକତା ଥାଏ ! ସତେ ମାଲି, ସେ ସବୁ ଗେଲପରିହାସ ସବୁ କ'ଣ ମିଛ ! ମୋର ବହୁ ଦିନର କଳ୍ପିତ ଆଶା ଇମିତି କ'ଣ ବୁଦ୍ ବୁଦ୍ ପରି ମିଳାଇଯିବ—ହା ହୁତାଶର ଦରିଆରେ । କହୁ କହୁ ଝରଣାର ଆଖିରୁ ଲୁହ ଝରି ପଡ଼ିଲା ।

କହିଲି, ଝରଣା ମୋର କାନ୍ଦିବାର କଥା, ମୁଁ କାନ୍ଦୁନାହିଁ । ହୃଦୟକୁ ପାଷାଣ ପରି ଟାଣ କରି ଦେଇଚି । ଆଉ ତୁ କାନ୍ଦୁଚୁ । ତୋର କଣ ହେଇଚି ଲୋ । ଯୁଆଡ଼ୁ ହେଲେ ତୁ ନୂଆବୋଉ ପାଇବୁ—କିନ୍ତୁ ମୁଁ ! ମୁଁ କଣ ଆଉ ଦେବଖୁଇଙ୍କୁ ପାଇବି ? କହୁ କହୁ ମୋର ହୃଦୟ ପଞ୍ଜରରେ ଭାରି ହୋଇ ଉଠିଲା । ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ । ଆଖିରୁ ଧାର ଧାର ହୋଇ ଲୁହ ଛୁଟିଲା । ଝରଣା ମୋତେ କୋଳକୁ ଟାଣି ନେଇ କହିଲା, ମାଲି କାହିଁକି କାନ୍ଦୁଚୁ । ଜୀବନରେ ଦୁଃଖ କଷ୍ଟ ଝଡ଼ ବତାସ କେତେ ବହିଯିବ । ଏ ତ ସାମାନ୍ୟ । ନିଜକୁ ତା ଭିତରୁ ବଞ୍ଚାଇ ପାରିଲେ ସିନା ଜୀବବା ଭଉଣୀ ସେ ମୋ ଆଖିରୁ ଲୁହ ପୋଛିବାକୁ ଲାଗିଲା ।

କହିଲି, ଛି, ଝରଣା ଯୋଉ ଲୁହ ଗଡ଼ିପଡୁଚି—ତାକୁ ଗଡ଼ିବାକୁ ଦେ । ପୋଛନା, ସେ ଲୁହ ମୋର ବଡ ଆଶା, ଅସୀମ ଲୋଭର ପ୍ରାୟଶ୍ଚିତ ଲୁହ ଲୋ ଝରଣା—ତାକୁ ପୋଛନା । ଆଉ କହି ପାରିଲି ନାହିଁ । ଝରଣା କୋଳରେ କଇଁ କଇଁ ହୋଇ କାନ୍ଦି ଉଠିଲି । ମୋ ଦୁଃଖ ଦରଦୀ ଭାଷା ତା ବୁକୁରେ ଆଘାତ ଦେଲା—ଝରଣା ବି ପିଲାଙ୍କ ପରି କାନ୍ଦି ଉଠିଲା ।



ଦେବଭାଇ କଟକରୁ ଫେରି ଆସିଲେ । ବିବାହ ସମ୍ବନ୍ଧ ଶୁଣି ତାଙ୍କ ଦେହରୁ ରକ୍ତ ଶୁଖିଗଲା । ବାପାଙ୍କ ଆଗରେ ଭରସି ଦିନେ ଯେ ଭଲ କଥା କହିବାକୁ ସାହସ କରନ୍ତି ନାହିଁ—ଆଜି ସେ ସିଧା ସିଧା ଯାଇ କେତେ ଆପତ୍ତି ଉଠାଇଲେ । ମୁଁ ବର୍ତ୍ତମାନ ବାହା ହେବିନି—ମୋର ମନର ଅବସ୍ଥା ଭଲ ନାହିଁ । କିନ୍ତୁ ବଳି ମଉସା ସେ ଆପତ୍ତି ଶୁଣିଲେ ନାହିଁ । ଝରଣା ଓ ଦେବଭାଇଙ୍କ ସବୁ ଚେଷ୍ଟାକୁ ବିଫଳ କରି ମହାପ୍ରସାଦ ନିର୍ବନ୍ଧ ହୋଇଗଲା ।

ଦେବଭାଇ କଟକରୁ ଫେରିବା ପରେ ଦିନେ ହେଲେ ଆମ ଘରକୁ ଆସି ନାହାନ୍ତି । ବୁଝିଲି ତାଙ୍କର ଆଉ ମୋ କତିରେ ମୁହଁ ଦେଖାଇବାର ସାହସ ନାହିଁ । ଯେଉଁ ଦେବଭାଇ ଦିନକୁ ଦି’ ତିନିଥର ଦେଖିବାକୁ ମୋ କତିକି ଦଉଡ଼ି ଆସୁଥିଲେ—ଆଜି ସେ ଦୀର୍ଘ ପନ୍ଦର ଦିନ ହେବ ଥରୁଟିଏ ବି ଭୁଲରେ ଆମ ଘର ମାଡ଼ି ନାହାନ୍ତି । ଭାବିଲି କେହି କାହାର ନୁହେଁ । ଖାଲି ଏକ ପୁରୁଷ ଜାତିଟା ମନର ଓମୋନା ମେଣ୍ଟାଇବା ପାଇଁ କେତେ ଆଶାର ବାଣୀ ଶୁଣାନ୍ତି—ଶେଷରେ ନିରାଶାର କରୁଣ ଯନ୍ତ୍ରଣାକୁ ଟାଣନ୍ତି । ଝରଣା ବି ଆଉ ଆସୁନାହିଁ । କାହିଁକି ବା ଆଉ ଆସିବ ! ସେ ତାର ନୂଆ ଭାଉଜ ପାଇବ । ସୁଖରେ ହସ ଖୁସିରେ ଅସରନ୍ତି କଥା ବାଇଜରେ ଦିନ କାଟିବ ।

ଏ କେତେଦିନ ହେଲା ଭାବି ଭାବି ଦିନଗୁଡ଼ା ମୋର ସରୁ ନଥାଏ । ବୋଉ ପଚାରେ, କିଲୋ ମାଲି କଣ ହେଇଚି—ମୁହଁଟା କାହିଁକି ଶୁଖେଇଚୁ ? ବୋଉ କଥାରେ କିଛି ଉତ୍ତର ନ ଦେଇ ଅନ୍ୟଆଡ଼େ ଚାଲିଯାଏ । ବୋଉ ଖାଲି ମୋର ଗତିପଥକୁ ସନ୍ଦେହ-ପୂର୍ଣ୍ଣ ଆଖିରେ ଚାହିଁ ରହେ—କଥା କଣ କିଛି ବୁଝି ପାରେନା ।

ସେଦିନ ଗୁରୁବାର ସଞ୍ଜ ବେଳ । ପୃଥିବୀ ଉପରେ ସୁରୁଜ ପଣତ ଶେଷ ପାରି ଗୋଧୂଳି ହସୁଥାଏ । ଆଉ ଟିକଏ ପରେ ସଞ୍ଜ ଆସିବ—ତା ସଙ୍ଗେ ସଙ୍ଗେ ଦିଗହଜା ଅସରନ୍ତି ବହଳ ଅନ୍ଧାର ମାଡ଼ି ଆସିବ । ଘର ଦୁଆର ଦୁନିଆ ହଜିଯିବ—ଚାରିଆଡ଼େ ଅନ୍ଧାର ଖାଲି ଅନ୍ଧାର । ଏଇ ଅନ୍ଧାର ପାଚେରୀଘେରା ଭିଆସରେ ମଣିଷ କେଡ଼େ ସୁଖରେ ଶୋଇ ପଡ଼ିବ । ତା'ପରେ ସବୁ ଜଞ୍ଜାଳରୁ ଛୁଟି । ଘରେ ଏକଲା ବସି ବସି ଭାବୁଥିଲି, ଇମିତି ମୋ ଜୀବନର ଗୋଟାଏ ଅସରନ୍ତି ଅନ୍ଧାର ଆସନ୍ତା—ମୁଁ ତାରି ଭିତରେ ନିଜକୁ ହଜାଇ ଦିଅନ୍ତି । ଦୁନିଆରେ ବଞ୍ଚି ରହିବାର ମୋହ—ଭଲ ପାଇବାର ଆଶା —ଆଉ ଏଇ ନିଘୁଞ୍ଚିଆ ଦି'ପହରର ସବୁ ଭାବନାରୁ ଛୁଟି ମିଳିଯାନ୍ତା ।

ହଠାତ୍ ଅଦିନିଆ ଝଡ଼ ପରି ଘର ଭିତରକୁ ପଶି ଆସିଲେ ଦେବଭାଇ; ଭାବନାର ଜାଲଲା ଗୀପଟା ମୋର ଧପ୍ କରି ଲିଭିଗଲା । ତାଙ୍କୁ ଦେଖି ମୋର ସାରା ଶରୀର ରାଗରେ ଜଳି ଉଠିଲା । ରୁକ୍ଷ ସ୍ୱରରେ କହିଲି, ଆଉ କାହିଁକି ଦେବଭାଇ, ପୁଣି କୋଉ ଅଭିଳାଷରେ ପ୍ରଲୋଭନ ଦେଖାଇ ପାଖକୁ ଡାକୁଥିଲ । ମନର କ୍ଷଣିକ ବାସନା ମେଣ୍ଟିଗଲା ପରେ ପୁଣି ଆଉ ଜଣଙ୍କୁ ପାଇବା ପାଇଁ ଆଜି ତମେ ଅନ୍ୟ ବାଟରେ ଚାଲିଲ, ମୋ ଜୀବନରେ ସାରା ଜୀବନ ପାଇଁ ଅଶାନ୍ତିର ଝଡ଼ ଉଠାଇ । ତେବେ ବି ମନ ଶାନ୍ତ ହେଲା ନାହିଁ ! ପୁଣି ତମେ ଦଉଡ଼ି ଆସିଚ ଏଇ ନିବୋଲା ଦି' ପହରରେ —କଥାର ପୀୟୂଷ ତଳେ ଜୀବନରେ ଗରଳ ଭରିବାକୁ ! ମୋ କଥା ଶୁଣି ତାଙ୍କ ଆଖିରୁ ଲୁହ ଝରି ପଡ଼ିଲା । କହିଲେ, ମାଳି ଏତେ ଦିନ ମୋର ସ୍ନେହ ଭିତରେ ବୁଡ଼ି ରହି ବି ମୋ ମନକଥା ଆଜଯାଏ ତୁ ବୁଝିପାରିଲୁ ନାହିଁ ? ମନେ ରଖିଥା ମାଳି, ଯେଉଁଦିନ ତୁ ମୋ ମନକଥା ବୁଝି ପାରିବୁ—ସେଇଦିନ ପୁଣି ମୁଁ ତୋ କତିକି ଫେରି ଆସିବି, ଯାଉଚି ।

ଆଖିରୁ ଲୁହ ପୋଛି ସେ ଚାଲିଗଲେ । ତାଙ୍କ କଥାର ମାନେ କିଛି ବୁଝି ପାରିଲି ନାହିଁ । ସେ ଚାଲିଗଲା ପରେ କେଜାଣି କାହିଁକି ଅଧୀର ହୋଇ ପଡ଼ିଲି । ଆଖିରୁ ଲୁହ ଛୁଟିଲା । ନିଜକୁ ସଂଯତ କରି ନପାରି ତକିଆ ଉପରେ ମୁହଁମାଡ଼ି ବହେ କାନ୍ଦିଲି ।

ତା' ଆରଦିନ ସକାଳ ସୂରୁଯର ତେରଛା କିରଣଟା ଆମ ଘର ମଥାନ ଆର ପଟରେ ପଡ଼ିଲାଣି । କଦଳୀ ବାହୁଙ୍ଗା ଉପରେ ବସି ଚଢ଼େଇଟା ଚେଁ ଚେଁ ହେଉଚି । ଦୂର ଧାନବିଲ ଆଡ଼ୁ ବହି ଆସୁଥାଏ ଶୀତଳ ପବନଟା ।

ବୋଉ ଆସି କହିଲା, ମାଳି, ଦେବ କାଲି ରାତିରେ ଘର ଛାଡ଼ି କୁଆଡ଼େ ପଳାଇଚି । ତା ବୋଉ, ଝରଣା ଭାରି କାନ୍ଦୁଚନ୍ତି । ବୋଉ କଥା ଶୁଣି ମୋର ସାରା ଶରୀରରେ ବିଜୁଳି ଖେଳିଗଲା । ପଚାରିଲି, କାହିଁକି ବୋଉ ଦେବଭାଇ ପଳାଇଚନ୍ତି ? ବୋଉ

କହିଲି, ବଲି ମଉସା ଯୋଉଠି ତାର ବାହାଘର କରୁଚନ୍ତି—ସେଠି କୁଆଡ଼େ ତାର ମନ ନାହିଁ । ଯେତେ କହିଲେବି ବଲି ମଉସା ନ ଶୁଣିବାରୁ ସେଥିପାଇଁ ଦେବ କାଲି ରାତିରେ ଘୋଷାହୋଇ କୁଆଡ଼େ ପଳାଇଚି । ଏତିକି କହି ବୋଉ ଘରକାମ କରିବାକୁ ଚାଲିଗଲା । ମୁଁ ଯୋଉଠି ଛିଡ଼ା ହୋଇଥିଲି, ସେଇଠି ଖାଲି ବସି ଭାବିଲି । ସତେ କଣ ତେବେ ଦେବଭାଇ ମୋ ପାଇଁ ଘର ଛାଡ଼ି ଚାଲି ଯାଇଚନ୍ତି ! ଧନ ଦଉଲତ, ଘର ଦ୍ୱାର ସବୁ ଛାଡ଼ି ମୋ ପାଇଁ ସେ କଣ ନିଜକୁ ଉତ୍ସର୍ଗ କରି ଦେଇଛନ୍ତି ଦୁଃଖ ଆଉ ହା-ହୁତାଶ ଭିତରେ । ଭାବନାର ଅଥଳ ଦରିଆରେ କିଛି କୂଳକିନାରା ପାଇଲି ନାହିଁ ।

ଘଡ଼ିକ ପରେ ଝରଣା ଆସି ପହଞ୍ଚିଲା । ମୁହଁଟା ତାର ବେଦନାରେ ଭାରି ହୋଇ ପଡ଼ିଚି, ଶ୍ରୀ ନାହିଁ । ସତେ ଯେପରି ଅଦିନିଆ ମେଘ ପରି ଦୁଃଖର ବାଦଲ ଘୋଟି ଢାଙ୍କିଚି—ପୁନେଇଁ ଜହ୍ନପରି ପ୍ରାଣମତାଣିଆ ଚକ୍‌କଣ ମୁହଁଟିକୁ ତାର । ପଚାରିଲି, ଝରଣା, ଦେବଭାଇ ସତେ କଣ ପଳାଇଚନ୍ତି ? ସେ କହିଲା, ଏ ଚିଠି ପଢ଼ି ମାଲା—ସବୁ ଜାଣିବୁ । ଥରି ଥରି ହାତରେ ଝରଣା ଚିଠିଟିକୁ ନେଇ ପଢ଼ି ବସିଲି—

ସୁନା ଭଉଣୀ ଝରଣା,

ଆଜି ତୋର ସ୍ନେହ ବନ୍ଧନଟା କାଟି ମୁଁ ଚାଲିଯାଉଚି ବହୁ ଦୂରକୁ । ତୋ ଉପରେ ଅଭିମାନ କରି ନୁହେଁ—ମୁଁ ମୋର ବଡଲୋକର ଆଭିଜାତ୍ୟ, ଧନ ଦଉଲତର ବୃଥା ଅହମିକା ଉପରେ ପଦାଘାତ କରି । ମୋ ଜୀବନଟା ଯଦି ଆଜି ଦୁଃଖର ବାରୁଦ ନିଆଁରେ ପୋଡ଼ିଯାଏ—ତେବେ ମୋ ମନରେ ଟିକେ ହେଲେ ଶୋଚନା ହେବ ନାହିଁ । ଜାଣେ, ମୁଁ ବଡ଼ଲୋକ କୁଳରେ ଜନ୍ମ ହେଇଚି—ସେଇ ପାପର ପ୍ରାୟଶ୍ଚିତ୍ତ ଫଳ ଇଏ ।

କୁଆଡ଼େ ଯିବି କିଛି ଜାଣେନା, କିନ୍ତୁ ଯୁଆଡେ ଯାଏ—ଏଇ ଦୁନିଆ ଭିତରେ ମୁଁ ରହିବି । ସେଥିପାଇଁ ମନରେ ଦୁଃଖ କରିବୁ ନାହିଁ । ମାଳାକୁ କହିବୁ ସେ ମୋତେ ଭୁଲିଯିବ ନାହିଁ । ମୋ ସ୍ମୃତିରେ ସମାଧି ଦେବ ନାହିଁ । ଭାବିଥିଲି, ମନର ବେଦନା କିଛି କହିଲେ ଜୀବନର ଦୁଃଖର ଭାର ଟିକେ ହାଲୁକା ହୋଇଯିବ । ସେଥିପାଇଁ କାଲି ତା କତିକି ଯାଇଥିଲି । କିନ୍ତୁ ସେ ମୋତେ ଭୁଲ ବୁଝିଲା... ଦୂରକୁ ଠେଲିଦେଲା । ସେ ମୋତେ ଯେତେ ଦୂରକୁ ଠେଲି ଦେଇଚି—ତାଠୁ ଆହୁରି ଦୂରକୁ ମୁଁ ଚାଲି ଯାଉଚି । ନ ହେଲେ ସେ ଭାବିବ ପୁରୁଷ ଜାତିଟା ଏଡ଼େ ସ୍ୱାର୍ଥପର । ସେ ବୁଝୁ ପୁରୁଷ ଜାତିଟା ନାରୀ ପାଇଁ କେତେବଡ଼ ତ୍ୟାଗ କରିପାରେ । କିନ୍ତୁ ସେ ମୋତେ ଯଦି ଭୁଲିଯାଏ ମୋ ମନରେ ଟିକେ ହେଲେ ଦୁଃଖ ହେବ

ନାହିଁ । କାରଣ ମୁଁ ଜାଣେ ନାରୀ ସହଜରେ ପୁରୁଷକୁ ଭୁଲିପାରେ । ଆଜି ସେ ଯାହାକୁ ଭଲ ପାଉଥାଏ, କାଲି ସେଇ ନାରୀ ଆଉ ଜଣକୁ ନେଇ ସୁନାସଂସାର ଗଢ଼େ । ଜୀବନ ମଝିରେ ଯଦି ଅକସ୍ମାତ ଥରେ ଅତୀତ ସାଙ୍ଗରେ ଭେଟହୁଏ—ତେବେ ସେ ଭୁଲରେ ଥରେ ପଚାରେନା ।

ଛାଡ଼ ସେ ସବୁ କଥା । ତୋ ବାହାଘର ଆଉ ଦେଖି ପାରିବି ନାହିଁ । ବାପା, ବୋଉ, ସୁରଭାଇ ଅଛନ୍ତି—ସେ ତୋର ନିଶ୍ଚୟ ସୁଖ ଦେଖିବେ; ଉପଯୁକ୍ତ ଲୋକ ହାତରେ ତୋତେ ଟେକି ଦେବେ । ମୁଁ ଗୋଟାଏ ଅଲୋଡ଼ା ଅଖୋଜା ଟା—ତୋ ପାଇଁ ବା କଣ କରିଥାନ୍ତି ! ବିଦାୟ ବେଳରେ ଦେଇଥାନ୍ତି ଖାଲି ଟିକେ ଲୁହ—ଦୂରରେ ଥିଲେ ବି ସେଇ ଲୁହ ଟିକକ ମୁଁ ଊଣା କରିବି ନାହିଁ ଝରଣା ! ଭୁଲି ଯିବୁ ନାହିଁ । ଗରିବ ଭାଇଟା ତୋର ଆଉ ବା କଣ ଦିଅନ୍ତା !

ମୁଁ ଫେରିବି—କନ୍ତୁ ଟିକେ ଡେରିରେ । ସେତେବେଳକୁ ତୋର ବାହାଘର ସରିଥିବ । ସେତେବେଳକୁ ବାପା ସୁରଭାଇଙ୍କର ବଡଲୋକର ଆଭିଜାତ୍ୟ, ଅହମିକା, ଦମ୍ଭ ଲୋଭ ସବୁ ଆମ ସେଇ ଭଙ୍ଗା ପାଚେରୀ ପରି ଭାଙ୍ଗି ଯାଇଥିବ । ସେତ ପୁଣି ଦିନେ ଗର୍ବରେ ମୁଣ୍ଡ ଟେକିଥିଲା ମାଟିର ବୁକୁ ଉପରେ; କନ୍ତୁ ମାଟି ସେମିତି ପଡ଼ିଛି ଶାନ୍ତିର ଗୀତ ଗାଇ । ପାଚେରୀର ଉଚ୍ଚମଥା କାଳସ୍ରୋତରେ ଲୋଟି ପଡ଼ିଛି ମାଟି ଉପରେ—ମାଟି କନ୍ତୁ ନଇଁ ନାହିଁ । ସିମିତି ସମୟର ଉଜାଣି ଢେଉରେ ସବୁ ବଢ଼େଇ ଲିଭିଯାଏଲେ ଝରଣା—ତେବେ ବି ଦୁଃଖ ହୁଏ, ମଣିଷ ତଥାପି ବି ସେଥିରୁ କଛି ଶିଖେ ନାହିଁ ।

ଯାଉଛି । ମୋର ଆଶୀର୍ବାଦ ନେବୁ । ମାଳକୁ ଆଶୀର୍ବାଦ ଦେବୁ । ତାକୁ କହିବୁ ସେ ମୋତେ ଅପେକ୍ଷା କରିବ । ଧୈର୍ଯ୍ୟ ହରାଇବ ନାହିଁ । ମୁଁ ପୁଣି ଦିନେ ନା ଦିନେ ଫେରି ଆସିବି । ବିଶ୍ୱାସ ରଖିବ ମୋ କଥାକୁ । ବିଦାୟ ଭଉଣୀ—

ତୋର

ଦେବଭାଇ

ଦେବଭାଇଙ୍କ ଚିଠିଟା ପଢ଼ି ଆଖିରୁ ମୋର ଧାର ଧାର ହୋଇ ଲୁହ ଛୁଟିଲା । କହିଲି, ଝରଣା କାଲି ଦେବଭାଇଙ୍କି ମୁଁ ଅପମାନ ଦେଇ ତଡ଼ି ଦେଇଛି । ମୁଁ ନିର୍ବୋଧ—ତାଙ୍କର ମହତ ହୃଦୟକୁ ଚିହ୍ନି ପାରିଲି ନାହିଁ । ସେ ଚାଲିଗଲେ । ମୁଁ ଏଣିକି ହତଭାଗିନୀଲେ ଝରଣା, ଭଲ ଭଲ ଦିନ ମୋର ସରିବ ନାହିଁ ।

ମୋତେ ବୁଝାଇବା ପାଇଁ ସେ ଭାଷା ଖୋଜି ପାଉ ନଥିଲା । ଆଖିରୁ ତାର ଦୁଇଟି ଲୁହ ଧାର ଗଡ଼ି ପଡ଼ୁଥିଲା ଗାଲ ଉପରକୁ—ସତେ ଯେପରି ହୃଦୟରେ ତାର ଶୀତଳ ପରଶ ବୁଲାଇ ଦେବାକୁ ।



ଦେବଭାଇ କୁଆଡ଼େ ଚାଲିଗଲେ । ବଳି ମଉସା ଯେତେ ଲୋକ ପଠାଇଲେ ଖୋଜି ଖୋଜି କେହି ପାଇଲେ ନାହିଁ । ଗାଁରେ ହାଟ ବସିଲା—ଦେବ ମାଲକୁ ବାହାହେବ ବୋଲି କୁଆଡ଼େ ପଳେଇଚି । ବଳେ ଆସିବ—କେତେଦିନ କୁଆଡ଼େ ରହିବ । ବୋଉ ସବୁ ଶୁଣି ବାପାଙ୍କୁ କହିଲା । ବାପା କହିଲେ, ଲୋକଙ୍କ କଥାରେ କାନ ଦେଉଚ କାହିଁକି ? ସେ କହନ୍ତୁ—କେତେଦିନ କହିବେ ?

ମୋତେ କିନ୍ତୁ ଗାଁରେ ସମସ୍ତଙ୍କ ଆଗରେ ମୁହଁ ଦେଖାଇବାକୁ କାହିଁକି ଭାରି ଲାଜ ମାଡ଼େ—କିଛି ଭାବି ପାରେନା । ମୁଁ ତ କିଛି ଅପରାଧ କରିନାହିଁ । ବୃଥାରେ ଲୋକ-ଗୁଡ଼ାଙ୍କର ଏତେ ଟାହି ଟାପରା କାହିଁକି ? ବସି ବସି କେତେ ଭାବେ—ଖାଲି ଭାବେ ।

ଝରଣା ଆଉ ଆମ ଘରଆଡ଼େ ଆସେନା । କାହିଁକି ସେ ଆସିବ । ସୁଖ ସୁଆଦତ ପୋଡ଼ି ଯାଇଚି । ଆଉ କାହିଁକି ସେ ଚନ୍ଦନ ବୋଳିବାକୁ ଧାଇଁ ଆସିବ ! ନୂଆବୋଉ ନୂଆବୋଉ କେତେ ଚିଡ଼ାଇବ । ମୁଁ ଖାଲି ରାଗୁଥିବ—କେତେ ଗାଳି ଦେଲେ ବି ସେ ଜମା ଛଳ କରୁ ନ ଥିବ । ଖାଲି ହସୁଥିବ । ସବୁ ଯାଇଚି । ଅତୀତର ସୁଖ ସ୍ମୃତି ଦିନଗୁଡ଼ା ଆଜିର ଦୁଃଖଭରା ବହଳ ଅନ୍ଧାର ଭିତରେ ମୁହଁ ଲୁଚେଇଚି । ନିଥର ଆକାଶରେ ଚଢ଼େଇଟା ଉଦାସ ଗଢରେ କରୁଣ ରେଖାଟିଏ ଟାଣି ଦେଇଗଲା । ଇମିତି ଦେବଭାଇ ଚାଲିଯାଇଚନ୍ତି ସେଇ ଦିଗ ଆରପଟକୁ—ମୋ ଜୀବନର ଗୋଟାଏ ଅସୀମ ବିଫଳତା ଭିତରେ କରୁଣ ରାଗିଣୀର ଲହରି ତୋଳି । କେତେ ଭାବେ । ଦିନଯାଏ—ତଥାପି ମୋର ଭାବନାରୁ ଛୁଟି ମିଳେନା ।

ରାତି ଆସେ—ଭାବେ ଟିକେ ଶାନ୍ତିରେ ଶୋଇ ପଡ଼ିବି ବହଳ ଶେଯ ଉପରେ । କିନ୍ତୁ ନିଦରାଣୀଙ୍କର ଏଇ ସପନ ରଜାପୁଅ ଆସି ଆଖି ଆଗରେ ମୋର ସ୍ମୃତିର ଦୀପାଳି ଜାଳିଦିଏ । ନିଦ ହୁଏନା—ଉଜାଗରରେ ରାତି ପାହେ ।

ଭାବୁ ଭାବୁ କେବେ କୋଉଦିନ ଚଇତି ମାସ ଆସି ହଜିଗଲା ସମୟର ଗହୀର ଦରିଆ ବୁକୁରେ···

ଦେବଭାଇଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ଦେବଭାଇ ଗଲା ଦିନଠାରୁ ବଳି ମଉସାଙ୍କର ଆମ ଘରଉପରେ ଭାରି ରାଗ । ବିନା ଦୋଷରେ ସେ ପ୍ରତିଶୋଧ ନେବେ ବୋଲି ଓର ଉଣ୍ଡୁଚନ୍ତି । ଝରଣାସାଙ୍ଗରେ ଦିନେ ଦିନେ ଗାଧୁଆ ତୁଠରେ ଦେଖାହୁଏ । ସେଇ ପଥର ପାହାଚ, ତାର ଉପରେ ବସି ଘଡ଼ିଏ ସୁଖ ଦୁଃଖ ହେଉ । ତା'ପରେ ଗାଧୋଇ ସାରି ସେ ଚାଲିଯାଏ—ତା ବାଟରେ । ମୁଁ ଫେରିଆସେ ଆମ ଘରକୁ ଖାଲି ବେଦନାବିଧୁର ପରାଣ ମନଟା ନେଇ ।

ସେଦିନ ଚାରିଟାବେଳେ ବାପା ସ୍କୁଲରୁ ଫେରି ଖଣ୍ଡେ ଚିଠି ମୋ ହାତକୁ ବଢ଼ାଇ ଦେଇ ଚାଲିଗଲେ । ଆଗ୍ରହରେ ଖୋଲି ପଢ଼ିଲି ।

ମାଳି,

ଅନେକଦିନ ହେବ ଚିଠି ଖଣ୍ଡେ ଦେବି ଦେବି ବୋଲି ଭାବୁଚି । କିନ୍ତୁ କାଗଜ କଲମ ନେଇ ଲେଖିଲା ବେଳକୁ ମନରେ ପ୍ରଶ୍ନ ଉଠୁଚି କଣ ଲେଖିବି ? ଯାହା ଲେଖିବାର ଥିଲା, ଯାହା କହିବାର ଥିଲା—ସବୁତ ଆପଣାମନକୁ ତମ ମନରେ ଲେଖି ହୋଇ ଯାଇଥିବ । ମୁଁ ଆଉ ଲେଖିବି କଣ ? ବାର ବାର ଏଇ ପ୍ରଶ୍ନ ମୋ ମନକୁ ବିଚଳିତ କରି ଦେଉଚି । କିଛି ଲେଖି ପାରୁନି । ଦୁଃଖରେ ବତିଟାକୁ ଲିଭାଇ ଦେଇ ଶୋଇ ଶୋଇ ଭାବିଚି ତମର ସ୍ନେହ ଶରଧାର ଚରମ ବିଫଳତା କଥା । କେତେବେଳେ ଆଖିରେ ଲୁହ ଆସି ତମ ଜୀବନର ସ୍ମୃତିକୁ ମୋ ଜୀବନ ସହିତ ମିଶାଇ ଦେଲାଣି, ଜାଣି ପାରେ ନାହିଁ ।

ସତେ ମାଳି, ତମ ଗାଁକୁ ଫେରି ଯିବାକୁ ମୋର ଆଉ ମୋଟେ ମନ ନାହିଁ । ଖାଲି ଭାବୁଚି ତମକୁ କମିତି ମୁହଁ ଦେଖାଇବି । ତମେ କଣ ମୋର ଅପରାଧ ପାଇଁ କ୍ଷମା କରିବ ! ଦେବ କଣ କ୍ଷମା ଦେବାକୁ ପୁଣି ଫେରି ଆସିବ ! ଇମିତି ଭାବି ଭାବି ଦିନ ଯାଉଚି । ଆଜି ତମର ଗୋଟିଏ ଦିନର ସ୍ମୃତି ମୋତେ ଏତେ ଅଧୀର କଲା ଯେ, ଚିଠି ଖଣ୍ଡିକ ନ ଲେଖି ରହି ପାରିଲି ନାହିଁ । ଜାଣେନା ଏ ଚିଠି ଖଣ୍ଡିକ ପଢ଼ି ନୂଆବୋଉଙ୍କୁ ଆଜି ତମେ କୋଉ ଆଖିରେ ଦେଖିବ । ଇତି ।

ତମର

ନୂଆବୋଉ

ଚଠିଟା ପଢ଼ି ସେଦିନ ସାରା ରାତିଟା ଝୁରି ଝୁରି ଚାହିଁ ଦେଖିଲି ସକାଳର କଅଁଳ ଆଲୁଅ କେତେବେଳେ ଆସି ଧରାରେ ଚେତନାଦୀପ ଜାଳି ଦେଲାଣି ।

ଏଇମାସ ବାଇଶିରେ ଝରଣାର ବାହାଘର । ଦି'ଦିନ ହେଲା ନୂଆବୋଉ ଆସିଚନ୍ତି । ଭାରି ମନ ହେଉଥାଏ ଥରେ ତାଙ୍କୁ ଦେଖି ମନର ସବୁ ପରାଣଭରା କଥାଗୁଡ଼ା କହି-ଦିବାକୁ । କିନ୍ତୁ କାହିଁ, ନୂଆବୋଉ ତ ଆଜି କାହିଁକି ଟିକିଏ ଡାକୁ ନାହାନ୍ତି ! ଝରଣା ତ ଆଉ ଦଉଡ଼ି ଦଉଡ଼ି ଆସି ତାଙ୍କ କତକୁ ଟାଣି ନେଉ ନାହିଁ ' କାହିଁକି ବା ଆସିବେ ! ଦେବଭାଇ ଯାଇଚନ୍ତି । ତା ସଙ୍ଗେ ସଙ୍ଗେ ଝରଣା ନୂଆବୋଉ ମୋତେ ପର କରି ଦେଇଚନ୍ତି—ମନରୁ ଭୁଲି ଯାଇଚନ୍ତି ।

ରାତି ପାହିଲେ ଝରଣାର ମଙ୍ଗନ—ପରଦିନ ବାହା । ସନ୍ଧ୍ୟାତାର ଗଡ଼ିଗଲାଣି । ଦ୍ୱିତୀୟାର ବଙ୍କାଜହ୍ନର ସରୁ ହସ ଲଭି ଲଭି ଆସୁଥାଏ । ଯେତେ ଯେପରି ସରଗ ରାଇଜ ଝିଅ ଏଇ ଚନ୍ଦ୍ର ସୁକୁମାରୀ, ଅନ୍ଧାର ରଜାକୁ ଦେଖି କହୁଦ ସବାରୀରେ ବସି ଲୁଚି ଯାଉଥାଏ । ସେଇଥିପାଇଁ ବେଦନାରେ ମଳିନ ଦିଶୁଥାଏ ତାର କୁଳୁକୁଳିଆ ଟିକି ମୁହଁଟି । ଚନ୍ଦ୍ର ସୁକୁମାରୀର ଅସୁମାରି ତାରା ସଖୀଗଣ ସଜଳ ନୟନରେ ଚାହିଁ ରହିଥାନ୍ତି—ତାର ଆଡ଼କୁ । ଅନ୍ଧାର ରଜାକୁ ଦେଖି ସରଗ ମରତରେ କରୁଣ ମୂର୍ଚ୍ଛନା ଖେଳି ବୁଲୁଥାଏ ।

ଝରଣାକୁ ଦେଖି ଚମକି ପଡ଼ିଲି । କହିଲି, ଏତେ ଦିନ ପରେ ମାଳ କଥା ମନେ ପଡ଼ିଲା କିଲୋ ଝରଣା ! ଝରଣା ମୋ ହାତଧରି କହିଲା, ମାଳ ତୋ କତକୁ ଆସିବାକୁ କ'ଣ ମୋର ଇଚ୍ଛା ନାହିଁ ? କିନ୍ତୁ ଆସିଲାବେଳେ ତୋର ଏଇ ମଳିନ ମୁହଁଟାକୁ ଦେଖିଲେ ମୋତେ ଭାରି କାନ୍ଦ ମାଡ଼େ—ଦେବଭାଇଙ୍କ କଥା ମନେ ପଡ଼େ । ସେଥି-ପାଇଁ ଜାଣି ଜାଣି ଆସେନା । କହିଲି, ଆଜି କାହିଁକି ଆସିଚୁ ? ବାହାହେଇ ଯାଉଚୁ ବୋଲି ଟିକିଏ ସ୍ନେହମିଶା ମିଠାକଥା କହି ମମତା ଲଗେଇ ଦେଇ ଯିବାକୁ ନାଁ ? ହଁ, ଦେବଭାଇ ଗଲେ—ତୁ ବି ଯିବୁ—ଯା । ମୁଁ କିନ୍ତୁ ଏଇଠି ଅଲୋଡ଼ା ଦରବ ପରି ପଡ଼ି ରହିବି ଲୋ ଝରଣା—ମୋ ଜୀବନଟା ନଦୀଘର ତଳିଲ ବାଲି ପରି ସବୁବେଳେ ହତାଶାର ବେଦନାରେ ପୋଡ଼ୁଥିବ—କେବେ ଟିକିଏ ଶାନ୍ତି ଆସିବ ନାହିଁ । ଆଖିରୁ ଲୁହ ଝରି ପଡ଼ିଲା । ଝରଣା କହିଲା, ମାଳ କାନ୍ଦୁଚୁ—କାନ୍ଦ । ଆଜି ଦିନକ ତୋର ବେଦନାଭରା ମୁହଁକୁ ଦେଖି ମୁଁ ବି ଟିକିଏ ଦେବଭାଇଙ୍କ ସ୍ମୃତିଟାକୁ ଜୀବନ ଭରି ପାଥେୟ କରିବାକୁ ତୋରି ସାଥିରେ ମନ ଇଚ୍ଛା କାନ୍ଦି ନିଏ । ମୋର ବାହାଘର, କାହିଁ କେତେ ଦୂରରେ ଆଜି ଦେବଭାଇ କାନ୍ଦୁଥିବେ—ତୁ କାନ୍ଦୁଚୁ । ଆଉ ମୋର କାନ୍ଦିବାର କଥା, କାନ୍ଦିବ ନାହିଁ ! କହୁ କହୁ କାନ୍ଦି ପକାଇଲା । ବୋଉ ଆସିଲା । ଆମ

ବାହିଁଙ୍କ କାନ୍ଦଣା ଦେଖି ସେ ବି ବହେ କାନ୍ଦିଲା । ଝରଣା ବୋଉ କଣ୍ଠରେ କାନ୍ଦି କାନ୍ଦି କହିଲା, ପରଝିଅ ବୋଲି ଭୁଲି ଯିବନି ମାଉସୀ—ମନେ ରଖିଥିବ । କେତେ କାନ୍ଦି କାନ୍ଦି ଝରଣା ସେଦିନ ବିଦାୟ ନେଲା । କହିଗଲା, ଭୁଲି ଯିବୁନି ଲୋ ମାଲି ! ଚିଠି ଖଣ୍ଡେ ଖଣ୍ଡେ ଦେବୁ ।

ଦେବଭାଇ ଆଜି କାହିଁ କେତେ ଦୂରରେ···ଝରଣା ଯାଇଁ ଶାଶୁଘରେ । କାଲି ଯାହାଙ୍କ ପାଖରେ ବସି ଦାନଗୁଡ଼ା କଟି ଯାଉଥିଲା—ଆଜି ସେମାନଙ୍କୁ ସପନରେ ଖାଲି ଟିକେ ଦେଖିବାକୁ ମିଳୁଛି ମାତ୍ର ।

ସେଦିନ ବାପା ଖାଇ ବସିଲାବେଳେ ବୋଉ ପଚାରିଲା, ମାଲି ବାହାଘର କ'ଣ କରିବ ନାହିଁ, କାହିଁ କେଉଁଠି ତ ତା ପାଇଁ ଟିକେ ନଜର ପକାଉ ନାହଁ ? ଝିଅର ବୟସ କ'ଣ ହେଉ ନାହିଁ ନା କ'ଣ ? ବାପା କହିଲେ, କଣ କରିବି—ଆଜିକି ମାସେ ହେଲାଣି ଅନେକ ଜାଗାରେ ସନ୍ଧାନ ନେଲିଣି କେଉଁଠି କୁଛୁ ନାହିଁ । ଗୋପାଳ ଭାଇ କାଲି ଗୋଟାଏ ଜାଗା କଥା କହୁଥିଲେ । ପାଞ୍ଚଟି କୁଆଡ଼େ ବି. ଏ. ପାଶ୍ କରି କଟକରେ ଚାକିରି କରୁଛି । ବେଶି ବଡ଼ଲୋକ ନୁହନ୍ତି—ଆମରି ପରି ମଧ୍ୟବିତ୍ତ ଘର । ଭାବୁଛି ଆର ରବିବାରେ ଗୋପାଳ ଭାଇଙ୍କି ସାଙ୍ଗରେ ନେଇ ସେଠିକି ଯିବି, ଯଦି ସେମାନେ ରାଜି ହୁଅନ୍ତି, ହୁଏତ ସେଇଠି ମାଲିର ବାହାଘର ଏଇ ଆଷାଢ଼ରେ କରି-ଦେବି । ବୋଉ କହିଲା, ଯେତେ ଚଞ୍ଚଳ ପାରି ମାଲିର ବାହାଘର କରିଦିଅ—ଇମିତି ହେଲା ହେଲାରେ ସମୟ ବି ଗଡ଼ି ଯାଉଛି—ତା ସଙ୍ଗେ ସଙ୍ଗେ ଝିଅର ବୟସ ବି ଗଡ଼ି ଯାଉଛି । ବାପା କହିଲେ, ହଁ ମାଲିବୋଉ ! ମାଲିକୁ ଗୋଟିଏ ଯୋଗ୍ୟପାତ୍ର ହାତରେ ଅର୍ପଣ କରିଦେଲେ ମୋର ଛୁଟି । ବାପା, ବୋଉଙ୍କର ଏଇ କଥାବାର୍ତ୍ତା ମୁଁ ଏପାଖ ଘରେ ଥାଇ ସବୁ ଶୁଣିଲି । ଭାବିଲି, ତେବେ କ'ଣ ଅନ୍ୟ ଜଣଙ୍କୁ ପତିରୂପେ ବରଣ କରିବାକୁ ହେବ ! ଦେବଭାଇଙ୍କି ଭୁଲି ଯିବାକୁ ହେବ ! କିନ୍ତୁ ଦେବଭାଇ କହି ଯାଇଛନ୍ତି, ମାଲି ଅପେକ୍ଷା କରିବୁ—ଧୈର୍ଯ୍ୟ ହରାଇବୁ ନାହିଁ । ମୁଁ ନିଶ୍ଚୟ ଫେରିବି । ମୁଁ ବାହାହେଇ ଗଲା ପରେ ସେ ଯଦି ଫେରି ଆସନ୍ତି—ତେବେ ସେ କଣ ଭାବିବେ । ଭାବିବେ, ମାଲି ମୋତେ ଭୁଲି ଯାଇଛି, ମୋର ସ୍ମୃତିରେ ସମାଧିଦେଇ ସେ ସୁଖରେ ସଂସାର ଗଢ଼ିଛି । ସେ ମୋପାଇଁ ଘର ଦୁଆର ଧନଦଉଲତ ସବୁ ଛାଡ଼ିଗଲେ ନିଜ ଜୀବନକୁ ହତଛଡ଼ା କରି—କିନ୍ତୁ ମୁଁ ? ମୁଁ ତାଙ୍କୁ ଭୁଲି ଅନ୍ୟର ସ୍ତ୍ରୀ ହେବି କିପରି ? ଅନ୍ୟକୁ ଭଲ ପାଇବି କେଉଁ ମନରେ ? ଭାବି ଭାବି କିଛି ସ୍ଥିର କରି ପାରିଲି ନାହିଁ ।

ସେ ଦିନ ଖରାବେଳ । ଡାକ ପିଅନ ଖଣ୍ଡେ ଚିଠି ଦେଇଗଲା । ଭାବିଲି ଦେବଭାଇ ଦେଇଛନ୍ତି କି ଆଉ ! ଖୋଲି ଦେଖିଲାବେଳକୁ ଝରଣାର ଚିଠି ।

ଅତି ଆଦରର ଭଉଣୀ ମାଳ,

ବାହା ହେବା ପରେ ମୋର ଚିଠି ଖଣ୍ଡିକ ପାଇ ଚମକ ଉଠିବୁ ନାହିଁ । କାହିଁକ ନା ମୁଁ ସୁଖରେ ସଂସାର କରିବାର ଯୋଉ ସ୍ୱପ୍ନ ଦେଖିଥିଲି ସେ ସ୍ୱପ୍ନ ମୋର ଖାଲି ଗ୍ରାଇ-ପରି ମିଳାଇ ଯାଇଚି । ଆଶା ନେଇ ଆସିଥିଲି—ଯୋଉ ଆଶା ନେଇ ମଣିଷ ବଞ୍ଚିବାର, ଶାନ୍ତିରେ ଘର କରିବାର ଛବି ଦେଖେ । ସେଇ ଆଶାଟିକ ଆଜ ମୋ ଜୀବନର ବହୁତ ଦୂରରେ ଦିଗ୍‌ବଳୟର ଆଢୁଆଳ ସେପଟ ଧୂସର ମରୁଭୂମିରେ ହଜି ଯାଇଚି । ମଣିଷ କଣ ଆଶା କରେ—କିନ୍ତୁ ପାଏ କଣ ? ତୁ ଆଶା କରିଥିଲୁ ଦେବଭାଇଙ୍କୁ—ଦେବଭାଇ ଆଶା କରିଥିଲେ ତୋତେ । କିନ୍ତୁ ଦେବଭାଇ କୁଆଡ଼େ—ତୋର ସୁଖ କହ, ଆନନ୍ଦ କହ, ସେ ଆଜ କୁଆଡ଼େ ! ସବୁ ଯାଇଚି, ଖାଲି ଅଛି ମନର ଅମାପ ଦରଦୀ ବୋଲା ସ୍ମୃତିର ଜାଗରଣୀ ଛନ୍ଦ ଭିତରେ ଦ'ଦଣ୍ଡା ବିଫଳ ଜୀବନର କରୁଣ ଝଙ୍କାର ।

ତୋର ପରି ମୁଁ ଗୋଟିଏ ଅଭାଗୀ ଲୋ ମାଳ । ବାହାହେଲି ପରଦିନଠାରୁ ଶାନ୍ତିରେ ଦିନେ ହେଲେ କଟି ନାହିଁ । ସେ ମୋତେ ବାହା ହେଇଚନ୍ତି, ଖାଲି ନାଁକୁ ବାହା ହେଇଛନ୍ତି ସିନା—କିନ୍ତୁ ସବୁକଥା ତାଙ୍କର ବିଧବା ଭାଉଜ କଥିରେ । ମୋଠୁ ସେ ତାଙ୍କୁ ଅଧିକ ଭଲପାଆନ୍ତି । ଦିନେ ଦିନେ ରାତିରେ ମୋ କଥିରୁ ଉଠି ତାଙ୍କର କଥିକି ଚାଲିଯାଆନ୍ତି । ଯେତେ କହିଲେ ଶୁଣନ୍ତି ନାହିଁ । ଦିନେ ତାଙ୍କୁ ପଚାରିଲି, ତମ ମନରେ ଯଦି ଏଇ ବାସନା ଥିଲା—ତେବେ ମୋତେ ବାହାହେଲ କାହିଁକ ? ବିଧବା ଭାଉଜକୁ ନେଇ ତମେ ବି ଘରସଂସାର କରିପାରିଥାନ୍ତ । ସେ ଶୁଣି ହଠାତ୍ ରାଗିଗଲେ, ମୋ ଗାଲରେ ଦୋ କଣ୍ଟି ଚାପୁଡ଼ା ବସାଇ ଦେଲେ । କହିଲେ, ଏଭଳି କଥା କହିବାର ସାହସ କେଉଁଠୁ ପାଇଲୁ । କାନ୍ଦି କାନ୍ଦି ଶାଶୂଙ୍କୁ ଯାଇ କେତେ କହିଲି । ଶାଶୂ ସବୁ ଶୁଣିଲେ; କିନ୍ତୁ ଶାଶୂ, ଶ୍ୱଶୁର ପୁଅକୁ ଭାରି ଡରନ୍ତି—ସେ କିଛି କହିଲେ ନାହିଁ । ସେହି ଦିନଠୁ ସେ ମୋ ଗ୍ରାଇ ମାଡ଼ନ୍ତି ନାହିଁ । ସେ ଅଲଗା ମୁଁ ଅଲଗା । ବାପା ମୋତେ ଗୋଟାଏ ବଡ଼ ଘରେ ବିଖ୍ୟାତ ବିକ୍ରମ ରାୟ ବାହାଦୂର ଘରେ ବାହା ଦେଇଥିଲେ ସୁଖରେ ରହିବାକୁ । ବେଶ୍ ସୁଖ ଆଜ ମୁଁ ହାଡ଼େ ହାଡ଼େ ଅନୁଭବ କରୁଚି ଲୋ ଝରଣା ! ଭାବୁଚି, ମରିଗଲେ ସବୁଥିରୁ ଛୁଟି । କିନ୍ତୁ ଦେବଭାଇଙ୍କି ଦେଖିବି ବୋଲି ବଞ୍ଚି ରହିଚି । ସେ ଆସିଲେ ତାଙ୍କୁ ଥରେ ପ୍ରାଣଭିଜଡ଼ା ସବୁକଥା କହିବି—ପ୍ରାଣ ଭରି ଦେଖିବି । ତା'ପରେ ମୋ ପଥ ମୁଁ ବାଛିନେବି । ମଉସା ମାଉସୀଙ୍କୁ ପ୍ରଣାମ ଦେବୁ । କହିବୁ, ଝରଣା ଖୁବ୍ ସୁଖରେ ଅଛି । ଆଜ ଏତିକିରୁ ବିଦାୟ ନେଲି । ଚିଠି ଦେବୁ ।

ତୋର ଝରଣା

ଝରଣାର ଚିଠିଟା ପାଇ ମନଟା ଦୁଃଖରେ ଭରି ହୋଇଉଠିଲା । ଆହା, ସିଏ ଦିନେ ଦୁଃଖ ବୋଲି କ'ଣ ଜାଣି ନ ଥିଲା, ଆଜି ସେ ନିଜ ଅଙ୍ଗେ ଲିଭୋଉଛି—ହାଡ଼େ-ହାଡ଼େ ଅନୁଭବ କରୁଚି । ବିଚିତ୍ର ଏ ଦୁନିଆ—ବିଚିତ୍ର ଏ ଜୀବନର ଗତି

ଯେଉଁଦିନ ଶୁଣିଲି ମୋ ବାହାଘର ବାପା ଗୋପାଳ ଦାଦା ସେଇଠି ଠିକ କରି ଆସିଚନ୍ତି—ସେଦିନ ଦେହରୁ ମୋର ଜୀବନ ଛାଡ଼ିଗଲାପରି ଲାଗିଲା । ଭାବିଲି, ସତେ କ'ଣ ମୁଁ ବାହାହେବି ? ଦେବାଭାଇଙ୍କୁ ଅପେକ୍ଷା କରିବି ନାହିଁ ? ସେ କ'ଣ ସତେ ଆସିବେ ! କାହିଁ ଏତେ ଦିନହେଲା ଭୁଲିରେ ବି ମୋ କଥିକ ଖଣ୍ଡେ ଚିଠି ଦେଲେ ନାହିଁ । ଅତୀତର ସ୍ମୃତିରେ ମନଟା ଖାଲି ଘାରିହେଲା ।

ମାରବାରେ ବସି କେତେ ଆଖି ଲୁହ ଢାଳିଲି । ବାପା, ବୋଉ ମୋର ଶୁଖିଲା ମୁହଁ ଲୁହଭରା ଆଖି ଦେଖି କେତେ ବୁଝାଇଲେ, ମାଲି, ଝିଅ ଜନମ ପାଇ ସମସ୍ତେ ଘର ସଂସାର କରନ୍ତି—ମା'ଟାପରି କାହିଁକି କାନ୍ଦୁଛୁ ? ମୋର ଅନ୍ତରର ଗୋପନ ଭାଷା କେହି ବୁଝିଲେ ନାହିଁ । ଖାଲି ଦେଖିଲେ ଝିଅ କାନ୍ଦୁଚି । କିନ୍ତୁ ଜାଣିଲେ ନାହିଁ ଏହି କାନ୍ଦଣା ତଳେ ଜଡ଼ି ରହିଚି ଜୀବନର କେତେ କରୁଣବୋଳା ଇତିହାସ—କେତେ ମୁଣ୍ଡ ଟେକିଚି ଝିଅ ମନର କଳ୍ପିତ ଆଶା ।

ବାଧ୍ୟହୋଇ ଦେବାଭାଇଙ୍କ ସ୍ମୃତିକୁ ଅଳେଡ଼ା ଦରବି ପରି ଯୋଉଦିନ ଦୂରକୁ ଠେଲି ଦେଲି—ସେଇଦିନ ବିବାହର ମଙ୍ଗଳ ଶଙ୍ଖ ବାଜି ଉଠିଲା । ବେଦୀ ଉପରେ ଅଗ୍ନିକୁ ସାକ୍ଷୀ କରି କୋଉ ଅଦେଖାହାତ ସହିତ ହାତ ମିଳାଇ ହାତଗଣ୍ଠି ପଡ଼ିଲା । ହୁଳହୁଳୀ ମଙ୍ଗଳ ମହୁରୀ ପୁରୋହିତ ମନ୍ତ୍ର ଗାନ ଭିତରେ ମିଳନର ଛନ୍ଦ ବାଜିଉଠିଲା ପ୍ରାଣରେ ମୋର । ମୁଁ କ୍ଷଣକ ପାଇଁ ଭୁଲିଗଲି ଜୀବନର ସବୁ ଅବସାଦ—ଭୁଲିଗଲି ଅତୀତର ପରାଣଭରା ଦୁଃଖର ଆଘାତ ଉପରେ ଆଘାତ ।

ଆଜି ବରବାହୁଡ଼ା । ଦି'ପହରକୁ କାନ୍ଦି କାନ୍ଦି ବାପା ବୋଉଙ୍କଠାରୁ ବିଦାୟ ନେଲି । ନୂଆବୋଉ ଏତେଦିନ ପରେ ମୋତେ ଆସିଥିଲେ ଦେଖିବାକୁ । ତାଙ୍କୁ ଦେଖି ବିକଳ ହୋଇ କାନ୍ଦି ଉଠିଲି । ସେ ମୋତେ ଧରି କେତେ କାନ୍ଦିଲେ । କହିଲେ, ମାଲି ଯା—ଯାହାଙ୍କ ହାତ ଧରିଚୁ—ତାଙ୍କ ସହିତ ତୋର ଏଇ ଅସରନ୍ତି ଦିନଗୁଡ଼ା ସୁଖରେ କଟୁ । ଗାଁରେ ଝିଅ ବୋହୂ ସମସ୍ତଙ୍କଠାରୁ ବିଦାୟ ନେଇ ଯେତେବେଳେ ମୋତେ ସବାରିରେ ବସାଇଲେ ମୁଁ ଭେ ଭେ କାନ୍ଦିଉଠିଲି । ବେହେରା ସବାରି ଉଠାଇ ଧାଇଁଲେ ।

ଅତି ପରିଚିତ ଏଇ ଘର ଦୁଆର, ବାପା, ବୋଉ, ସାଙ୍ଗ ସାଥୀ ସବୁ ଛାଡ଼ି ଆଜି ମୁଁ ଏକଲା । ମନରେ କୋହ ଉଛୁଳି ଉଛୁଳି ଉଠୁଥାଏ । ସବାରି ଫାଙ୍କରୁ ଗାଁର

ସେଇ ଅଶୋକ ଗଛଟା ଢଳିଗଲା । ଏ ପାଖରେ ପୋଖରୀ । ଟିକିଏ ଦୂରରେ ଗାଁର ସେହି ପ୍ରିୟ ଗ୍ରନ୍ଥଶାଳୀ । ଏଇ ଅଶୋକ ଗଛତଳେ ଜୀବନର କେତେ ନିଗ୍ରୁଟିଆ ଦୁ'ପହର ପାହାଚ ଉପରେ ବସିଛି ଦେବଭାଇଙ୍କ ସାଙ୍ଗରେ । ଏଇ ପୋଖରୀ ତୁଠର ପଥର ପାହାଚ ଉପରେ ଝରଣାର ମୋର କେତେ ଅସରନ୍ତି କଥାର ସୁଅ ଛୁଟିଛି—ସେ ସବୁ ଶୁଣିଛି ଖାଲି ସେଇ ପୋଖରୀହୁଡ଼ାର ବାଉଁଶ ବୁଦା ଗହଳି । ଏଇ ଗ୍ରନ୍ଥଶାଳୀ ଜୀବନରେ ପହିଲି ଉଷାର ନୂଆ ଆଲୋକ ପରି ଆମ ମନରେ କେତେ ଚେତନାର ଦୀପ ଜାଳି ଦେଇଛି—ଆଉ ଭିତରେ ଜୀବନର କେତେ ସ୍ମୃତି ଜଡ଼ି ରହିଛି । ଟିକିଏ ଦୂରରେ···ଧାନବିଲ, ନଈ । ସବୁ ଅତିକ୍ରମ କରି ସବାରୀ ଛୁଟିଲା । ସବାରୀ ଫାଙ୍କରୁ ଥରେ ଗାଁ ଭୂଇଁକୁ ଭଲ କରି ନିରେଖି ନେଲି । ମନ ହେଲା ଗାଁର ସେହି ଗୋଡ଼ି ମାଟିକୁ ବୁକୁରେ ଚାପି ଧରି କହିପିବାକୁ; ମୁଁ ଯାଉଛି—ଆଜିଠୁ ତମର ମୁଁ ପର ।

ଗଛ ଗହଳି, ନଈ, ଧାନବିଲ ଅତିକ୍ରମ କରି ସବାରୀ ଛୁଟିଲା ବାଟେ ବାଟେ—ପଛରେ ଲୁଚିଗଲା ଚିର ପରିଚିତ ଗାଁ ଭୂଇଁଟି ମୋର । ଆଖିରୁ ଲୁହ ଧାର ଧାର ହୋଇ ଛୁଟିଲା । ମନେହେଲା ଦୁନିଆର ନୂଆବାଟରେ ଆଜିଠୁ ମୁଁ ଏକଲା । ଆଜି ମୋ ସାଙ୍ଗରେ ମୋ ଘର ଦୁଆର, ଫୁଲ ବଗିଚା, ବାପା, ବୋଉ, ସାଙ୍ଗସାଥୀ କେହି ଆସି ନାହାନ୍ତି—ସମସ୍ତେ ମୋତେ ପର କରି ଦେଇଛନ୍ତି । ସମସ୍ତେ କହୁଛନ୍ତି ଝିଅ ଜନମ ତ ପର ଘରକୁ—କାହିଁକି କାନ୍ଦୁଚୁ ମାଲି ! ସବୁ ଦୁଃଖ ଭୁଲି ଯା । ଜୀବନର ନୂଆ ସଂସାରକୁ ସୁନ୍ଦର କରି ଗଢ଼ି ପାରିଲେ ସିନା ସମସ୍ତେ କହିବେ ତୁ ବୁଦ୍ଧିମତୀ ।



ସେଦିନ ରାତି ଦି'ଘଡ଼ି ବେଳକୁ ଆସି ଶାଶୂଘର ଗାଁରେ ପହଞ୍ଚିଲୁ । କେତେ ମାଇପେ ଆସି ସବାରୀରୁ ଓହ୍ଲାଇ ମୋତେ ଘର ଭିତରକୁ ନେଇଗଲେ । ଘର ଭିତରେ କବାଟ କଣରେ ମୁଁ ଚୁପ୍ କରି ବସି ରହିଲି । ଗାଁର କେତେ ଝିଅବୋହୂ ସବୁ ଗୋଟି ଗୋଟି ହୋଇ ମୋତେ ଦେଖିବାକୁ ଆସିଲେ । ସମସ୍ତେ ଦେଖି ମୋତେ କେତେ ପ୍ରଶଂସା କରୁଥାନ୍ତି । ରବିର ଲଖି ବୋହୂଟିଏ—ଲକ୍ଷ୍ମୀଟି ପରି କି ସୁନ୍ଦର ! ରୂପ—ଗାଁ ଖଣ୍ଡିକରେ ଇମିତି ବୋହୂ କାହାର ନାହିଁ । ଘଡ଼ିକ ପରେ ନୂଆବୋଉ ନୂଆବୋଉ ଡାକ ଶୋଳ ବରଷର ଫୁଲଟି ପରି ସୁନ୍ଦର ଢଳ ଢଳ ଝିଅଟି ଆସି ମୋ ସାଙ୍ଗରେ କେତେ ଗେଲ ଖେଳିଲା । କେତେ ସୁଆଗଭରା କଥାକହି ମୋତେ ଆପଣାର କରିନେଲା । ଜାଣିଲି ସେ ମୋର ନଣନ୍ଦ ହେବେ ।

ପଚାରିଲି, ନାଁ ତମର କଣ ?

ଶୋଭା ।

ବାଃ···ରୂପକୁ ନେଇ ସୁନ୍ଦର ନାଁଟିତ ! ଆଖି ଯୋଡ଼ିକ ଚଞ୍ଚଳ ଢଳ ଢଳ—ଗୋଲଗାଲ ମୁହଁଟି—ଚମ୍ପାଫୁଲ ପରି ଦେହର ରଙ୍ଗ—ହସଟି ତାର ଜୋଛନା ପରି ଚକ୍‌ଚକ ସୁନ୍ଦର । ଶୋଭାକୁ ପାଇ ମନର ପରାଣ ଟିକେ କମି ଆସିଲା । କହିଲି, ଶୋଭା ତମକୁ ଦେଖି ମୋର ଆଉ ଜଣଙ୍କ କଥା ମନେ ପଡ଼ୁଚି ।

କିଏ ସେ ନୂଆବୋଉ ?

ନାଁ। ତାର ଝରଣା । ଆମର ଗାଁରେ ଘର—ଦାହେଁ ଏକା ବୟସର । ସେ ମୋତେ ତୁମ ପରି କେତେ ସ୍ନେହ କରି ଦିନେ ପାଖକୁ ଡାକନେଲା । କିନ୍ତୁ ସମୟର ଉଜାଣି ସୋତରେ ଝରଣା ଦିନେ ମୋତେ ଛାଡ଼ି ଚାଲିଗଲା । ଆଜି ସେ ଶାଶୂ-ଘରେ । ଆଉ ମୁଁ ଆସି ତମ ଘରେ । ତମେ ବି ସିମିତି ମୋ କଥରେ ଆଜି ଅଛ—କେତେ ଆପଣାର କରୁଚ । ଆଜି ତମେ କୁଆ ଚଢ଼େଇ—ଉଡ଼ି ଶିଖିନା; ପୁଣି ଦିନେ ଉଡ଼ି ଶିଖିଲେ ମୋତେ ଛାଡ଼ି କୁଆଡ଼େ ପଳାଇବ—ନୁହେଁ ?

ତମକୁ ଛାଡ଼ି ମୁଁ କୁଆଡ଼େ ଯିବିନି ନୂଆବୋଉ; ଓଠରେ ତା'ର ଦ୍ୱିଗୁଣିତ ବଙ୍କା ଜହ୍ନପରି ସରୁ ହସ । କହିଲି, ଶୋଭା, ସମସ୍ତେ ସିମିତି କହନ୍ତି ଯେ; କିନ୍ତୁ ଯଉବନର କାଉଁରୀ କାଠି ପରଶରେ ଦେହ ମନ ଯେତେବେଳେ ପୁଲକିତ ହୋଇ ଉଠେ—ସେତେବେଳେ ଆଉ କାହାର ସାଧ ନଥାଏ ଦଣ୍ଡେ ମାତ୍ର ଅଟକାଇବାକୁ ! ଶୋଭା ହସି ହସି ମୋ କୋଳରେ ମୁହଁ ଲୁଚାଇଲା । କହିଲା, ନୂଆବୋଉ ତମେ ଭାରି ଜଣେ !

ତା' ଆରଦିନ ଶୋଭା ମୋ ପାଖେ ପାଖେ ଥାଏ । ସବୁବେଳେ ଛପି ଛପି କେତେ ଗେଲ ଅଝା ଚାଲେ । ଶାଶୂ ଯିଏ ହେବେ—ସେ ଭାରି ଭଲଲୋକ । ସବୁବେଳେ ମୋ ଖାଇବା ପିଇବାଠାରୁ ଆରମ୍ଭକରି ସବୁକଥା ବୁଝନ୍ତି । ଝିଅକୁ କେତେ ଆକଟି କହନ୍ତି, କଲେ ଶୋଭା କେତେ ଗପ କରୁଚୁ—ବୋହୂଟା ପରା ଖାଇନାହିଁ । ଯା' ଦିଟିହେଁ ଦିଟା ଖାଇଦେଇ ଗପ କର । ଶୋଭା ମୋତେ ଟାଣି ଟାଣି ନେଇଯାଏ । ଶାଶୂ ବସି ଏଇଟା ଖା, ସେଇଟା ଖା, କେତେ ସୁଆଗ ଭରା କଥା କହି ଖୁଆନ୍ତି । ନ ଖାଇଲେ ଅଭିମାନର ଛଳ କରନ୍ତି—ରୁଷନ୍ତି । ଭାବେ ଭାଗ୍ୟରେ ଥିଲାବୋଲି ସିନା ଇମିତିକା ଶାଶୂ ମୁଁ ପାଇଚି ।

ଘର କଣରେ ସବୁବେଳେ ମୁଁ ବସି ରହିଥାଏ । ଘଡ଼ିକ ପରେ ଘଡ଼ିଏ ଗାଁର ଝିଅ ବୋହୂମାନେ ଆସୁଥାନ୍ତି—ଟିକିଏ ରହି ପୁଣି ଚାଲି ଯାଉଥାନ୍ତି । କିଏ ହସି ହସି କୋଉ ସମ୍ପର୍କ ପାତି କେତେ ଗେଲ ଖେଳନ୍ତି । ବେଳେ ବେଳେ ସେଇ ଘରକୁ 'ସେ' କଣ ବାହାନାରେ ଚାଲି ଆସନ୍ତି, ଓଢଣା ତଳୁ ମୁଁ ତାଙ୍କୁ ଟିକେ ଦେଖିବାକୁ ଚେଷ୍ଟା କରେ । ଭାରି ସୁନ୍ଦର ଦିଶନ୍ତି ମୋତେ । ସେ ମୋ ଆଡ଼କୁ ଟିକେ ଅନେଇଁ ମୁରୁକି ହସି ଚାଲିଯାନ୍ତି । ବିଜୁଳି ଖେଳିଯାଏ ଦେହରେ—ଅତୀତ ନାଚିଉଠେ । ଦେବଭାଇ···ଦେବଭାଇ । ମନଟା ତାଙ୍କୁ ଡାକି ଡାକି କଣ ଖୋଜେ । ଉତ୍ତର ପାଏନା —ତାର ପ୍ରତିଧ୍ୱନି ଖାଲି ହୃଦୟ କଣରେ ବାଜେ । ସ୍ମୃତିରେ ଘାରି ହୋଇ ଆଖିରେ ଲୁହ ଜକ ଜକ କରେ । ଶୋଭା ଆସି କହେ, ତମେ କାନ୍ଦୁଚ ନୂଆବୋଉ !

ବାପା, ବୋଉଙ୍କ କଥା ମନେ ପଡୁଚି । କାନ୍ଦିବ ନାହିଁ ଶୋଭା । ଶୋଭା ମୋ ଆଖିରୁ ଲୁହ ପୋଛିଦିଏ । ରାଗ ପକାଏ—କାନ୍ଦିବ ଯଦି ନୁଆବୋଉ ମୋ ମୁଣ୍ଡ ଖାଇବ । ଛୁଆ ନନ୍ଦନର ମମତା କାଟି ପାରେନା—ଆଖିରୁ ଲୁହ ଯାଏ ଶୁଖି ।

ଆଜି ମଧୁଶଯ୍ୟା । ତାଙ୍କର ଦୂର ସମ୍ପର୍କୀୟ ଭାଉଜ ମୋତେ ଆଣି ଟାଣି ଟାଣି ଘର ଭିତରେ ପୁରାଇ ଦେଇଗଲେ । ଘର ଭିତରେ ପଶିଲା ବେଳକୁ ଗୋଟିଏ ଅଜଣା ଶିହରଣ ମୋ ମନକୁ ଚମକାଇ ଦେଲା । ଝରଣାର କଥାଗୁଡ଼ା ଖାଲି କାନ ପାଖରେ ବାଜି ଉଠିଲା । ଦେବଭାଇଙ୍କୁ ଯୋଉ ଦେହ ମନ ଉତ୍ସର୍ଗ କରି ଦେଇଥିଲି—ସେ ପୁଣି ଆଜି ଅନ୍ୟର ହେଇଯିବ ଘଡ଼ିକପରେ । ଭାବି ଭାବି ବସି ପଡ଼ିଲି । ଆଖିରୁ ଅଶ୍ରୁ ଉଚ୍ଛୁଳା ବନ୍ୟା ଦେହ ମନକୁ ମୋର ଭସାଇ ନେଲା । କହିଁ କହିଁ ହେଇ ଖାଲି କାନ୍ଦିଲି । ଦୀପଟା ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । ସେ ଦୀପ ଆଲୁଅଟାକୁ ତେଜି ଦେଇ ମୋତେ ଆସି ପଚାରିଲେ, ମାଲ କଣ ହେଇଚି—କାନ୍ଦୁଚ କାହିଁକି ? କିଛି ଉତ୍ତର ଦେଇ ପାରିଲି ନାହିଁ । ସେ ମୋ ହାତଟାକୁ ଧରି ଖଟ ଉପରକୁ ଟାଣି ନେଲେ । ମୁଁ କାନ୍ଦି କାନ୍ଦି ତାଙ୍କର କୋଲରେ ଢଳି ପଡ଼ିଲି । କହିଲେ, ଦେହ କ'ଣ ହେଉଚି—ତେବେ ତମେ କିଏ ଆରାମରେ ଶୋଇପଡ଼ । ମୋତେ ଖଟ ଉପରେ ଶୋଇ ଦେଲେ, ମୁଁ ତକିଆ ଉପରେ ମୁହଁ ମାଡ଼ି କାନ୍ଦୁଥାଏ । ସେ ମୋ ଆଖିରୁ ଲୁହ ପୋଛି ଦେଇ ବିଚଣା ଧରି ବିଞ୍ଚିବାକୁ ଲାଗିଲେ । ମୁଁ ସିମିତି ନୀରବରେ ଶୋଇଥାଏ । ଦୂରରୁ ତନ୍ଦ୍ରା ବିହ୍ୱଳିତ ପକ୍ଷୀର ଟିକିଏ ଟିକିଏ ରବ ଭାସି ଆସି କାନ ପାଖରେ ବାଜି ଯାଉଥାଏ । ଜହ୍ନ ଆଲୁଅ ଆସି ଆମ ସେହି ଝରକା ବାଡ଼ ଉପରେ ବସି ଢୁଲଉଥାଏ । କେତେବେଳେ ଆଖି ଦି'ଟା ବୁଜି ହେଇଗଲା ଜାଣେ ନାହିଁ ।

ନିଦ ଭାଙ୍ଗିଲାବେଳକୁ କର ଲେଉଟାଇ ଦେଖେ ସେମିତି ସେ ମୋତେ ବିଞ୍ଚି ଦେଉଚନ୍ତି । ଜହ୍ନ ଆଲୁଅ ଢୁଳେଇ କେତେବେଳେ ଆସି ଆମ ବିଛଣା ଉପରେ ଶୋଇ ପଡ଼ିଚି । ଘର କଣରେ ଅନ୍ଧାରରାଣୀ ଚୁପ୍ କରି ବସି ରହିଚି ଆଲୁଅ ରଜା ପୁଅଠୁ ଦୂରରେ···ଭାବିଲି ତାର କ'ଣ ଆଜି ମଧୁଶଯ୍ୟା ! ମୋ ଜୀବନର ବେଦନା ଜଡ଼ିତ ସ୍ମୃତି ତା ଜୀବନର ସ୍ମୃତି ସହିତ କଣ ଜଡ଼ିତ ! ଭାବନାରେ ବାଡ଼ ପକାଇ ସେ ମୋତେ ପଚାରିଲେ, ମାଲ ନିଦ କଣ ହେଉ ନାହିଁ ? ତାଙ୍କ ହାତରୁ ବିଚଣାଟା ଛଡ଼ାଇ ଆଣିଲି । କହିଲି, ଅନେକ ରାତି ହେଲାଣି—ତମେ ଶୋଇପଡ଼ । ମୁଁ ବିଞ୍ଚି ଦେଉଚି । ସେ କହିଲେ, ମୋତେ ଆଜି କାହିଁକି ନିଦ ହେଉନି ମାଲ । କହିଲି, ବିଞ୍ଚିଦେଲେ ନିଦ ହେଇଯିବ—ତମେ ଶୋଇପଡ଼ । ସେ ହସିଲେ । ଦେଖିଲି ତାଙ୍କ ଆଖିତଳେ ଜାଗି ରହିଚି କେତେ ଅଜଣା ବାସନା । ମୋତେ କୋଳକୁ ନେଇ ଭିଡ଼ି ଧରି ବାର ବାର ଚୁମ୍ବନ କଲେ । ଦେହ ମନ ମୋର ପୁଲକିତ ହେଇଗଲା ।

ଭାବିଲି, ଆଜିଠୁ ତ ମୁଁ ତାଙ୍କର—ଆଉ କାହିଁକି ତାଙ୍କ ଇଚ୍ଛାରେ ବାଧା ଦେବି । ତାଙ୍କ ଜୀବନର ଗତି ସହିତ ଆଜିଠାରୁ ମୋ ଜୀବନ ଗତି କରିବ ଠିକ୍ ସମତାଳରେ । ଆଉ କାହିଁକି ଦେବଭାଇଙ୍କ ଭାବି ଭାବି ବିବାହିତ ଜୀବନଟାକୁ ଅଶାନ୍ତିରେ ଭରିବି । ଏତେ ବଡ଼ ମଧୁଶଯ୍ୟା ରାତି—ଜୀବନର ଏ ଗୋଟାଏ ରାତି । ଏ ରାତିର ସ୍ମୃତିର ମହକ ସାରା ଜୀବନକୁ ଆଲୋଡ଼ିତ କରିବ ନବରାଗରେ । ଭାବି ଭାବି ତାଙ୍କର ପାଦତଳେ ମୋର ସବୁ କିଛି ଅଜାଡ଼ି ଦେଲି ।

ରାତିର ଶେଷ ପହରକୁ ନିଦ ହୋଇ ଯାଇଥିଲି । ଭୋରୁ ଭାଉଜଙ୍କ ଡାକରେ ଧଡ଼ ପଡ଼ ହୋଇ ଉଠିଲି । ସେ ମୋତେ କୋଳରୁ ଛାଡ଼ୁ ନ ଥାନ୍ତି । ଭାଉଜ ସାଡ଼ୁ ଡାକି ଛାଡ଼ୁଥାନ୍ତି···କହୁଥାନ୍ତି ପାଖକୁ ଯିବାକୁ ଏତେ ଧିକ ଶକ ହେଉଥିଲି—ଏଇଲାଗେ ଆସିବାକୁ ମନ ହେଉ ନାହିଁକି ? ତାଙ୍କ କଥା ଶୁଣି କହିଲି, ଛାଡ଼—ମୋ ରାଣ । ସେ ଛାଡ଼ିଦେଲେ । କବାଟ ଫିଟାଇଲାବେଳକୁ ଭାଉଜ ହସି ହସି କହୁଛନ୍ତି କାଲି ରାତିରେ ଟିକିଏ ହେଲେ ନିଦ ହୋଇନି ପରା ! ଲାଜରେ ଓଢ଼ଣା ତଳେ ମୁହଁଟା ଲୁଚାଇଲି । ଓଠ କଣରେ ହସ ଛପି ରହିଥାଏ । ତାଙ୍କର ପାଙ୍ଗରେ ପୋଷାକଗୁଡ଼ିକୁ ରାଧୋଇବାକୁ ଗଲି । ଅସରନ୍ତି ନିଦ ରାଇଜରୁ ସେତେବେଳକୁ ଅନ୍ଧାର ହୋଇ ଉଠି ଆଖି ମଳୁଥାଏ— ଶାନ୍ତ ଉଷାର ସ୍ନିଗ୍ଧ କୋମଳ ପରଶରେ ।

ଶୋଭା ମୋ ପାଙ୍ଗରେ କେତେ ଖେଳ ଖେଳିଲା । କହିଲା, ନୂଆବୋଉ ଭାଇ କାଲି ରାତିରେ ତମ କାନରେ କଣ ମନ୍ତ୍ରର ଫୁଙ୍କିଦେଲେ କେଜାଣି, ଆଜି ତ କାହିଁକି ଭାରି ହସ-ଖୁସି ଗପ ମେଲି ଦେଇଚ । ଘରକଥା କଣ ଆଉ ମନେ ପଡୁନାହିଁ ? ଆଉ ତ କାହିଁକି ଲୁହର ଝରଣା ଝରୁନାହିଁ ? ହସି ହସି କହିଲି, ଶୋଭା ତମ ଭାଇ ମନ୍ତ୍ରର କରି ଦେଇ ନାହାନ୍ତି—ମନ୍ତ୍ରର କରିଚ ତମେ । ସବୁବେଳେ ମୋର ଏଇ ଲଗାମ ମୁକୁଳା ମନଟାକୁ ତମେ ବାନ୍ଧି ରଖିଚ ତମରି ଏଇ ଆଦରମିଶା କଅଁଳ ବଚନରେ । ସତେ ଶୋଭା, ତମର କଥା ଫୁଲଠୁଁ କଅଁଳ—ତମର ରୂପ ଚନ୍ଦ୍ରଠୁ ସୁନ୍ଦର । କୋଉ ଦେଶର ରଜାପୁଅ ଉପବନରେ ତମେ ଫୁଟିବ କେଜାଣି ! ସଜଫୁଟା ଫୁଲକୁ ଭଅଁର ଛୁଇଁ ଦେଲେ ଯେମିତି ଲାଜରେ ନଇଁ ପଡ଼େ— ସେମିତି ଲାଜରେ ତଳ ପଡ଼ିଲା ଶୋଭାର ହସ ହସ ମୁହଁ । କହିଲା, ନୂଆବୋଉ ତମେ ଭାରି ଦୁଷ୍ଟ । କହିଲି, ଶୋଭା ଦୁଷ୍ଟ କଣ ମୁଁ—ଦୁଷ୍ଟ ଯିଏ ନାଁ । ଯିଏ ତମକୁ ପକ୍ଷୀରାଜ ଘୋଡ଼ା କୁଦାଇ ନେଇଯିବେ କେଉଁ ରାଇଜକୁ । ଶୋଭା ଚଢ଼ି ଉଠିଲା । ମୋତେ ପୁଳାଏ ଚିମୁଟି ପକାଇ ପଳାଇଲା ।

ଦିନଟା ଶୋଭା କଥାରେ ରାତିଟା ତାଙ୍କ କଥାରେ କେଉଁ ରୂପକଥାର ସପନ କାହାଣୀ ପରି ବିତିଲା ।

ଘରର ରୋଷେଇବାସ ଠାରୁ ଅନ୍ୟ କାମଦାମ ମୋତେ ଶୋଭା ଆଉ ଶାଶୂ କିଛି କରାଇ ଦିଅନ୍ତି ନାହିଁ । କାମ କରି ବସିଲେ ଶାଶୂ ଆସି ଛଡ଼ାଇ ନିଅନ୍ତି । ଶୋଭା ଉପରେ ପଡ଼ି ସବୁ କରିଦିଏ । କେତେ କହେ, ପିଲାଟା ତମେ—ଏତେ ଖଟିବ କାହିଁକି ମୁଁ ଆଉ ଆସିଛି ଏଠି ରାଣୀ ହୋଇ ବସିବା କି ? ଶୋଭା ଶୁଣେନି । ଶାଶୂ କହନ୍ତି, ବୋହୂ ତମେ ଏଇକ୍ଷଣି ପିଲା—ତମର ଏଇକ୍ଷଣି ହସଖୁସିର ବେଳ । ଯା ମା— ମୁଁ କଣ ବୁଢ଼ୀ ହୋଇଛି ! ମୋଠୁ ଯୋଉଁ କାମ ଚଳେଇବ ପଛେ କରିବୁ । କଣ କରିବ— ଅଭିମାନରେ ଛୁଲ କରେ । ଖାଏ ନାଁ— ଶାଶୂ ଆସି ଗ୍ରାସ ପକାନ୍ତି । କ୍ଷଣକର ଅଭିମାନ ମୋର ପାଣି ଫାଟିଯାଏ । କୁହେ, ମା ତମ ବୋହୂ ମଲାପରେ ଗ୍ରାସ ପକାଇବ । ଶାଶୂ ଆକଟି କହନ୍ତି, ଇମିତକା କଥା ବୋହୂ ଆଉ କେବେ କହିବୁ ନାହିଁ । କେତେ ତପସ୍ୟା ଫଳରେ ତତେ ପାଇଛି ମା । ତୁ ମୋର ବୋହୂ ନୁହଁ— ତୁ ମୋର ଘରର ଲକ୍ଷ୍ମୀ । ମା'ଙ୍କ କଥା ଶୁଣି ହସ ମାଡ଼େ । ଠିକ୍ ତା'ର ମୁଁ ଓଲଟା ଭାବେ, କେତେ ପୁଣ୍ୟ ବଳରେ ଏମିତିକା ଶାଶୂ, ନଣନ୍ଦ, ଶ୍ୱଶୁର, ସ୍ୱାମୀ ସବୁ ପାଇଛି । ଅଜଣା ଦେବତା ଉଦ୍ଦେଶ୍ୟରେ ମୁଣ୍ଡଟା ନଇଁପଡ଼େ, କୁହେ ଦେବତା କିଛି ନ ଦେଇ ସବୁ ଦେଇଛ—ଏଣିକି ଖାଲି ଇମିତି ଟିକେ ଶାନ୍ତିରେ ମୋ ଜୀବନ ଦୀପ ଶୀଘ୍ର ଲିଭିଯାଉ···ଏହାହିଁ ମୋର କାମନା । ମୋର ଚୁପି ଚୁପି ମନର ବାସନା ଦେବତା ଶୁଣନ୍ତି କି ନାହିଁ ଜାଣେନା— କିନ୍ତୁ ନିତି ନିତି ତାଙ୍କୁ ମୁଁ ମୋର ଏହି ମନକାମନା ଜଣାଏ ।



ଘଡ଼ରେ । ଜହ୍ନ ଆଲୁଅ ଗଛ ତଳେ ତଳେ ଛପି ଛପି ଆସି ଆମ ଦୁଆରେ କଅଁଳ ଶେଯ ବିଛେଇ ଦିଏ । ଦୂର ବିଲଆଡ଼ୁ ଥିର ଥିର ପବନ ଆସି ବିଚଣା ବୁଲାଏ । ଧରଣୀ ରାଣୀ ସପନ ଦେଶର ରୂପ କାଠି ପରଶରେ ଅଚେତ ହୋଇ ଶୋଇପଡ଼େ । ଦୂର ଆକାଶରେ ତାରାଗୁଡ଼ା ଜଳୁଆଲୀ ପରି ଜଗି ରହିଥାନ୍ତି ଅପଲକ ନୟନରେ ଧରଣୀ ବୋହୂକୁ ଚାହିଁ ଚାହିଁ ।

ବୋଷେଇବାସ ସାରି ସପଟା ଦୁଆରେ ବିଛେଇ ଶୋଭା ଡାକେ, ଆସ ନୂଆବୋଉ ! ମୁଁ ବସିପଡ଼େ । ଜହ୍ନ ଆଲୁଅରେ ଶୋଭା ମୁହଁଟି କେଡ଼େ ସୁନ୍ଦର ଦିଶୁଥାଏ । ସତେ ଯେପରି ମୁହଁରେ ତାର ଜୋଛନା ପାଉଡ଼ର କିଏ ବୋଳି ମୁଣ୍ଡ ଉପରକୁ ଟାଣି ଦେଇଛି କଳଲଗା ଶାଢ଼ୀ । ଶୋଭା କୁହେ, ନୂଆବୋଉ ଗୋଟିଏ ଗପ କୁହ ! ମୁଁ କୁହେ, ମୋତେ ଆସେନା । ତମେ ଗୋଟିଏ କୁହ ? ସେ ଜିଦ୍ ଧରେ— କୁହେ, ତମେ ଗୋଟିଏ କୁହ ନୂଆବୋଉ ! ତା କଥା ଏଡ଼ି ଦେଇ ପାରେନା । କୁହେ, ସତସତକା ଗୋଟିଏ ଗପ ଶୁଣ ମାଲ !

ଅନେକ ଦିନ ତଳର କଥା । ଆମ ଗାଁଠୁ ଦଶ ମାଇଲ ଦୂରରେ··· ରାଜନଗର ଗାଁ । ସେଇଠି ଗୋଟିଏ ଗଡ଼ ଥିଲା··· ସେହି ଗଡ଼ର ରାଜା ଥିଲେ— ପ୍ରତାପଚନ୍ଦ୍ର ଦେବ । ଭାରି ପ୍ରତାପୀ ରାଜା । ତା ଡରରେ ଆଖ ପାଖ ଲୋକେ ଥରହର ହେଉଥିଲେ; କିନ୍ତୁ ରାଜା ଭାରି ଦୟାବନ୍ତ—ଗଡ଼ର ପ୍ରଜାମାନଙ୍କୁ ପୁଅ ପରି ଦେଖେ । ତାଙ୍କର ହାନୀ ଲାଭ ସବୁ ସେ ବୁଝେ । ପ୍ରଜା ରାଜାଙ୍କୁ ଭାରି ଭଲ ପାଆନ୍ତି—ଭକ୍ତି

କରନ୍ତି । ରାଜାଙ୍କର ଥିଲା ଗୋଟିଏ ରାଣୀ । ବାହା ହେବା ଦଶ ବରଷ ହେଇଗଲା, ରାଣୀଙ୍କର ଗୋଟିଏ ବି ସନ୍ତାନ ହେଲା ନାହିଁ । ସେଇଥିପାଇଁ ରାଜାଙ୍କ ମନରେ ଭାରି ଦୁଃଖ । କେତେ ପୁଣ୍ୟ, କେତେ ଦାନ କଲେ ବି ରାଣୀଙ୍କ ଗର୍ଭରୁ ସନ୍ତାନ-ସନ୍ତତି ହେଲା ନାହିଁ ।

ଶେଷରେ ରାଜା ନିରାଶ ହୋଇ ଦ୍ୱିତୀୟ ଥର ପାଇଁ ବାହା ହେଲେ— ବଂଶ ରକ୍ଷା ଲୋଭରେ । ରାଜାଙ୍କ ଦ୍ୱିତୀୟ ରାଣୀ ଭାରି ରୂପବତୀ । ତାକୁ ପାଇ ରାଜା ବଡ଼ରାଣୀଙ୍କୁ ଭୁଲିଗଲେ । ସାନରାଣୀ ବି ବଡ଼ରାଣୀକି ଖାଲି ଉପର ମନରେ ଟିକିଏ ପଚାରେ— କିନ୍ତୁ ଭିତରେ ଭଲ ପାଏନା । ବଡ଼ରାଣୀ ଏ କଥା ଜାଣେ । ଦିନୁଦିନୁ ବଡ଼ରାଣୀ ପ୍ରତି ଏହି ଅବହେଳା ବଢ଼ି ଚାଲିଲା । ଶେଷରେ ବଡ଼ରାଣୀ କ୍ରୋଧରେ ରାଜାଙ୍କୁ ବିଷ ଦେଇ ମାରି ପକାଇଲା । ରାଜ୍ୟରେ ଚହଳ ପଡ଼ିଲା— କିଏ ମାରିଲା ! କିଏ ମାରିଲା !! ଦେଖିଲାବେଳକୁ ବଡ଼ରାଣୀ କୁଆଡ଼େ ପଳାଇଛି । ରାଜାଙ୍କୁ ହରାଇ ମଣିଷ, ଗଛ ଲତା, ପାହାଡ଼ ପର୍ବତ, ନଈ ନାଳ, ପଶୁ ପକ୍ଷୀ ସମସ୍ତେ ଝୁରି ହେଲେ । ବଡ଼ରାଣୀକି କେତେ ଖୋଜିଲେ କେଉଁଠି ପାଇଲେ ନାହିଁ । ସାନରାଣୀ ବି ରାଜାଙ୍କୁ ଝୁରି ଝୁରି ଦିନେ ମରିଗଲା । ପ୍ରତାପଚନ୍ଦ୍ର ଦେବଙ୍କର ବଂଶ ଲୋପ ପାଇଗଲା ।

ଆଜି ସେ ଗଡ଼ ଭାଙ୍ଗିଗଲଣି । କେହି ନାହାନ୍ତି—ଚାରିଆଡ଼େ ଘେରି ରହିଲାଣି ଅନାବନା ଜଙ୍ଗଲ । ସେଇ ପଥରେ ଗଲାବେଳେ ଗଡ଼କୁ ଦେଖିଲେ ଲୋକେ ଦଣ୍ଡେ ଛିଡ଼ା ହୁଅନ୍ତି । ତା'ପରେ ଗଡ଼ର ଜରାଜୀର୍ଣ୍ଣ ସ୍ମୃତି ଚେତେଇ ଦିଏ ମଣିଷର କ୍ଷଣିକର ସ୍ମୃତି ଓ ବଳୟ । ଆଉ ଲଗାମ ଛୁଟିଲା ମନଟାକୁ ଭିଡ଼ି ଧରି ଭାବିବାକୁ କହେ । ସତେ ଶୋଭା, ସେଇ ବାଟ ଦେଇ ମୁଁ ମାମୁଁ ଘରକୁ ଗଲାବେଳେ ସେଇ ଗଡ଼ ପଡ଼େ । ଗଡ଼କୁ ଦେଖିଲେ କେତେ କଥା ମନେ ପଡ଼େ । କାହିଁ ସେ ଦିନର ରାଜା, ରାଣୀ, ଦାସ, ଦାସୀ, ପ୍ରଜା । ସବୁ ଯାଇଛି— କାଳ ବୁକୁରେ ଅଙ୍ଗାର ହୋଇ । ଅଛି କ୍ଷୀଣ ସ୍ମୃତିର ରୂପ ଧରି ଏଇ ଭଙ୍ଗାଗଡ଼ର ଇଟା ପଥର କେଇଖଣ୍ଡ । ଜୀବନର ସବୁ କଥା ସିମିତି ଗୋ ଶୋଭା—କିଏ କାହାର ! ଖାଲି ଜୀବନ ଉପରେ ମାୟା ମରିଚିକା ଝିଲିମିଲି ହେଇ ନାଚୁଛି ସିନା !

ଇମିତି କେତେ ରାଇଜର ଅସରନ୍ତି ଗପ ମୁଁ କହି ଚାଲେ । ଶୋଭା ଏକ ଧ୍ୟାନରେ ବସି ସବୁ ଶୁଣେ । କଥା ଶୁଣୁ ଶୁଣୁ କେତେବେଳେ ସେ ହସେ—କେତେବେଳେ ମୋ କାହାଣୀର ନାୟକ ନାୟିକାର ଦୁଃଖ ଶୁଣିଲେ ସେ କାନ୍ଦେ । ମୁଁ ହସେ— କହେ, ରୂପକଥା ଗୁଡ଼ା ସତ ନୁହେଁ ଗୋ ଶୋଭା, ତମେ କାନ୍ଦୁଛ । ସେ କହେ,

ନୂଆବୋଉ, ତମେ ରୂପକଥାକୁ ଇମିତ କରୁଣ କାହାଣୀରେ ରୂପ ଦେଉଚ—ମୁଁ ନ କାନ୍ଦି ରହି ପାରୁନାହିଁ । ରାତି ବେଶି ହେଲେ ବୋଉ ଆସି ଚଢ଼ନ୍ତି । ଦାହେଁ ଉଠି ଆସୁ—କୋଉ ରାଜପୁଅ ସାତ ତାଳ ପାଣି ଭିତରେ ସେଇ ରାକ୍ଷସୀପୁରୀରୁ ଆଉ ରାଜଜେମାକୁ ଉଦ୍ଧାର କରି ପାରେନା ।

ରାତିରେ ଶୋଇବାବେଳେ ସ୍ୱାମୀ ମୋତେ କହନ୍ତି, ମାଳ ! ନିଦ ହେଉନି । ତମେ ଗୋଟାଏ କାହାଣୀ କୁହ । ସେହି କାହାଣୀର ସୁରଭି ମୋ ଆଖିରେ ଯେମିତି ନିଦର ମୃଦୁ ଅଞ୍ଜନ ବୋଳି ଦେବ । କୁହେ, ମୁଁ କଣ ଆସିଚି ତମ ଘାଇ ଭଉଣୀଙ୍କୁ ଖାଲି ଦିନ ରାତି କାହାଣୀ ଶୁଣେଇବାକୁ ? ସେ ହସନ୍ତି—କୁହନ୍ତି, ମାଳ ତୁମେ ତ ଗୋଟାଏ ରୂପ ରାଇଜର ରାଜଜେମା । ଅଙ୍ଗେ ଲଭେଇବା କଥାଗୁଡ଼ା କହିବାକୁ ଏତେ କୁଣ୍ଠା କାହିଁକି ? କୁହେ, ମୁଁ କହିପାରିବନି—ମୁଁ ତମର ସେଇ ସପନପୁରୀର ରାଜଜେମା ନୁହେଁ । ସେ ହସି ହସି ମୋତେ କୋଳକୁ ଟାଣିନେଇ କେତେ ମନଭୁଲଣିଆ କଥା କହନ୍ତି । ରାତିଟା ଖାଲି ସପନ ପରି ବିତିଯାଏ । ଯେତେବେଳେ ଉଷାର ପହିଲି ଆଲୁଅକୁ ମୁଁ ଆମ ଶୋଇବା ଘର ଫାଙ୍କରୁ ଦେଖେ—କୁହେ, ରାତି ପାହିଲାଣି—ଯାଉଚ । ସେ କୁହନ୍ତି, ରାତିଟା କଣ ଦିନୁ ଦିନ ଛୋଟ ହେଇଯାଉଚି ମାଳ ! ମୁଁ କିଛି ଉତ୍ତର ନ ଦେଇ ହସି ହସି ଉଠିଆସେ ।

ଇମିତି ସ୍ୱାମୀଙ୍କର ସ୍ନେହ, ଶୋଭାର ଖେଳ-ପରିହାସ, ଶାଶୂ-ଶ୍ୱଶୁରଙ୍କର ମନ-ଭୁଲଣିଆ କଥାରେ ମୋ ଦିନଗୁଡ଼ା କଟି ଚାଲିଲା—ଜୀବନରେ ଖାଲି ସରଗ ସୁଷମା ଫୁଟାଇ...ଝରାଇ । ଗୋଡ଼ ମାଟି ପରି ଅତୀତର ସ୍ମୃତି ଗୁଡ଼ା କାହିଁ କେଉଁଠି ରହିଲା, ଦିନେ କଳ୍ପନାରେ ବି ଯୁଝି ଆସିଲା ନାହିଁ । ମନରାଇଜର କ୍ଷୁଦ୍ର କୋଠରୀରେ ଖାଲି ଜୀବନର ସୁଆଦଭରା ନୂଆ ନୂଆ ସ୍ମୃତି ଆସି ଘର ଦୁଆର କଲା । ଅତୀତର ସମାଧି ଉପରେ ନୂଆ ସ୍ମୃତି ମୁଣ୍ଡ ଟେକିଲା । ନୂତନ ମଳୟର ସୁରଭି ପ୍ରାଣକୁ ମହକାଇ ଡାକ ନେଲା ଦିଗ ଆରପାରିକି ।

ସେଦିନ ଖରାବେଳେ ଦିବସର ହସ ଲିଭି ଯାଇଥାଏ । ଆକାଶରେ ମେଘ ଛାଙ୍କି-ଥାଏ । ପବନଟା ସୁ ସୁ ହୋଇ ପିଟୁଥାଏ । ଘରେ ବସି ଆସନ ବୁଣୁଚି । ଶୋଭା ହସି ହସି ଦଉଡ଼ି ଆସିଲା । କହିଲା, ନୂଆବୋଉ ମୋତେ କଣ ଦେବ କହିଲ, ତମକୁ ଗୋଟାଏ ନୂଆ ଜିନିଷ ଦେଖାଇବି । କହିଲି, କଣ ଆଗ ଦେଖାଅ । ଶୋଭା ଗୋଟାଏ ଫଟୋ ଆଣି ଦେଖାଇଲା । କହିଲା, ଏ କା'ଫଟୋ କହିଲ ? କହିଲି ତମ ଭାଇଙ୍କର ପରା ! ଶୋଭା ହସି ହସି ଆଉ ଗୋଟାଏ ଫଟୋ ବାହାର କରି କହିଲା, ଆଚ୍ଛା ଏ କା' ଫଟୋ କହିଲ ? ଆରେ ଏ ଫଟୋଟା ତ ଦେବଭାଇଙ୍କର—ଏଠିକି ଆସିଲା କପରି ? ମନରେ ପ୍ରଶ୍ନ ଉଠିଲା ବାର ବାର ।

ଅତୀତର ସ୍ମୃତି ଭାସି ଉଠିଲା । ଦେବଭାଇଙ୍କ ରୂପ ଆଖି ଆଗରେ ଛଳ ଛଳ ହୋଇ ଦିଶିଲା । ଆଖିରେ ଲୁହ ଜକେଇ ଆସିଲା । ନିଜର ଦୁର୍ବଳତାକୁ ଲୁଚାଇ କହିଲି, ଏ କା' ଫଟୋ ମୁଁ ଜାଣେନା ଶୋଭା । ଶୋଭା ହସି ହସି କହିଲା, ଏ ପରା ଦେବବାବୁଙ୍କର ଫଟୋ । ଭାଇଙ୍କର ପଢ଼ାବେଳର ସାଙ୍ଗ । ଭାଇ କହନ୍ତି ଭାରି ଭଲ ମଣିଷ—କଲେଜ ସାଙ୍ଗ ଭିତରେ ସବୁଠୁ ଦେବବାବୁ ତାଙ୍କର ଅତି ଅନ୍ତରଙ୍ଗ । ଥରେ ମୋ କଥାକୁ ଗୋଟାଏ ଚିଠି ଦେଇଥିଲେ । ସେ ଚିଠି ପାଇ ମୁଁ ତାଙ୍କ କଥାକୁ ଚିଠି ଦେଇଥିଲି । ଆମ ଘରକୁ ଆସିବାକୁ ଲେଖିଥିଲି । ଭାଇଙ୍କି ମଧ୍ୟ କେତେ-ଥର କହିଥିଲି । ଦେବବାବୁ ଆସିବେ ଆସିବେ ବୋଲି ଭାଇ କହନ୍ତି—କିନ୍ତୁ ଥରେ ହେଲେ ସେ ଆସି ନାହାନ୍ତି । ଭାଇ ମଧ୍ୟ ତାଙ୍କ ଗାଁ ଠିକଣାଟା ଭୁଲି ଯାଇଛନ୍ତି । ତାଙ୍କ ବାହାଘରକୁ ମଧ୍ୟ ନିମନ୍ତ୍ରଣ କରି ପାରିଲେ ନାହିଁ । ଭାରି ବଡ଼ଲୋକର ପୁଅ ସେ ନୂଆବୋଉ ! ବାହାଘରକୁ ଆସିଥିଲେ ତମକୁ ଉପହାର ଦେବାପାଇଁ ନିଶ୍ଚୟ କେତେ ଜିନିଷ ନେଇ ଆସିଥାନ୍ତେ ।

ଶୋଭାକୁ ଦେବବାବୁଙ୍କ କଥା କହିବାକୁ କେଡ଼େ ଖୁସି ଲାଗୁଥାଏ । କିନ୍ତୁ ସେ କାହୁଁ ଜାଣିବ ଏଇ ଦେବବାବୁଙ୍କ ସହିତ ମୋର ନିଗୂଢ଼ ପରିଚୟ ! ମୋ ଜୀବନର ଅଧେ ତାଙ୍କର ସ୍ମୃତି ଜଡ଼ିତ । ଶୋଭାର ଖୁସିକଥା ଗୁଡ଼ା ମୋ ଅନ୍ତରରେ କେତେ ଆଘାତ ଦେଉଥାଏ । ମୋର ଶୁଖିଲା କ୍ଷତ ଉପରେ ଖାଲି ବ୍ଲେଡ ଉପରେ ବ୍ଲେଡ ମାରୁଥାଏ । ଦେବଭାଇଙ୍କ ଫଟୋକୁ ଅନାଇଲା ବେଳକୁ ଉଙ୍କିମାରୁଥାଏ ମନର ଦିଗବଳୟ ଅତୀତ ଭିତରୁ ବିଫଳ ଜୀବନର କେତୋଟି ଛବି । ଝରଣା···ନୂଆବୋଉ ···ଦେବଭାଇ···ଗାଁର ନିଗୁଛିଆ ଜଙ୍ଗଲର ମଧୁର ଦିନଗୁଡ଼ିକର ପ୍ରାଣମତାଣିଆ ଗୋଟିଏ ଗୋଟିଏ ମୁହୂର୍ତ୍ତ । ନିଜକୁ ଅତୀତର ଶତ ଦୁର୍ବଳତାରୁ ବଞ୍ଚାଇ ପାରିଲି ନାହିଁ । ଅନ୍ତରରୁ ଉଠିଲା କୋହ—ଆଖିରୁ ଝରି ପଡ଼ିଲା ଲୁହ ।

ନୂଆବୋଉ ତମେ କାନ୍ଦୁଚ ? ଶୋଭା କଥା ଶୁଣି ଚମକି ପଡ଼ିଲି । ଆଖିରୁ ଲୁହ ପୋଛି ଆରଘରକୁ ପଳାଇ ଆସିଲି ।

ରାତିରେ ଶୋଇ ଯାଇଥିଲାବେଳେ ଶୋଭା ପଚାରିଲା, ନୂଆବୋଉ ତମେ ସେତେବେଳେ କାନ୍ଦିଲ କାହିଁକି ? କହିଲି, ଘର କଥା ମନେ ପଡ଼ିଲା ଶୋଭା । ଶୋଭା କହିଲା, ନୂଆବୋଉ ତମେ ଲୁଚଉଚ । ଦେବବାବୁଙ୍କ ଫଟୋକୁ ଦେଖି କାନ୍ଦିଲ । ତମେ କଣ ତାଙ୍କୁ ଚିହ୍ନ ନୂଆବୋଉ ? ମୋ ରାଣ—କାହିଁକି କାନ୍ଦିଲ କୁହ । କହିଲି, ତାଙ୍କ ଘର କୁଆଡ଼େ—ମୁଁ ତାଙ୍କୁ ଚିହ୍ନେ ନା ଜାଣେ ! ମୁଁ କାହିଁକି ତାଙ୍କୁ ଦେଖି କାନ୍ଦିବି ? ତେବେ କାହିଁକି କାନ୍ଦିଲ କୁହ ?

କହିଲ, ମଣିଷ ଜୀବନରେ ଅଜ୍ଞାତ ଆସି ବେଳେବେଳେ ଇମିତି ଚୁକ୍ଟୁକ ମାରେ ଶୋଭା—ସେ କାହିଁକି କାନ୍ଦେ କିଛି ବୁଝି ପାରେନା । ଖାଲି କାନ୍ଦେ—ଆଉ କାନ୍ଦେ । ଶୋଭା ମୋ କଥାର ମାନେ କିଛି ବୁଝି ପାରିଲା ନାହିଁ—ଖାଲି ମୁହଁକୁ ବଲ ବଲ କରି ଚାହିଁ ରହିଲା ।

ସେହି ଫଟ ଦ'ଟାକୁ ସ୍ୱାମୀଙ୍କ ନିର୍ଦ୍ଦେଶରେ କେତେବେଳେ ଶୋଭା ଆଣି ମୋ ଶୋଇବା ଘର କାନ୍ଥ ଉପରେ ଟାଙ୍ଗି ଦେଇଚ—ଜାଣେନା । ଘର ଭିତରକୁ ପଶିଲେ ଆଖି ଆଗରେ ପଡ଼େ ମୋ ସ୍ୱାମୀ ଓ ଦେବଭାଇଙ୍କର ହସ ହସ ଫଟ ଦୁଇଟି । ଦେବଭାଇଙ୍କ ଫଟକୁ ଚାହିଁଲେ ଅଜ୍ଞାତର ଗ୍ରାଇ ମୋ ଜୀବନ ସରସୀରେ ପ୍ରତିବିମ୍ବିତ ହୁଏ । ମନ ବାହୁନି ଉଠେ—ହୃଦସ୍ପନ୍ଦରେ ତା'ର ମୂର୍ଚ୍ଛନା ଖେଳି ବୁଲେ । ଆଖିରୁ ଝରେ ଲୁହ । ମୋ ସୁନାର ସଂସାର ମଝିରେ ଏଇ ଫଟଟା ହୁଏ ଏକ ବିରାଟ ପ୍ରତିବନ୍ଧକ । ବାହାହେଲା ପରଦିନଠାରୁ କେତେ ହସ ଖୁସିରେ ଦିନଗୁଡ଼ା କଟି ଯାଉଥିଲା । ତା'ର ଭିତରେ କୌଣସି ଦିନ ମନଗାଇଜରେ ଦେବଭାଇଙ୍କର ସ୍ମୃତିର ଅଲଭ୍ୟ ରୂପ ଦେଖିନାହିଁ । ଅବସରବେଳେ ବି ଭୁଲରେ ତାଙ୍କର ସ୍ମୃତି ମନ ଉପରେ ଘର ଦୁଆର କରିନାହିଁ । ବାହାହେଲା ପରଦିନଠାରୁ ତାଙ୍କର ସ୍ମୃତିଗୁଡ଼ାକୁ ମୁଁ ଜୋର କରି ପର କରି ଦେଇଥିଲି । ଆଜି ଜୀବନ-ପଥରେ ତାଙ୍କର ସ୍ମୃତିର କଣ୍ଟା ମୋତେ ଆଘାତ ଉପରେ ଆଘାତ ଦେବାକୁ ଲାଗିଲା ।

ସତେ ଯେପରି ତାଙ୍କର ଫଟଟା ମୋତେ ସବୁବେଳେ ବିଦ୍ରୂପଭରା ଇଙ୍ଗିତ ଦେଲା—ମାଲ ! ତୋ'ର ପାଇଁ ମୁଁ ଜୀବନର ସବୁ ସରସତାକୁ ନିଜ ହାତରେ ନିଆଁ ଲଗାଇ ଦେଲି—ଘର ଗ୍ରାଡ଼ିଲି ଭଲପାଇବାକୁ ଆଦର୍ଶ କରି—ବଡ଼ଲୋକର ଆଭିଜାତ୍ୟ ଉପରେ ଧୂଳି ଦେଇ । କିନ୍ତୁ ତା'ର ପ୍ରତିଦାନରେ ତୁ ମୋତେ ଭୁଲିଗଲୁ···ନିଜକୁ ହରାଇ ବସିଲୁ ଗୋଟାଏ ମାୟାବନ୍ଧନ ଭିତରେ । ଜୀବନ ବଡ଼ ନୁହେଁ ମାଲ—ମଣିଷର ଆଦର୍ଶ ବଡ଼ । ମୋର ଆଦର୍ଶରେ ବଢ଼ି ଶେଷରେ ଇମିତି ଖସଡ଼ା ପଥରେ ଗୋଡ଼ ଦେଲୁ ନିଜର ସୁଖ-ସଂସାର ପାଇଁ ! ହଉ ମାଲ, ମୁଁ କିନ୍ତୁ ତୋତେ ଭୁଲି ନାହିଁ । ଜୀବନର କ୍ଷଣିକ ବିକାଶ ଭିତରେ ତୁ ଯେଉଁ ସ୍ନେହଟିକି ମୋତେ ଦେଇଛୁ—ସେଇଆକୁ ନେଇ ସମସ୍ତର ଲହଡ଼ି ଭଙ୍ଗା ଅଥଳ ଦିନ ଦରିଆରେ ମୋ ଜୀବନର ଶେଷଭାଗ ବେଶ୍ ସୁଖରେ କଟିବ ।

ଭାବିଲି ଏ ଫଟଟା ଏଠି ରହିଲେ ମୁଁ ଆଉ ମୋର ଦୁର୍ବଳତାକୁ ଲୁଚାଇ ପାରିବିନି । ଶେଷରେ ମୋର ଏଡ଼େବଡ଼ ସୁଖସଂସାରରେ ଦୁଃଖର ଅଦିନିଆ ଝଡ଼ ବତାସ

ଉଠିବ । ତାଙ୍କର ଏଇ ରୂପଟାକୁ ଦେଖିଲେ ସିନା ଅଖାଡର ପ୍ରେତ ଆସି ବନ୍ଧୁ ପ୍ରଶଂସା ହସ ହସିବ— ନ ଦେଖିଲେ କିଏ କ'ଣ କହିବ ? ଏଇଆ ଭାବି ଦେବଭାଇଙ୍କ ଫଟଟାକୁ ବାକ୍ସ ଭିତରେ ବନ୍ଦ କରି ରଖିଦେବାକୁ କାଢ଼ିବାକୁ ଗଲି । ଫଟଟା କାଢୁ କାଢୁ ହଠାତ୍ ହାତରୁ ଖସି ତଳେ ପଡ଼ି ଚୂନା ହେଇଗଲା । ଭୟରେ ଦେହ ଶୀତେଇ ଉଠିଲା ମୋର । ସ୍ୱାମୀ ଜାଣିଲେ ମନରେ ଦୁଃଖ କରିବେ— ତାଙ୍କର କେତେ ଆଦରର ଏଇ ଫଟଖଣ୍ଡିକ । କଣ କରିବି— କିଛି ଭାବି ପାରିଲି ନାହିଁ । ତଳୁ ଫଟଟାକୁ ଉଠାଇ ଦେଖିଲି ଅନେକ ଦାଗ ହେଇ ଯାଇଚି । ଭୟରେ ଛବିଟାକୁ ବାକ୍ସ ଭିତରେ ଲୁଚାଇ ଭଙ୍ଗା କାଚଗୁଡ଼ା ପଦାକୁ ଫୋପାଡ଼ି ଦେଲି ।

ରାତିରେ । ଶୋଇବାକୁ ଗଲାବେଳେ ସ୍ୱାମୀ ମୋତେ ପଚାରିଲେ, ମାଳ, ଏଠୁ ଏ ଫଟଟା କୁଆଡ଼େ ଗଲା ? ଦିନେ ତାଙ୍କ ଆଗରେ ମିଛ କଥା କହି ନାହିଁ । ଆଜି ଏଇ ସାମାନ୍ୟ ଘଟଣାକୁ ମିଥ୍ୟାର ଆବରଣ ତଳେ ଲୁଚାଇବାକୁ ସାହସ ହେଲା ନାହିଁ । କହିଲି, ଛବିଟା କାନ୍ଥରେ ବଙ୍କା ହୋଇ ଟଙ୍ଗା ହୋଇଥିଲା— ସିଧା କରୁ କରୁ ହାତରୁ ଖସିପଡ଼ି ଭାଙ୍ଗିଗଲା । ବାକ୍ସରେ ରଖି ଦେଇଚି । କହିଲେ, ଦେଖି ସେ ଫଟଟା । କାଢ଼ି ଦେଖାଇଲି । ସେ କହିଲେ, ମାଳ କଣ ହେଲା, ଏଡ଼େ ସୁନ୍ଦର ଫଟଟା ଇମିତି ନଷ୍ଟ କରିଦେଲ । ଦୁଃଖରେ ତାଙ୍କ କଥାର ସ୍ୱର ଭାରି ହେଇ ଉଠିଲା । କହିଲି, ଅସାବଧାନରୁ ଭାଙ୍ଗି ଯାଇଚି— ମୋର ଦୋଷ ହେଇଚି— ଯା ଦଣ୍ଡ ଦେବ ଦିଅ । ସେ ହସିଲେ— ବେଦନାବିଧୁର ହସ । କହିଲେ, ମାଳ ତୁ ଜାଣୁନା ଏଇ ଫଟଖଣ୍ଡିକ ସହିତ ମୋ ଜୀବନର କେତେ ସ୍ମୃତି ଜଡ଼ିତ ! ଆଜିକି ଦି'ବର୍ଷ ତଳର କଥା । ଫୋର୍ଥ ଇୟରରେ ଯେତେବେଳେ ମୋର ଏଇ ଦେବ ସହିତ କଲେଜରେ ପ୍ରଥମ ପରିଚୟ— ସେତେବେଳେ ମୁଁ ନିଜକୁ ହରାଇ ବସିଲି ତାର ଅସାଧାରଣ ସ୍ନେହର ଆକର୍ଷଣରେ । ତା'ପରେ ଦିହିଁଙ୍କ ବନ୍ଧୁତା ଆପେ ଆପେ ନିବିଡ଼ ହେଇ ଉଠିଲା··· ପରସ୍ପରକୁ ଭଲ ପାଇବା ଭିତରେ ।

ଜୀବନରେ ସେ ମୋର ଅନେକ ଉପକାର କରିଚି ମାଳ— ମୋତେ ଅକସ୍ମାତ ଦିନେ ମୃତ୍ୟୁମୁଖରୁ ବଞ୍ଚାଇଚି । କିନ୍ତୁ ମୁଁ ତା'ପାଇଁ କିଛି କରି ପାରିନି । ତା'ର ଦାନ ମୋ ଉପରେ ଏତେ ବେଶି ଯେ ଭାବିଥିଲି ଶୋଭାକୁ ତା'ର ହାତରେ ଦେଇ ସବୁ ଋଣତକ ଶୁଝାଇ ଦେଇଥାନ୍ତି । ଦିନେ ଏହିକଥା ତାକୁ ଖୋଲି କହିଥିଲି ଓ ଶୋଭାର ଫଟଟାକୁ ପ୍ରକାରାନ୍ତରେ ଦେଖାଇଥିଲି । କିନ୍ତୁ ସେ ମତ ଦେବ ଦେବ ବୋଲି କହି ସମସ୍ତ ଗଡ଼ାଇଲା । ଏ ଭିତରେ ବି. ଏ. ପରୀକ୍ଷା ସରିଲା । ତା'ପରେ

ତାର ଆଉ କୌଣସି ଖବର ମୁଁ ଜାଣିନାହିଁ । ତା ଠିକଣା ମୁଁ ଭୁଲି ଯାଇଥିବାରୁ ଚିଠି ଖଣ୍ଡେ ବି ତା କତିକି ଦେଇ ପାରୁ ନାହିଁ । ତାର ଏଇ ଫଟ ଖଣ୍ଡିକ ଦେଖିଲେ ମୋ ମନରେ ଭାରି ଆନନ୍ଦ ଆସେ । ମନେହୁଏ ଯେପରି ସ୍ମୃତିର ଅଲିଭା ଦୀପାଳୀ ରୂପେ କଲେଜ ଜୀବନ ପରି ଦେବ ବି ମୋ ସାଙ୍ଗେ ସାଙ୍ଗେ ରହିଛି— ଦିନ ଆସିଲେ ତୋର ବି ତା ସଙ୍ଗରେ ପରିଚୟ ହେବ । ଦେଖିବ ମାଲି, କି ସୁନ୍ଦର ଲୋକ ଏଇ ଦେବ ତମର ଲାଜ ସଙ୍କୋଚ କ୍ଷଣିକରେ ଅପସାରିତ କରି ନିଜର କରିନେବ ।

ସ୍ୱାମୀଙ୍କର କଥା ଶୁଣି ମନ ହେଉଥାଏ କହି ଦେବାକୁ, ଦେବ ବାବୁଙ୍କୁ ମୁଁ ଭଲକରି ଚିହ୍ନିଛି —ତାଙ୍କର ସ୍ନେହ-ମୁରୁକିରେ ହୃଦୟରେ କେତେ ଚିତା ଲେଖିଛି । ମୁଁ ତାଙ୍କୁ ଚିହ୍ନିନ ତ ଆଉ କିଏ ଚିହ୍ନିଛି— ତମଠୁ ମୁଁ ତାଙ୍କୁ ବେଶି ଚିହ୍ନିଛି—ବେଶି ଜାଣିଛି । କିନ୍ତୁ ମୁହଁ ଖୋଲି କହିବାକୁ ସେ ସାହସ ମୋର ନ ଥାଏ । ତାଙ୍କର କଥା ଶୁଣି ମୋ ଜୀବନର ଅତୀତର ସ୍ମୃତି ସହିତ ମନର ମେଳଣ ବସିଲା । ଦେବ ବାବୁଙ୍କର ହସ ହସ ମୁହଁ— ପିଲାଳିଆ କଥା— ଗେଲ ପରିହାସ— ସବୁ ଭାବନାର ନଈ ସୁଅରେ ଭାସି ଭାସି ଗଲା ହୃଦୟ ସାଗର ଭିତରେ ନିଜକୁ ହଜାଇ ଦେଇ ଟିକେ ଶାନ୍ତି ଲୋଡ଼ିବାକୁ । କିନ୍ତୁ କାହିଁ ଶାନ୍ତି ? ଆଖିରୁ ମୋର ଲୁହ ଝରି ପଡ଼ିଲା ।

ସ୍ୱାମୀ ମୋତେ କୋଳକୁ ଟାଣିନେଇ କହିଲେ, ମାଲି ତମେ କାନ୍ଦୁଚ— ଫଟଟା ଭାଙ୍ଗି ଦେଇଚ ବୋଲି ! ଯିଏ ଭାଙ୍ଗି ଯାଏ, ସିଏ ଆଉ ଦୁଃଖ କଲେ, କାନ୍ଦିଲେ, କଣ ସଜାଡ଼ି ହୋଇଯିବ ? ମୋ ଆଖିରୁ ଲୁହ ପୋଛି ଦେଲେ । କହିଲେ, ଛିଃ ଆଉ କାନ୍ଦନା । ତାଙ୍କର ମୁହଁଟା ମୋ ଉପରକୁ ଝୁଲି ପଡ଼ିଲା । ମୁଁ କାହିଁକି କାନ୍ଦୁଥିଲି ସେ ବୁଝି ପାରିଲେ ନାହିଁ । ଖାଲି ମୋର ମନ ଭୁଲାଇବାକୁ ବାର ବାର ଚେଷ୍ଟା କଲେ ।



ନୂଆବୋଉ ! ନୂଆବୋଉ !!

କଣ କି ଶୋଭା !

ଦେଖିଲ, ଆମ ଘରକୁ କିଏ ଆସିଚନ୍ତି !

ଘର ଭିତରୁ ବାହାରି ଆସି ଅନାଇଲି, ଛୁଡ଼ା ହୋଇଚି ଗୋଟିଏ ସଜ ଗୋଲାପ ପରି ଢଳ ଢଳ ସୁନ୍ଦରୀ ଝିଅଟିଏ । ଉଛୁଳା ଯଉବନ ଫୁଟି ଉଠୁଚି ତା ଦେହରୁ । ବୟସ ଅଠର କି ଉଣେଇଶ ହେବ । ଝିଅଟି ଆସି ହସି ହସି ମୋ ଗୋଡ଼ତଳେ ମୁଣ୍ଡ ନୋଇଁଲା । ପଚାରିଲି, କିଏ ଏ ଶୋଭା ? ଶୋଭା କହିଲା, ଏ ପରା ଆମ ଗାଁ ରାମ ଦାଦାଙ୍କ ଝିଅ ଆଶା । ଶାଶୂ ଘରୁ କାଲି ବାହୁଡ଼ି ଆସିଚନ୍ତି । ଆଶା ଅପା ବାହା ହେଲା ଆଗରୁ ଆମ ଘର ଦିନେ ନ ମାଡ଼ିଲେ ଭାତ ରୁଚୁ ନ ଥିଲା । ବର୍ଷେ ହେଲା ବାହା ହୋଇ ସମସ୍ତଙ୍କୁ ପର କରି ଦେଲେଣି ।

ହସି ହସି ତାଙ୍କ ହାତ ଧରି ଘର ଭିତରକୁ ଟାଣି ନେଇ ଆସିଲା । କେତେ ସୁଖ ଦୁଃଖ କଥାର ଲହଡ଼ି ଛୁଟିଲା । ଆଶା— ଭାରି ଭଲ ଝିଅଟିଏ । କି ସୁନ୍ଦର, ପ୍ରାଣ-ଶିଉଳିଆ କଥାଟି ତାର । କହିଲି, ଆଶା ତମର ଏଇ ସୁନ୍ଦର ରୂପକୁ ନାଟି କେଡ଼େ ସୁନ୍ଦର ''ଆଶା'' । ଶୋଭା ହସି ହସି କହିଲା, ନୂଆବୋଉ, ଭାଇ ପରା ଏଇ ଆଶା ପାଇଁ ଦିନେ ପାଗଳ ହୋଇ ଯାଇଥିଲେ ! ଆଉ ଆଶାଅପା ବି ଭାଇଙ୍କି ଦଣ୍ଡେ ନ ଦେଖିଲେ ବଣା ହୋଇ ଯାଉଥିଲା । ଭାଇ ପରା ଦିନେ ଜିଦ୍ ଧରି ବସିଥିଲେ ଏଇ ଆଶାଅପାଙ୍କୁ ବାହା ହେବେ ବୋଲି । କିନ୍ତୁ କରଣ ଘର ପୁଅ ସହିତ ବ୍ରାହ୍ମଣ ଘର ଝିଅର ବାହାଘର ହେବ କିପରି ? ସମାଜପତିଙ୍କ କଠିନ ନିୟମର ଶାଣିତ ତରବାରିରେ ଆଶା ଅପା ଓ ଭାଇଙ୍କର ସ୍ନେହ ବଳି ପଡ଼ିଲା ।

ତା'ପରେ ଆଶା ଅପା ବାହା ହୋଇଗଲେ । ଭାଇ ବି ତମକୁ ବାହା ହେଲେ । କହିଲି, ସତେ—ତା'ହେଲେ ଆଶାଅପା ବି ତମ ଭାଇଙ୍କ ଆଶା ଉପବନରେ ଦିନେ ଫୁଟି-ଥିଲେ ଶୋଭା ହସି ହସି କହିଲା, ଖାଲି ଫୁଟିଥିଲେ କଣ, ତା ସଙ୍ଗେ ସଙ୍ଗେ ହସିଥିଲେ, ରସିଥିଲେ, ପୁଣି ଶେଷରେ ଦିନେ ଲୋଟିଥିଲେ । ଆଶା କହିଲା, ଶୋଭା ! ଫାଜିଲାମି ଆଜିଯାଏ ଛାଡ଼ିଲୁ ନାହିଁ ? ମୁହଁଟା ତା'ର ଲାଜରେ ରଙ୍ଗ ହୋଇଗଲା । କହିଲି, ଲାଜ କରୁଚ କି ଆଶା ଦେବୀ—ଲାଜ କଥା କଣ ବା ଇଏ ! ଏ ତ ଜୀବନର ନିରାଟ ସତ କଥା । ଆଶା କହିଲା, ନୂଆବୋଉ ଯେ ଯାଇଚି···ସେ କଥା ଆଉ ମନେ ପକାଇ ଆଲୋଚନା କରି ଲାଭ କଣ ? ପୁରୁଣା ଦରଦୀ ମିଶା କଥାଗୁଡ଼ାକ ଘାଣ୍ଟିଲେ ଖାଲି ମନ ଦୁଃଖ ସାର ହେବ ସିନା ! ହଁ ଲୋ ଆଶା, ଦୁନିଆରେ କିଏ କେତେ ଆଶା କରୁଚି—କିନ୍ତୁ ତା କଣ ସେ ପାଉଚି ! ଇମିତି ଅତୀତ ଜୀବନର କେତେ କଥା ସ୍ନେହ ମଧୁର ଆଲୋଚନା ପରେ ଆଶା ବିଦାୟ ନେଲା । କହିଲି, ଆସୁଥିବ ଆଶା ଅପା ! ସେ ହସି ହସି ହଁ ଭରି ଚାଲିଗଲେ ।

ରାତିରେ ଶୋଇଲାବେଳେ ସ୍ୱାମୀଙ୍କୁ ପଚାରିଲି, ଆଚ୍ଛା ରାମ ଦାଦାଙ୍କ ଝିଅ ଆଶାଙ୍କୁ କୁଆଡ଼େ ଭାରି ଭଲ ପାଉଥିଲ ? ସ୍ୱାମୀ ହସିଲେ—ମେଘର ଚୁଟ ପଣତ ତଳେ ଜହ୍ନ ଯେମିତି ସରାଗହୀନ ହସ ହସେ । କହିଲି, ତାଙ୍କୁ ବାହା ହେଲ ନାହିଁ କାହିଁକି ? ସେ ତ ମୋଠାରୁ ବେଶୀ ସୁନ୍ଦରୀ—ରୂପରେ ଗୁଣରେ । ସ୍ୱାମୀ କହିଲେ, ମାଲ ! ଜୀବନର ଏଇ ଅଙ୍କାବଙ୍କା ପଥରେ ଚାଲୁ ଚାଲୁ ମଣିଷ ବେଳେ ବେଳେ ପ୍ରକୃତିର ସୌନ୍ଦର୍ଯ୍ୟ ଭିତରେ ବି ଆତ୍ମହରା ହୋଇପଡ଼େ । ଇଚ୍ଛାହୁଏ, ଯେପରି ସେଇ ସୌନ୍ଦର୍ଯ୍ୟକୁ ପ୍ରାଣଭରି ଉପଭୋଗ କରିବାକୁ—କିନ୍ତୁ ସେ କଣ ତା ପାରେ ? ଅଦିନଆ ଝଡ଼ ବତାସ ଭିତରେ ସବୁ ଆଶା ତାର ଉଭାଇଯାଏ—ଖାଲି ବଞ୍ଚିରହେ ଗୁଡାକ ପଥର କରି ତା ଉପରେ କେଇଟା ସ୍ମୃତିର ଆଞ୍ଚୁଡ଼ା ଦାଗ । ପୁଣି ମଣିଷ ତାକୁ ଭୁଲିଯାଏ—ନୂଆ ପଥରେ ପୁଣି ଆଶା ଆସି ବାଟ କଢ଼ାଏ । କହିଲି, ଆଶାକୁ ବାହା ହୋଇଥିଲେ ମୋଠୁ ନିଶ୍ଚୟ ବେଶୀ ସୁଖୀ ହୋଇଥାନ୍ତ । ସେ କିଛି ଉତ୍ତର ଦେଲେ ନାହିଁ । ଖାଲି ମୁରୁକି ମୁରୁକି ହସିଲେ । ତାଙ୍କର ସେଇ ହସ ତଳେ ତଳେ ଉଙ୍କି ମାରୁଥିଲା ଅତୀତର ପରାଣଭରା ଗୋଟିଏ କରୁଣ ଛବି । ଫୁଲଟା ଫୁଟି ଯେତେବେଳେ ଗଛର ପାଦତଳେ ଲୋଟି-ପଡ଼େ···ମାଟି ସେତେବେଳେ ପଚାରେ—ଗଛର ଫୁଲ, ତୁ ଇମିତି ମୋ ଉପରେ ପଡ଼ି ନିଜର ସୁନ୍ଦର ଦେହଟାକୁ ଧୂଳି ଧୂସର କରୁଚୁ କାହିଁକି ? ଝରାଫୁଲ ସେତେବେଳେ କିଛି ଉତ୍ତର ଦେଇ ପାରେନା—ଖାଲି ପାଖୁଡ଼ାରେ ତାର ଲାଗି ରହିଥିବା ଫିକା ହସ ଟିକେ ସେ ଶେଷଥର ପାଇଁ ହସିଦିଏ । ଯେମିତି ଝରାଫୁଲ ହସ ପରି ସ୍ୱାମୀଙ୍କର ହସ ଦିଶୁଥିଲା ଫିକା, ମୁହଁଟା ସରାଗହୀନ ।

ମନ ଭୁଲାଇବାକୁ କଥା ବୁଲାଇ ସେ ଅନ୍ୟ କଥା ଆରମ୍ଭ କଲେ । କହିଲ, ଏତେ ଦୁର୍ବଳ ତମେ—ଅତୀତର କଥାଗୁଡ଼ା କହିବାକୁ ମୋ ଆଗରେ ଏଡ଼େ କୁଣ୍ଠାବୋଧ କରୁଚ ! ମୁଁ କଣ ତମର କେହି ନୁହେଁ ? ସେ ହସି ହସି କହିଲେ: ଦୁର୍ବଳ ମୁଁ ଏକା ନୁହେଁ ମାଲ—ଦୁନିଆର ଏଇ ପ୍ରତ୍ୟେକ ନର ନାରୀ ଦୁର୍ବଳ । ଅତୀତକୁ ସମସ୍ତେ ଘୋଡ଼ାଇ ବାଟ ଚାଲନ୍ତି । ଆଚ୍ଛା, ତମେ ତମର ଅତୀତ କଥା ମୋ ଆଗରେ ମନ ଖୋଲି କହି ପାରିବକି ? ତାଙ୍କ ପ୍ରଶ୍ନରେ ମୋ ହୃଦସ୍ପନ୍ଦନ ବିଚଳିତ ହୋଇ ଉଠିଲା । କିଛି କହି ପାରିଲି ନାହିଁ । ନିଦ ଆସିବା ଛଳନା କରି ଆଖି ବୁଜିଲି ।

ସ୍ୱାମୀଙ୍କର ଦୁଇମାସ ଛୁଟି ପୂରିଗଲା । ସେ ବାହୁଡ଼ି ଗଲେ କଟକ ରାଇଜକୁ, ପୁଣି ସେଇ ଧରାବନ୍ଧା ଅଫିସ ଜୀବନ ଭିତରକୁ । ଗଲାବେଳେ ଶୋଭାକୁ ମୋତେ କେତେ ସରାଗଭରା କଥା କହି ଯାଇଥିଲେ—ସେଇଆକୁ ଭାବି ଭାବି ଦିନଗୁଡ଼ା ମୋର ସରି ଯାଉଥିଲା—ଖାଲି ଗୋଟାଏ ପ୍ରାଣପୁଲକ ଭରା ଆଶା ଓ ଉଚ୍ଛ୍ୱାସରେ ।

ସ୍ୱାମୀ କଟକ ଗଲା ଦିନଠାରୁ ଶୋଭା ସାଙ୍ଗରେ ମୋର ଦିନଗୁଡ଼ା କଟିବାକୁ ଲାଗିଲା । ସବୁବେଳେ ତାର ସାଙ୍ଗରେ ଗପକରେ । ତାର ଅଳିଆ ବାଳକୁ କୁଣ୍ଡାଇ ସଜାଡ଼ିଦିଏ । ମୁଣ୍ଡରେ ସିନ୍ଦୁର ଟୋପା, ଆଖିରେ ସରୁ କଜଳ ରେଖାଟି ଟାଣି ଦେଇ କୁହେ, ଦେଖିନ ଶୋଭା କେଡ଼େ ସୁନ୍ଦର ଦିଶୁଚ ତମେ—ରାଜକୁମାରୀଟି ପରି । କେଉଁ ରାଜାପୁଅ ତମକୁ ବରଣମାଳା ଦେବ କେଜାଣି ? ଶୋଭା ହସେ—ପୂରିଲା ମୁହଁଟି ତାର ଅଭିମାନରେ ଫୁଲିଉଠେ । କୁହେ, ନୂଆବୋଉ ତୁମେ ଭାରି ଜଣେ । ମୁଁ କୁହେ, ମୁହଁକୁ ହାଣ୍ଡି ପରି କରୁଚ—ସତେ ଯେପରି ବାହା ହେବନି ଶୋଭା ! ଶୋଭା ଲାଜରେ ମୋ କୋଳରୁ ପଳାଏ ।

ପୁଣି ପରକ୍ଷଣରେ ଆସି ଚଳେ ବଳେ ମୋ କୋଳରେ ବସେ । ଘର କାମରେ ସାହାଯ୍ୟ କରେ । ଆଶା ବେଳେ ବେଳେ ଆସେ । ତିନିଙ୍କ ଭିତରେ କେତେ ଗପ ପଡ଼େ । ଶାଶୁ ଆସି ଚଢ଼ିଲେ ଆମ ତିନିଜଣିଆ ମେଳ ଯାଏ ଭାଙ୍ଗି ।

ଶୋଭା ବେଳେ ବେଳେ ମତେ କୁହେ, ନୂଆବୋଉ, ଭାଇ ଗଲାଦିନୁ ତମ ମୁହଁ କାହିଁକି ଶୁଖିଲା ଦିଶୁଚ—ଆଗର ସରାଗ ନାହିଁ । ତମେ ଭାଇଙ୍କ ସବୁବେଳେ ଖାଲି ଝୁରି ହେଉଚ । ଶୋଭା—ଛୋଟିଆ ନଣନ୍ଦଟି ମୋର । ସେ ବି ମୋ ମନର କଥା ବୁଝି ଲେଣି । ତାଙ୍କୁ କୋଳକୁ ଟାଣିଆଣି କୁହେ, ନାଁ ମ, ମୋ ମୁହଁ କାହିଁକି ଶୁଖିଲା ଦିଶିବ …ତମକୁ ସେମିତି ଦିଶୁଚ ନା । ସେ ହସନ୍ତି । କହନ୍ତି, ନୂଆବୋଉ ମୁଁ କଣ ପିଲାଟିଏ ହୋଇଚ—ମୋତେ ଭୁଲାଇ ଦେବ ? ତାଙ୍କ ସରାଗମିଶା କଥାରେ ଛୋଟିଆ ଲହଡ଼ିଟି

ମୋ ଆଶାନଈର ଅଡଡ଼ା ଉପରୁ ମାଟି କାଦୁଅ ପରି ଲାଗିଥିବା ମନର ବେଦନାଟିକ ଧୋଇଦିଏ । ଆଖି ଆଗରେ ଝୁଲୁଥିବା ଦୂର ଦିଗ୍‌ବଳୟର ନେଳିଆ ପରଦା ଉପରୁ ସ୍ୱାମୀଙ୍କର ହସ ହସ ମୁହଁ ମତେ ଯେପରି ଭାସି ଉଠୁଥାଏ ।

ମାସ ଗୋଟାଏ ପରେ । ସେ ଦିନ ମୁହଁସଞ୍ଜବେଳେ ଶୁଖିଲା ମୁହଁ କରି ଶୋଭା ଆସି କହିଲା, ନୂଆବୋଉ ଚଠି ଆସିଚି—ଭାଇଙ୍କ ଦେହ ଭାରି ଖରାପ । ବାପା କାଲି ସକାଳେ କଟକ ଯିବେ । ସ୍ୱାମୀଙ୍କ ଦେହ ଖବର ଶୁଣି ଅଜଣା ଭୟରେ ମୋ ଭିତରର ପତଳା ପରଦାଟା ଥରି ଉଠିଲା—ଝଡ଼ର ସୂଚନା ଆଗରୁ ଏଇ ମାଟି ଗୋଡ଼ି ଯେମିତି ଥରି ଉଠେ । ପଚାରିଲି, କଣ ହେଇଚି ଶୋଭା ?

ଭାଇଙ୍କି ଜର ।

ବାପାଙ୍କୁ କୁହ ମୁଁ ତାଙ୍କ ସାଙ୍ଗରେ ଯିବି । ବିଦେଶରେ ତାଙ୍କ ସେବା କିଏ କରିବ ଶୋଭା ! ଆଖିରୁ ମୋର ଲୁହ ଝରିପଡ଼ିଲା । ବେଦନାରେ ଭାଙ୍ଗି ପଡ଼ିଲା ସ୍ୱରରେ ଶୋଭା କହିଲା, ନୂଆବୋଉ କାନ୍ଦୁଚ । ଭାଇଙ୍କ ଦେହ କଣ ଭଲ ହେବନି କଣ ବା ହେଇଚି—ଜର ତ ! ସେ ଛାଡ଼ିଯିବ ନୂଆବୋଉ । ତା କଥାରେ ମୋ ମନ-ବୋଧ ହେଲାନାହିଁ । ସଞ୍ଜ ଅନ୍ଧାର ଚାରିଆଡ଼େ ସେତେବେଳକୁ ଘୋଟିଗଲାଣି । ମନେ ହେଲା, ସତେ ଯେପରି ମୋ ଜୀବନର ସବଗସୂର୍ଯ୍ୟକୁ କଳାବଉଦ ଘୋଟି ଯାଇ ଇମିତି ଅନ୍ଧାର ଘୋଟି ଆସୁଚି । ଶୋଭାକୁ ଧରି କାନ୍ଦି ଉଠିଲି ।

ବାପା କଟକ ଚାଲିଗଲେ । ତାଙ୍କର ଚିଠିକୁ ବୋଉ, ଶୋଭା ଓ ମୁଁ ଅନେଇ ରହିଲୁ । ମୁଁ ଖାଇବାକୁ ବସିଲେ ଭାତ ରୁଚେନା—ଉଠିଆସେ । ଶାଶୂ ଆସି କେତେ ବୁଝାନ୍ତି, ବୋହୂ, ପୁଅଦିହ କଣ ଭଲ ହେଇ ଯିବନି, ମା'ଟା ପରା—ଭୁ ଖା । ପୁଣି ଖାଇବସେ; କିନ୍ତୁ ଖାଇବି କଣ—ଆଖିର ଲୁହରେ ଭାତଥାଳି ଓଦା ହୁଏ । ଶୋଭା କେତେ ବୁଝାଏ—କୋଉଥିରେ ମନ ମାନେନା ।

ଦି'ଦିନ ପରେ ଚିଠି ଆସିଲା । ବାପା ଲେଖିଛନ୍ତି, ରବିର ଦେହ ଭଲଆଡ଼କୁ ଆସିଲାଣି । ତମେମାନେ ବ୍ୟସ୍ତ ହେବନି । ସେ ସାତ ଆଠ ଦିନ ଭିତରେ ସମ୍ପୂର୍ଣ୍ଣ ଭଲ ହେଇଗଲେ ମୁଁ ତାକୁ ସାଙ୍ଗରେ ନେଇ ଯିବି । ମନରେ ଟିକେ ଶାନ୍ତି ଆସିଲା । ଆଶାର ଆଲୁଅ ଜଳି ଉଠିଲା—ସେ ନିଶ୍ଚୟ ଭଲ ହେଇଯିବେ । ମନର ବେଦନା ଜଣାଇ କେତେ ଠାକୁରଙ୍କୁ ଡାକିଲି । ହୃଦୟର ସବୁ ବ୍ୟାକୁଳ ନିବେଦନ ତାଙ୍କର ପାଖରେ ଅଜାଡ଼ିଦେଲି ।

ଚାରିଦିନ ପରେ ବାପା ଫେରି ଆସିଲେ । ଶୋଭା ଦଉଡ଼ି ଯାଇ ପଚାରିଲା, ବାପା ତମେ ଏକଲା—ରବିଭାଇ କାହିଁ ? ବାପା ବସିପଡ଼ି ଭେ ଭେ ହୋଇ କାନ୍ଦି ଉଠିଲେ । କହିଲେ, ରବି ମୋର ନାହିଁ ମା, ସେ ଆମ ସମସ୍ତଙ୍କୁ ପର କରିଦେଇ କାଲି ରାତିରେ କଟକର ସେଇ ଖାନନଗର ମଶାଣିରେ ଶୋଇପଡ଼ିଛି । କାଠଯୋଡ଼ିର ଶୀତଳ ପବନରେ ସେ ଚିରଦିନ ପାଇଁ ଶୋଇବ ମା—ତା' ନିଦ ଆଉ ଭାଙ୍ଗିବ ନାହିଁ । ଶୋଭା କାନ୍ଦି ଉଠିଲା । ବୋଉ ସେ ପାଖ ଘରୁ ଦଉଡ଼ି ଆସି କାନ୍ଦିଉଠିଲେ । ମୁଁ କାନ୍ଦି କାନ୍ଦି କେତେବେଳେ ଅଜ୍ଞାନ ହୋଇ ପଡ଼ିଲି—ଜାଣେନା ।



ଭିକାରୀର ଶେଷ ସମ୍ବଳ ବାଡ଼ିଟା ହଜିଗଲା ପରି ନାରୀର ସର୍ବସ୍ୱ—ଯାହାକୁ ନେଇ ନାରୀ ଗର୍ବ ବୋଧକରେ, ସେ ଆଜି ମୋର ନାହିଁ । ଆଜି ମୁଁ ବିଧବା । ମୋ ମୁହଁ ଚାହିଁଲେ ପାପ ଲାଗିବ । ମା'ପରି ଯୋଉ ଶାଶୂ ମୋତେ ଆଦର କରୁଥିଲେ—ସିଏ ଆଜି ମୋ ମୁହଁକୁ ଅନାଉ ନାହାନ୍ତି । ଗାଁରେ ସମସ୍ତଙ୍କ କହୁ ବୁଲୁଚନ୍ତି, ସବା-ଖାଇଟା ଆସିଥିଲା ଯେ ବର୍ଷଟା ମାସ ନ ପୂରୁଣୁ ମୋ ପୁଅକୁ ଖାଇଲା ।

ଶୋଭାର ଆଗ ରୂପ ନାହିଁ । ସେ ମୋର ଦୁଃଖରେ ସବୁବେଳେ ଦୁଃଖୀ । ଦେଖିଲେ ହସିବେ କଣ ଖାଲି କାନ୍ଦନ୍ତି । ମୋର ଖାଇବା ନ ଖାଇବା ସମାନ । ସବୁବେଳେ ଖାଲି ବସି ବସି ଭାବେ, ଏ କଣ ହେଲା ! ଯୋଉ ନାଆରେ ଗୋଡ଼ ଦେଉଚି—ସେ ନାଆ କଣ ବୁଡ଼ି ଯାଉଚି ଦୁଃଖର ଅଥଳ ଦରିଆରେ ଭସାଇ ଦେଇ ! ମନର ସବୁ ଆଶା ତ ଜଳି ପୋଡ଼ି ପାଉଁଶ ହୋଇ ଯାଇଚି—ଆଉ ଏ ଗ୍ଲାନିର ଜୀବନଟା ଧରି ଲାଭ କଣ ? ଶୋଭା ଆସି ମୋ କୋଳରେ ଗୁଡ଼ି କରି ବସନ୍ତି । କୁହନ୍ତି ନୂଆବୋଉ ଖାଲି ଭାବି ଭାବି କଣ ଏମିତି ଜୀବନଟାକୁ ମାଟି କରିଦେବ ! କୁହେ, ଆଉ ଏ ଜୀବନ କଣ ଲୋଡ଼ା ଶୋଭା—ମରିଗଲେ ଯାଏ । ଶୋଭା କାନ୍ଦେ—ତା ଆଖିରୁ ଲୁହ ପୋଛୁ ପୋଛୁ ମୁଁ କାନ୍ଦେ ।

ଶାଶୂ ବେଳେ ବେଳେ ବଡ଼ା ଦୋଷରେ ମୋ ଉପରେ ସବୁ ଦୋଷ ଲଦି ଦେଉଥାନ୍ତି । କୁହନ୍ତି, ଲକ୍ଷ୍ମୀଛଡ଼ା ଝିଅ ଆସିଲା ଦିନଠାରୁ ମୋର ସବୁ ଅମଙ୍ଗଳ ଗୋଡ଼ାଉଚି । ମା'ଙ୍କ କଥାରେ କିଛି ଉତ୍ତର ଦେଇ ପାରେନା । ଭାବେ, ଏ ମୋର ଭାଗ୍ୟର ଫଳ । ଆଜି ମୁଁ ବିଧବା—ବିଧବାର ସବୁବେଳେ ସହିବାର ଅଛି ।

ଦି'ଦିନ ହେଲା ବାପାଙ୍କ ଘର ଜର । ଅନ୍ନ ଜଳ ବି ସ୍ପର୍ଶ କରି ନାହାନ୍ତି । ଶୋଭା ଓ ମୁଁ ଦୁହେଁ ବସି ଜଗି ରହୁଚୁ । ମା, ସେ ଘରୁ ମୋତେ ଦେଖେଇ ଦେଖେଇ କହୁଲେ, କୋଉଠୁ ଗୋଟାଏ ସବାଖାଇ ଆସିଚି ଯେ ସେ ସମସ୍ତଙ୍କୁ ଖାଇବ । କାହାରିକୁ ସେ ଛାଡ଼ିବ ନାହିଁ । ଶୋଭା ଉଠିଯାଇ କହିଲା, ବୋଉ ସବୁବେଳେ ତୁ ନୂଆବୋଉ ଉପରେ ଏମିତି ହେଉଚୁ କାହିଁକି ? ଝିଅ ଜନମ କରିଚୁ ନାଁ। ପରଝିଅ ବୋଲି ମନଇଚ୍ଛା ସବୁବେଳେ ଯା'ଇଚ୍ଛା କହୁଥିବୁ ? ମା'ପରି ତୁ—ମା' ନାଁ। ତୁ ପାଷାଣୀ ! ହଠାତ୍ ମା' ରାଗରେ ଜଳି ଉଠିଲେ । ଦଉଡ଼ି ଆସି ଶୋଭା ଗାଲରେ ଠୋ ଠୋ ଦି' ଚାପୁଡ଼ା ବସାଇ ଦେଲେ । କହିଲେ, ମୋ କଥାରେ ତୁ ଜବାବ ଦେବୁ ବାହାରିଯା ମୋ ଘରୁ ତୁ ଭାଉଜକୁ ନେଇ । ସେଆଡ଼େ ବସି ଭାଉଜ ସୁଆଗ ଦେଖାଇବୁ । ମୁଁ ଉଠି ଆସି ଦେଖିଲି ଶୋଭା କାନ୍ଦି କାନ୍ଦି ହୋଇ କାନ୍ଦୁଚନ୍ତି । ଗାଲରେ ପାଞ୍ଚ ଆଙ୍ଗୁଳି ଦାଗ ବସିଯାଇ ଲାଲ ଦିଶୁଚି । ତାଙ୍କୁ କୋଳକୁ ନେଇ ଲୁହ ପୋଛି ଦେଇ କହିଲି, ଶୋଭା ମା' ଯା କହୁଚନ୍ତି, ମୁଁ ସେଇଆ; ମୁଁ ଗୋଟାଏ ସବାଖାଇ । ତା' ନ ହେଲେ ତମ ଭାଇ କଣ ଇମିତି ମରି ଯାଇଥାନ୍ତେ ! ତୁମେ କାହିଁକି ମୋ ପାଇଁ ଏତେ ଦୁଃଖ ସହୁଚ—ମୁଁ ଏଘର ଛାଡ଼ି ଚାଲିଯାଉଚି । ମୁଁ ଆଉ ତମର କଷ୍ଟ ଦେଖି ପାରିବି ନାହିଁ···। "କୁଆଡ଼େ ଯିବ ନୂଆବୋଉ । ମୁଁ ତମ ସାଙ୍ଗରେ ଯିବି ?" ଶୋଭା କଥା ଶୁଣି ମୋ ଆଖିରୁ ଧାର ଧାର ଲୁହ ଛୁଟିଲା । ତାଙ୍କୁ କିଛି କହି ପାରିଲି ନାହିଁ ।

ସେଦିନ ଡାକରେ ଚିଠି ଦେଲି ବାପାଙ୍କ କତିକି, ମୋତେ ଆସି ଶୀଘ୍ର ଘରକୁ ନେଇଯାଅ—ନ ହେଲେ ବିଷ ଖାଇ ମରିବି । ଏଠି ଆଉ ମୁଁ ଘଡ଼ିଏ ବଞ୍ଚି ପାରିବି ନାହିଁ ।

ଦି'ଦିନ ପରେ ବାପା ଆସି ପହଞ୍ଚିଲେ ଗାଡ଼ି ନେଇ । ତାଙ୍କ କତିରେ କାନ୍ଦି କାନ୍ଦି ସବୁ ଦୁଃଖ, ଗୁହାରି ଜଣାଇଲି । ଶ୍ୱଶୁରଙ୍କ ଦେହ ଟିକିଏ ଭଲ ଆଡ଼କୁ ଆସିଥାଏ । ଦି' ମାସ ପରେ ବାପା ପୁଣି ମୋତେ ଛାଡ଼ି ଦେବାକୁ କହି ଶ୍ୱଶୁରଙ୍କଠାରୁ ଅନୁମତି ଆଣିଲେ । ଶାଶୁଙ୍କୁ ପଚାରିଲେ—ସେ କହିଲେ, ତମ ଝିଅକୁ ନେଇ ସବୁଦିନେ ଘରେ ରଖ—ଏଠିକି ଆସିବା ଦରକାର ନାହିଁ । ହତଭାଗୀଟା ତା ମୁହଁ ଚାହିଁଲେ ଯଶ ନାହିଁ । ଆସିଲାବେଳେ ଶୋଭା କାନ୍ଦି କାନ୍ଦି ଗୋଡ଼ତଳେ ପଡ଼ି କହିଲା, ନୂଆବୋଉ ତମେ ଆସିବ—ମୋତେ ଭୁଲିଯିବ ନି । ତାକୁ ବୁଝାଇ କହିଲି, ଶୋଭା ଭାଗ୍ୟରେ ଥିଲେ ଆସିବି—ନଇଲେ ସିଆଡ଼େ ମରିବି ଆଉ ଏ ପୋଡ଼ା ମୁହଁକୁ ଦେଖାଇବାକୁ ଆସିବି ନାହିଁ । କେତେ ବୁଝାଇ ଗାଡ଼ିରେ ବସିଲି । ଖଣ୍ଡେ ବାଟ ଆସିଲା ପରେ ଛାତି ଫାଙ୍କରୁ ପଛକୁ ଚାହିଁ ଦେଖିଲି ଶୋଭା ସିମିତି କରୁଣ

ବୃଷ୍ଟିରେ ମୋର ଆଡ଼େ ଚାହିଁ ରହିଥାନ୍ତି । ଭାଇ କାନ୍ଦି ମାଡ଼ିଲା । କାହିଁ କାହିଁ ହୋଇ ପିଲାଙ୍କ ପରି କାନ୍ଦି ଉଠିଲି ।

ଗାଡ଼ି ଚାଲିଲା କେତେ ଝାଳ, ଡିପ, ଧୂଳି ଧୂସରିଆ, କାଦୁଅ ବାଟ ଅତିକ୍ରମ କରି । ଦୂର ସେହି ଗଛ ଗହଳି ଫାଙ୍କରୁ ଚିର ପରିଚିତ ପଦ୍ମପୁର ଗାଁଟି ମୋର ସତେ ଯେପରି ଇଙ୍ଗିମାରି ମୋତେ ହାତ ପତାଇ ଡାକୁଥିଲା । କାହିଁ କେତେ ଦୂରରେ ଲୁଚିଗଲା ମୋର ଅତେକ ଦିନର ଶ୍ୱଶୁର ଘର । ପଛକୁ ଅନାଇଲେ ଝାଳ ଆଖିରୁ ଲୁହ ଝରେ । ଦୁର୍ବଳ ହୃଦୟକୁ ବୋଧ ଦେଇ ମନ ପୁଣି ନୂଆବାଟ କଢ଼ାଏ— ଆଖିରୁ ଲୁହ ପୋଛିବାକୁ ଇଙ୍ଗିତ ଦିଏ ।

ଘରେ ଆସି ଦେଖିଲାବେଳକୁ ବୋଉର ଅବସ୍ଥା ନାହିଁ । ସବୁବେଳେ ସେ ମୋର ଭାବନାରେ ଝୁରି ଝୁରି ଆଗ ଚେହେରା ତାର ନାହିଁ— କଣ୍ଟା ହୋଇଗଲାଣି । ମୋତେ ଦେଖି କେତେ କାନ୍ଦିଲା । ମୁଁ କାନ୍ଦି କାନ୍ଦି କହିଲି, ବୋଉ କାନ୍ଦନାରୁ କାହିଁକି, ମୋ ଭାଗ୍ୟ ତ ପୋଡ଼ା— ତୁ ଆଉ କାନ୍ଦିଲେ କଣ ହେବ ? କିଏ ଆଉ ମୋ ଭାଗ୍ୟକୁ କଣ ଫେରାଇ ଦେବ । ସେ ତଥାପି ବୁଝିଲା ନାହିଁ— ମୋତେ କୋଳରେ ପୂରାଇ ଘଣ୍ଟାଏ କାଳ କାନ୍ଦିଲା ।

ରାତିରେ ବୋଉ କଡ଼ରେ ଶୋଇଲାବେଳେ ଶାଶୂଙ୍କର ସ୍ନେହମାନ କଥାଗୁଡ଼ା ତାକୁ କହିଲି । କଥା ପଡ଼ୁ ପଡ଼ୁ ବୋଉ କହିଲା— ମାଳ, ଦେବ ଭାଇ ଆସିଛି ଆଜିକି ଆଠ ଦିନ ହେଲା । ମଝିରେ ଥରେ ମୋ କତିକି ଆସିଥିଲା— ତୋ କଥା ସବୁ ପଚାରି ବୁଝିଲା । ତୋ ଦୁଃଖ ଶୁଣି ସେ କହିଲା, ମାଉସୀ ଆମ ଦିହିଁଙ୍କ ଜୀବନରେ ଆଉ ଶାନ୍ତି ନାହିଁ । କେତେ ତୋ ପାଇଁ ବ୍ୟସ୍ତ ହୋଇ ଚାଲିଗଲା । ଦେବଭାଇ ଆସିଛନ୍ତି— ହଠାତ୍ ମୋ ହୃଦୟଟା ଅଜଣା ପୁଲକରେ ଥରି ଉଠିଲା । ପଚାରିଲି, ଏତେ ଦିନଯାକେ କୁଆଡ଼େ ଥିଲେ ? ବୋଉ କହିଲା, କଲିକତାରେ କୋଉ ଅଫିସରେ ଚାକିରି କରି ରହିଥିଲେ । ସୁରଭାଇ ଏ ଖବର ପାଇ ଯାଇ ନେଇ ଆସିଛନ୍ତି ।

ଅତୀତର ଦେବ ଭାଇଙ୍କ ସ୍ମୃତିଗୁଡ଼ା ମୋ ମନରେ ଗୋଟି ଗୋଟି ହୋଇ ଭାସି ଉଠିଲା । ପିଲାବେଳଠାରୁ ଆଜି ପର୍ଯ୍ୟନ୍ତ ଯେତେ ଯେତେ ସ୍ମୃତି ସବୁ ମନ ଗଗନରେ ମେଘ ପରି ଆସି ବାନ୍ଧିଲା, ନିଜକୁ ଲୁଚାଇ ଦେଲି ତାଙ୍କର ସ୍ମୃତିର ଉହାଡ଼ରେ । ଭାବୁ ଭାବୁ ରାତି ପାହିଲା ବୋଲି ଦୂରରେ କୁକୁଡ଼ା ରାବ ଶୁଭିଲା । ଅନାଇଲି ଚାରିଆଡ଼େ ଫରଚ୍ଛ ହୋଇ ଆସିଲାଣି । ନିଦ ହୋଇ ନ ଥାଏ ବୋଲି ଆଖିଟା ପୋଡ଼ୁଥାଏ ।

ଦିନ ପନ୍ଦରଟା ଗଡ଼ିଗଲା । ଖାଲି ଦେବଭାଇଙ୍କ ଭାବନାରେ ମନରେ ପରାଣ ବଢ଼ିବାରେ ଲାଗିଲା । ଭାରି ମନ ହେଉଥାଏ ଥରେ ତାଙ୍କୁ ଦେଖି ହୃଦୟ ଭିତରେ ତାଙ୍କର ମଳିନ ଛବିଟାକୁ ସରାଗରେ ପୋଛି ଦେବାକୁ । କିନ୍ତୁ ପରକ୍ଷଣରେ ଅଶାନ୍ତ ଆସି ଘାରୁଥିବା ମାରୁଥାଏ । ପୁଣି ଭାବୁଥାଏ, କାହିଁକି ଆଉ ଏ ପୋଡ଼ାମୁହଁକୁ ତାଙ୍କୁ ଦେଖାଇବି । ମୁଁ ତ ତାଙ୍କର ଆଦର୍ଶକୁ ଭୁଲି ମୋ ସୁଖ ଶାନ୍ତି ଆପେ ଆପେ ବାଛି ନେଇଥିଲି । ଏଣିକି ତାଙ୍କର ପଥ ସେ ବାଛନ୍ତୁ । ମୁଁ କାହିଁକି ପୁଣି ତାଙ୍କର ଜୀବନରେ ଅମଙ୍ଗଳ ଧୂମକେତୁ ପରି ଦେଖା ଦେବି । ନାଁ, ନା ସେ ସୁଖରେ ରହନ୍ତୁ । ସୁଖରେ ଘର ସଂସାର କରନ୍ତୁ । ପୁଣି ଭାବେ, ଦେବଭାଇ ସତେ କଣ ମୋତେ ଭୁଲି ଯାଇଛନ୍ତି । ଏତେ ଦିନ ହେଲା ମୁଁ ଘରକୁ ଆସିଲିଣି— ସେ କଣ ଜାଣନ୍ତି ନାହିଁ । ଭୁଲରେ ଥରେ ବି ମାଲି କପରି ଅଛୁ ପଚାରିବାକୁ ଆସୁ ନାହାନ୍ତି । ଦିନ ଯାଏ— ରାତି ଆସେ, ରାତି ପାହେ— ହୁଏ ସକାଳ । କିନ୍ତୁ ମୋ ଭାବନାର ଦିନ ରାତି, ସକାଳ ସଞ୍ଜ ସବୁ ସମାନ ।

ସେ ଦିନ ସଞ୍ଜବେଳେ ବାପା ଟିଉସନରୁ ଫେରି ନ ଥାନ୍ତି । ବୋଉ କଣ ଗୋଟାଏ କାମରେ ଯାଇଥାଏ ଗୋପାଳ ଦାଦାଙ୍କ ଘରକୁ । ଏକଲା ଭଲ ଲାଗୁ ନ ଥାଏ । ଦିନ ରତ ରତ ହେଉଥାଏ— ଚୁଲି ଲଗାଇଲି । ଘୋଷେଇବାସ ବି ସଞ୍ଜ ପହରକୁ ସରିଗଲା ।

ଶୁକ୍ଳପକ୍ଷ ରାତି । ରୂପେଲି ଆଲୁଅରେ ମେଘଗୁଡ଼ା ଭାସି ବୁଲୁଥାଏ । ଜହ୍ନଆଲୁଅ ଆସି ଆମ ଦୁଆରେ ମୂର୍ଚ୍ଛିତ ହୋଇ ଶୋଇ ପଡ଼ିଥାଏ । ତାରାଫୁଲ ଖଞ୍ଜା ସରଗ ଚାନ୍ଦୁଆ ତଳେ ଦୁଆର ମଣ୍ଡପରେ ମୁଁ ଶୋଇ ଶୋଇ ଭାବୁଥାଏ— ମୋର ନିତିଦିନିଆ ସରାଗହୀନ ଭାବନା ।

କିଏ ଡାକିଲା ମାଲି । ଅନାଇଲି, ଦେବଭାଇ । ଉଠି ଛିଡ଼ା ହେଲି— ସେ ଆସି ଦୁଆରେ ଛିଡ଼ା ହେଲେ । ପଚାରିଲେ, ମଉସା ମାଉସୀ ନାହାନ୍ତି ? କହିଲି, ନାଁ । ସେ କହିଲେ ତୋ ଆସିବା ମୁଁ କାଲି ଜାଣିଲି ମାଲି । ତୋତେ ଦେଖିବାକୁ ମନଟା ଭାରି ଛଟପଟ ହେଲା— ଚାଲି ଆସିଲି । କହିଲି— ଛିଡ଼ା ହେଲ କାହିଁକି ଦେବ ଭାଇ, ବସ । ସେ ବସି ପଡ଼ିଲେ । ଦେଖିଲି ତାଙ୍କର ଆଗ ରୂପ ନାହିଁ । ବେଦନାର ଗ୍ଳାନିରେ ତାଙ୍କ ମୁହଁଟା ସତେ ଯେପରି ମ୍ଳାନ— ନିସ୍ତେଜ । ପଚାରିଲି, ଦେବଭାଇ ତମ ରୂପ ଇମିତି କାହିଁକି ହେଇଚ । ସେ ହସିଲେ । କହିଲେ, ତୋ ରୂପଟା କୋଉ ଏବେ ଭଲ ଅଛି । କହିଲି, ମୁଁ ତ ଗୋଟାଏ ହୀନକପାଳୀ— ମୋର ସବୁ ସୁଖ ସରି ଯାଇଚି । ତମର କଣ ହେଇଚି— ତମର ତ ସୁଖର ଦିନଗୁଡ଼ା ଆସୁଚି ଦେବ ଭାଇ । ବାହା ହେବ— ଘର ସଂସାର କରିବ ।

ସେ ହସିଲେ, ବୁଡ଼ି ଯାଉଥିବା ଜହ୍ନର ଜୀବନ ନଥିବା ହସପରି । କହିଲେ, ମାଳ, ଏ ଯାଏ ମୋତେ ଚିହ୍ନି ପାରିଲୁ ନାହିଁ । ଜୀବନରେ ଯାକୁ ମୁଁ ଥରେ ଭଲ ପାଇଛି —ତା ଛଡ଼ା ଅନ୍ୟ କାହାକୁ ମୁଁ ଭଲ ପାଇବି— ଏ ଧାରଣା ତୋର ଭୁଲ । ପଚାରିଲି— ଦେବ ଭାଇ, ତମେ କଣ ବାହା ହେବନି— ଇମିତି ଜୀବନଟାକୁ ଗୋଡ଼ ମାଡ଼ି ପରି ଅବହେଳା କରି ଫିଙ୍ଗିଦେବ ଦୂରକୁ ମୋ ରାଣ— ଦେବ ଭାଇ, ତମେ ବାହା ହୁଅ । ତମର ସୁଖ ଦେଖିଲେ ମୁଁ ହେଲେ ଟିକିଏ ଶାନ୍ତି ପାଇବି । ମୋ ଜୀବନର ଯୋଉ ଶାନ୍ତିଟିକି ହଜାଇ ଦେଇଛି··· ସେ ଟିକକ ତମ ସୁଖ ଭିତରୁ ମୁଁ ଆଉ ଥରେ ପାଇ ପାରନ୍ତି । ସେ କହିଲେ, ମାଳ ମୁଁ ଯଦି ବାହା ହୁଏ··· ତେବେ ପୁଣି ତୋରି ସାଙ୍ଗରେ ବାହା ହେବି ; ନ ହେଲେ ନାହିଁ । ତାଙ୍କ କଥା ଶୁଣି ମୋ ଦେହରୁ ସରସର ଝାଳ ବୋହିଗଲା । ପଡ଼ିଏ କାଳ ମୋ ମୁହଁରୁ କଥା ବାହାରିଲା ନାହିଁ । ପଚାରିଲେ, ମାଳ ତୋର ଇଚ୍ଛା କଣ ? ମନ ଖୋଲି ତୋ ଅନ୍ତରର କଥା ମୋତେ ଆଜି କହିଲୁ ! ପାଟିରୁ ବାହାରି ପଡ଼ିଲା, ଦେବ ଭାଇ ମୁଁ ପରା ବିଧବା ସେ କହିଲେ, କିଏ କହୁଛି ତୁ ବିଧବା ? ଗୁଡ଼ାଏ ମିଛ ଖେଳ ଭିତରେ ତୋ ଜୀବନଟା ଇମିତି ନଷ୍ଟ ହେଇଯିବ ! ଜୀବନର କ'ଣ ମୂଲ୍ୟ କିଛି ନାହିଁ ! ନାଁ ମାଳ, ପୁଣି ଥରେ ତୋର ବାହାଘର ହେବ । ତାଙ୍କ କଥାର କିଛି ଉତ୍ତର ଦେଇ ପାରିଲି ନାହିଁ । ସେ ଉତ୍ତେଜନାରେ ଆଡ଼ୁ ଯାଡ଼ୁ ବକିବାକୁ ଲାଗିଲେ । କେତେବେଳେକେ କହିଲି, ଦେବ ଭାଇ ରାତି ବହୁତ ହେଲାଣି— ଯାଅ । ସେ ଉଠିଗଲେ । ମନରେ ପୁଣି ଏକ ନୂଆ ଆଶା ନାଚି ଉଠିଲା ।

ମୋ ବାପା ବୋଉଙ୍କୁ ଦେବ ଭାଇ ମୋତେ ବାହା ହେବା କଥା ପରିଷ୍କାର ଭାବରେ କହିଲେ । ବାପା ମୋତେ ପଚାରିଲେ, ମାଳ ତୋର ଇଚ୍ଛା କଣ ? କିଛି କହିଲି ନାହିଁ— ଖାଲି କାନ୍ଦିଲି । ସେ ମୋତେ କୋଳକୁ ଟାଣି ନେଇ କହିଲେ, ମାଳ ତୋ ଜୀବନଟାକୁ ଇମିତି ନଷ୍ଟ କରି ଦେବାକୁ ମୁଁ ଚାହେଁନା । ଦେବ ସାଙ୍ଗରେ ତୋର ସୁଖର ସଂସାର ପୁଣି ଦିନେ ହସି ଉଠୁ··· ଏହି ମୋର କାମନା ।

ଦେବ ଭାଇଙ୍କ ସହିତ ମୋର ବାହାଘର ପ୍ରସ୍ତାବରେ ବୋଉ ବି ଭାରି ଖୁସି । ମା' ସେ··· ଜନମ କରି, ଝିଅ ମନ କଥା— ଝିଅର ସୁଖ ଶାନ୍ତି ଯଦି ନ ଦେଖିବ— ତେବେ ସେ କି ମା !

ଦେବଭାଇଙ୍କ ସାଙ୍ଗରେ ମୋର ପୁଣି ବାହାଘର ପ୍ରସ୍ତାବରେ ଗାଁରେ କେତେ ଜନରବ ଉଠିଲା । ତୁଣ୍ଡ ବାଇଦ ସହସ୍ର କୋଶ । କିଏ କେତେ ରକମ ଖରାପ ଅର୍ଥରେ କହିବାକୁ ଲାଗିଲେ । କିନ୍ତୁ ସେ ସବୁକୁ କାନ ନ ଦେଇ ଦେବଭାଇ

ମୋତେ ବାହା ହେବେ ବୋଲି ଦୃଢ଼ପ୍ରତିଜ୍ଞ ହେଲେ । ସୁର ଭାଇ, ନୂଆବୋଉ, ମାଉସୀ ସମସ୍ତେ ଦେବ ଭାଇଙ୍କ ସପକ୍ଷରେ ରହିଲେ । କିନ୍ତୁ ଏକା ଟଳିଲେ ନାହିଁ ବଳି ମଉସା, ଦେବ ଭାଇଙ୍କ ବାପା । ସେ କହିଲେ, ମୋ ବୃଦ୍ଧଆଦର ଇଜ୍ଜତରେ କାଳି ଦେଇ ମୁଁ ବିଧବା ସ୍ତ୍ରୀକୁ ପୁଣି ବୋହୂ କରି ଆଣିବି ନାହିଁ । ମୋ ଘରର ଲକ୍ଷ୍ମୀ ଚାଲିଯିବ । ଦେବର ଇଚ୍ଛା ତ ସେ ଅନ୍ୟ କୁଆଡ଼େ ଯାଇ ବାହା ହେଉ । ସେଇଆଡ଼େ ରହୁ— କିନ୍ତୁ ଏ ଘରେ ତା'ର ସ୍ଥାନ ନାହିଁ ।

ଶେଷରେ ସେଇଆ ହେଲା । ଦେବଭାଇ ମୋତେ ନେଇ କଟକରେ ସବୁଦିନେ ରହିବାକୁ ସ୍ଥିର କଲେ । କଟକ ଆସିବା ଦିନ ଠିକ୍ ହେଲା । ମାଉସୀ, ନୂଆବୋଉ, ସୁର ଭାଇ, ବାପା, ବୋଉ ସମସ୍ତେ ଆମକୁ ଗାଁ ମୁଣ୍ଡରେ ପାଛୋଟି ଦେଇ ଗଲେ । ବଳଦ ଗାଡ଼ିଟା ଚାଲିଲା ରେଳ ଷ୍ଟେସନଆଡ଼େ । ଆସିଲାବେଳେ ନୂଆବୋଉଙ୍କ କଥା କେଇପଦ ଅବିରତ କାନରେ ବାଜି ଯାଉଥିଲା— ମାଳି, ତମ ଦିହିଙ୍କ ମିଳନରେ ଆଜି ମୁଁ ଭାରି ଖୁସି । ପାଖରେ ନ ପାଇଲେ ବି ଦୂରରେ ଥାଇ ତମର ସୁଖର କଳ୍ପନା ଛବି ମୋତେ ସବୁଦିନେ ଶାନ୍ତି ଦେବ । ଯାଅ— ହସି ହସି ଜୀବନର ନୂଆ ସଂସାର ଗଢ଼ । ମୋତେ ଭୁଲି ଯିବନି । ଭଲ ମନ୍ଦ ଖବର ଲେଖି ବରାବର ଚିଠି ଦେବ । ଦରକାର ହେଲେ ଟଙ୍କା ପଇସାର ସାହାଯ୍ୟ ନେଉଥିବ । ଦେବର ଯତ୍ନ ନେବ । ଏତେ ଆଶାରେ ଯା'କୁ ହରାଇ ପୁଣି ପାଇଚ— ତାକୁ ଭୁଲିରେ ବି ଅବହେଳା କରିବ ନାହିଁ ।



କଟକରେ ସେ ଦିନ ପହଞ୍ଚି ଦେବଭାଇଙ୍କର ଜଣେ ବନ୍ଧୁଙ୍କ ବସାରେ ଦିନ ଦିନ ରହିବା ପରେ ରାଣୀହାଟରେ ଗୋଟିଏ ଭଡ଼ାଘର ମାସକୁ ତିରିଶ ଟଙ୍କା ଭଡ଼ାରେ ଠିକ୍ ହେଲା । ନୂଆବସାରେ ଆସି ରହିଲୁ ।

ପ୍ରଥମ ଦିନ ରାତିରେ । ଖାଇପିଇ ଦେବଭାଇ ଆଗ ଶୋଇବାକୁ ଆସିଲେ । ମୁଁ ତାଙ୍କ ଅଧଘଣ୍ଟା ପରେ ଆସିଲି । ଦେଖିଲି, ଦେବଭାଇ ନିଦରେ ଶୋଇ ପଡ଼ିଲେଣି । ବିଛଣାଟା ଏକାଠି ପରା ହୋଇଥିଲା । ତାଙ୍କ କଡରେ ଶୋଇବାକୁ କାହିଁକି ଭାରି ଲାଜ ମାଡିଲା । ଅଲଗା— ତାଙ୍କଠୁ ଟିକିଏ ଦୂରରେ ତଳେ ମୁଁ ଶୋଇ ପଡ଼ିଲି । ବତିଟା ମିଟିମିଟି ଜଳୁଥାଏ ।

ରାତି ସେତେବେଳକୁ କେତେ ହେଲାଣି କେଜାଣି ; ଦେବଭାଇ ଡାକିଲେ, ମାଳ ! ତଳେ ଶୋଇଚୁ କାହିଁକି ? —ବିଛଣାକୁ ଆ । ସେ ମୋ ହାତଧରି ଟାଣିନେଲେ । ଲାଜରେ ମୁହଁଟାକୁ ମୁଁ ଓଢ଼ଣା ତଳେ ଲୁଚଉଥାଏ । ମୋତେ ବିଛଣା ଉପରେ ଶୋଇ ଦେଇ କହିଲେ, ମାଳ ! ଆଜି ପରା ଆମର ପ୍ରଥମ ରାତି—ମଧୁଶଯ୍ୟା ! ଆଜି ପରା ରାତିରେ କିଏ କଣ ଦୂରେଇ ଶୁଏ ? ମୁଁ ମୁରୁକି ହସିଲି— କିଛି କହି ପାରିଲି ନାହିଁ । ସେ ମୋତେ ପାଗଳ ପରି ଟାଣି ନେଲେ କୋଳକୁ । ବାର ବାର ଚୁମ୍ବନ କରି ଅଜାଡ଼ି ଦେଲେ ତାଙ୍କର ସବୁ ସରାଗ··· ସମ୍ପଦତକ ମୋର କଡରେ ।

ଅଜଣା ଆନନ୍ଦରେ ଜୀବନ ବୀଣା ମୋର ଗାଇ ଉଠିଲା ମିଳନର ଛନ୍ଦ । ସପନ କଥା ସତ ହେଲା ।—ଜୀବନ ହେଲା ସାର୍ଥକ । ଦେବଭାଇ ସାଙ୍ଗରେ ମୋର

ଲୋକ ଦେଖାଣିଆ ବାହାଘର ନ ହେଇ ଇମିତ ଗୋଟିଏ ନଗ୍ରଛିଆ ରୀତରେ ଜୀବନ ଛନ୍ଦ ହେଇଗଲା ଗୋଟିଏ ବୃକ୍ଷରେ ଦୁଇଟି ଲତା ପରି ।

ତା' ଆରଦିନ ଦେବଭାଇ ଗୋଟାଏ ଖଟ, ଆଲମିରା, ଟେବୁଲ, ଚେୟାର ଘରର ସାଜସଜା ପାଇଁ ଯାବତୀୟ ଉପକରଣ କିଣି ଆଣିଲେ । ଆସିଲାବେଳେ ତାଙ୍କ କଡରେ ଟଙ୍କା ଥିଲା ପାଞ୍ଚ ଶହ । ଘରେ ନୂଆବୋଉ, ମାଉସୀ, ସୁରଭାଇ ପ୍ରଭୃତି ଦେଇଥିଲେ । ସେହି ଟଙ୍କାକୁ ଦେବ ଭାଇ ପାଣି ପରି ଖର୍ଚ୍ଚ କରିବାକୁ ଲାଗିଲେ । ଆଜି ମୋ ପାଇଁ ଶାଢ଼ୀ, ବ୍ଲାଉଜ ତ କାଲି ମୋ ପାଇଁ ସ୍ନୋ-ସାବୁନ, ତେଲ-ଅତର । କୋଉ ଦିନ କୋଉ ଗହଣା । ଇମିତ ମୋତେ ସନ୍ତୁଷ୍ଟ କରିବା ପାଇଁ ସେ ନିଜକୁ ଭୁଲିଗଲେ ।

ଦିନେ ତାଙ୍କୁ ପଚାରିଲି, ଇମିତ ଟଙ୍କାତକ ଖର୍ଚ୍ଚ କରୁଚ— ସରିଗଲେ ପୁଣି ଚଳିବା କମିତ ? ସେ ହସିଲେ । କହିଲେ, ସେ ବେଳ ତ ଅଛି । ଚାକିରୀବାକିର ଗୋଟାଏ ତ ଯେ କୌଣସିମତେ କରିବାକୁ ହେବ ମାଲ ନଇଲେ ଅନ୍ୟ ପନ୍ଥା ନାହିଁ ।

ସତକୁ ସତ ଦି'ଟା ମାସ ପରେ ଟଙ୍କାତକ ସରି ଆସିଲା । ମୋ କହିବା ଆଗରୁ ଚାକିରୀ ପାଇଁ ତାଙ୍କ ମୁଣ୍ଡ ଘୂରିଗଲା । ନଇତ ସକାଳୁ ଗଣ୍ଡେ ଖାଇ ଦେଇ ସେ କୁଆଡ଼େ ଯାଆନ୍ତି— ବୁଲି ବୁଲି ସଞ୍ଜବେଳକୁ ଫେରନ୍ତି । ମୁହଁଟା ତାଙ୍କର ଶୁଖି ଯାଇଥାଏ । ମୋତେ ଦେଖିଲେ ଶୁଖିଲା ମୁହଁରେ ହସର ସରୁ ରେଖା ଟାଣି ଆଡ଼ୁସାଡ଼ୁ କେତେ କଥା କହନ୍ତି । ଅଭିମାନରେ ମୁଁ କଥା କୁହେନା । ସେ ମୋତେ କୋଳକୁ ଟାଣି ନିଅନ୍ତି ଜବରଦସ୍ତି । ତାଙ୍କର ସ୍ନେହର ସ୍ରୋତରେ ମୋର ଅଭିମାନର କୁଟାଟିକ ଭାସି ଯାଏ ଖେଳ ଖେଳ । ପଚାରେ, ଇମିତ ଆଡ଼େସାଡ଼େ ବୁଲି ନ ଖାଇ ନ ପିଇ ନିଜ ଦେହକୁ ହନ୍ତସନ୍ତ କରିମୋ ମନରେ ଦୁଃଖ ଦେବ କେତେ ଦିନ ? ମୁଁ କଣ ଆସିଥିଲି ତମର ଏଇ ଶୁଖିଲା ମୁହଁ ଦେଖିବାକୁ ? ସେ ହସନ୍ତି । କହନ୍ତି, ମାଲ, ଟଙ୍କାତକ ସରି ଆସିଲାଣି— ପୁଣି ତ ଗୋଟାଏ କିଛି ବ୍ୟବସ୍ଥା କରିବାକୁ ହେବ । ବାପା ତ ଘରୁ ବାହାର କରିଦେଲେ । ସବୁ ଦିନ ପାଇଁ ଏଇ କଟକ ମାଟିକୁ ଘର କରି ତ ପଡି ରହିବାକୁ ହେବ । ଚାକିରୀ ଗୋଟିଏ ମିଳିଲେ ତେଣିକି କିଏ ଦେହ ପ୍ରତି ଆଉ ଅଯତ୍ନ କରିବ ?

ତାଙ୍କ କଥା ଶୁଣିଲେ ହୃଦୟଟା ମୋର ଯାଣ୍ଡି ଚକଟି ହୁଏ । କୁହେ, ମୋରି ପାଇଁ ସିନା ଏତେ ଦୁଃଖ ଯନ୍ତ୍ରଣା ସହିବାକୁ ପଡ଼ୁଚି—ମୁଁ ମରିଗଲେ ସବୁ ଯନ୍ତ୍ରଣାରୁ ଛୁଟି

ପାଉଥାନ୍ତି । ମୋ କଥା ଶୁଣିଲେ ତାଙ୍କ ଆଖି ଲୁହ ଛଳ ଛଳ ହୋଇ ଉଠେ । କୁହନ୍ତି, ମାଲ ! ତୁ କଣ ମୋ ଜୀବନକୁ ନିଜ ହାତରେ ଜାଳି ପୋଡ଼ି ଦେବାକୁ ଭଲ ପାଉ ? ଇମିତିକା କଥା କହିବାକୁ ତୋର ତୁଣ୍ଡ ଲେଉଟୁଚି କପରି ! ତାଙ୍କ ଆଖିରେ ଲୁହ ଦେଖି ମୋ ଦେହରୁ ରକ୍ତ ଶୁଖିଯାଏ ଗୋଟାଏ ଅଜଣା ଭୟରେ । ତାଙ୍କର ଗୋଡ଼ ଧରି କୁହେ, ମତେ କ୍ଷମା କର । ତାଙ୍କ ଲୁହଧୂଆ ଆଖିରେ ଆନନ୍ଦର ଆଭା ଫୁଟି ଉଠେ । ମୋତେ ଉଠାଇ ନେଇ ଭିଡ଼ି ଧରନ୍ତି କୋଳରେ । ମୁହଁରେ ତାଙ୍କର ତାତିଲା ପରଶ ଘନ ଘନ ବାଜେ ।

କେତେ ଚେଷ୍ଟା କରି ମାସକ ପରେ ଗୋଟିଏ ଘରୋଇ ଅଫିସରେ କିରାଣୀ ଚାକରୀଟିଏ ମିଳିଲା । ମାସକୁ ଦେଢ଼ଶହ ଟଙ୍କା ଦରମା । ସବୁ ଦୁଶ୍ଚିନ୍ତାରୁ ତାଙ୍କୁ ଛୁଟି ମିଳିଲା । ଅଭାବ ଅସୁବିଧାର ଧକ୍କା ଆମକୁ ଆଉ ଜଣା ଗଲା ନାହିଁ । ସେହି ଟଙ୍କାରେ ସୁରୁଖୁରୁରେ ଆମର ଦିନଗୁଡ଼ାକ ଗଡ଼ି ଚାଲିଲା ଧୀରେ ଧୀରେ— ପବନ ପରି ହାଲୁକା ଗତିରେ ।

ସେ ରୋଜ ଦଶଟାବେଳେ ଅଫିସକୁ ଯାଆନ୍ତି । ଅଫିସକୁ ଗଲା ପରେ ମୋତେ ଭାରି ଏକୁଟିଆ ଲାଗେ । କିଛି ଭଲ ଲାଗେନା । ପଡ଼ୋଶୀ ରାମହରି ବାବୁଙ୍କ ଘରେ ଯାଇ ବେଳେ ବେଳେ ସମୟ କାଟେ । ବେଳେ ବେଳେ ଘରେ ଏକୁଟିଆ ବସିଲାବେଳେ ଅତୀତର ହଜିଲା ସ୍ମୃତିଗୁଡ଼ାକୁ ଭାବନା ରାଇଜରେ ମନ ଖୋଜି ଖୋଜି ବୁଲେ । କରୁଣମିଶା ଅତୀତ ଛଳ ଛଳ ହୋଇ ଆଖି ଆଗରେ ନାଚିଉଠେ । ସ୍ୱାମୀଙ୍କ ସହ ଅତିେଇ ଦିନର ସଂସାର, ଶୋଭାର ସ୍ନେହ, ଗାଁ ମାଟିର ଟିକିନିଖି କଥା, ଝରଣା, ନୂଆବୋଉ··· ସମସ୍ତଙ୍କର ସୁଆଦ ମିଶା କ୍ଷଣିକ ସ୍ମୃତି । ମନ ପରାଣ ଲାଗେ । ହୃଦୟ ବୀଣା ଗାଇ ଉଠେ ଦରଦୀ ସୁରରେ—ସତେ ଯେପରି ଜୀବନ ତାର ଛିଡ଼ି ଯାଇଚି ଅତୀତର ଝଡ଼ ବତାସ ଭିତରେ । ଅଫିସରୁ ସେ ଫେରି ଆସି କେତେ-ବେଳେ ମୋ ପାଖରେ ଛିଡ଼ା ହୋଇ ପଚାରନ୍ତି, ମାଲ କଣ ଭାବୁଚୁ ଏତେ ? ତାଙ୍କୁ ଦେଖି ଭାବନାର ଦୁର୍ଯୋଗ ଭିତରେ ମନହରଣୀ ପଥ ପାଏ । ହସି ହସି କୁହେ, ତମରି କଥା ଭାବୁଥିଲି । କାହିଁକି ଆଜି ଫେରୁ ଫେରୁ ଏତେ ଡେରି ହେଲାଣି । ସେ ଓଠରେ ହସର ମୁକୁତା ଝରାଇ ମୋ କତିରେ ବସି ପଡ଼ନ୍ତି—ଟାଣି ନିଅନ୍ତି କୋଳ ଭିତରକୁ । ତାଙ୍କର କୋଳରେ ଶୋଇ ଶୋଇ ମୁଁ ଅନୁଭବ କରେ, କେତେବେଳେ ବସନ୍ତ ରାଇଜ ମଳୟ ରାଜାପୁଅ ଆସି ମୋ ମନର ନିଦ୍ରିତ ପ୍ରୀତି-କଳିକୁ ଚେତନା ଦେଇ ସବୁ ପରାଣ ପୋଛି ଦେଲାଣି ।

ଦିନେ ଦିନେ ପଡ଼ିଶା ଘର ରାମହରିବାବୁଙ୍କ ସ୍ରେଷ୍ଟ ପୁଅଟିକୁ କୋଳରେ ଧରି ସେ ମୋତେ ପଚାରନ୍ତି, ମାଲ ତୋର ଇମିତି ଟିକି ପୁଅଟିଏ କେବେ ହେବମ ?

ଲାଜରେ ମୋ ମୁହଁ ଲାଲ ପଡ଼ିଯାଏ । ପଳାଇ ଆସେ ଅନ୍ୟ କାମର ବାହାନା କରି । ତାଙ୍କ ଓଠରେ ଫୁଟିଉଠେ ହସ—ଉଷାର ସ୍ନିଗ୍ଧ କମନୀୟ ଶାନ୍ତ ଛବି ପରି ।

ଦୁ' ମାସ ପରେ ମୋ ଗର୍ଭରେ ସନ୍ତାନ ରହିଲା । ସେ ମୋତେ ହସି ହସି ପଚାରନ୍ତି, ମାଲ ଏଥର କଣ ହେବ କହିଲ—ପୁଅ ନା ଝିଅ ? ମୁଁ ଲାଜରେ କିଛି ନ କହି ତାଙ୍କ କଥାରୁ ପଳାଇ ଯିବାକୁ ବସେ । ସେ ମୋ ଲୁଗା କାନିଟା ଧରି ପକାଇ ଅଟକାଇ ଜିଦ୍ କରନ୍ତି । ତେବେ ଯାଇ ତାଙ୍କ ମନଟା ଶାନ୍ତ ହୁଏ ।

ସରଗ ଦରିଆରେ ଦୁଇଟି ଚଢ଼େଇ ପରି ଆମେ ଦୁହେଁ ଦୁନିଆ ଦରିଆରେ ଭାସି ଚାଲିଲୁ ଖାଲି ଶାନ୍ତିର ମହକ ଉଚ୍ଛୁଳା ସମୀର ଦୋଳାରେ ହସି ହସି ।

ଆଠ ମାସ ପରେ । ସେ ଦିନ ରାତି ଅଧ । ମୁଁ ନିଦରେ ଶୋଇ ପଡ଼ିଛି—ଚେତନା ହଜି ଯାଇଛି କାହିଁ କେତେ ଦୂରରେ··· । ହଠାତ୍ ସେ ମୋତେ ହଲାଇ ଦେଇ ଡାକିଲେ, ମାଲ ! ମାଲ !! ଉଠି ବସି ଅନାଇଲି । କହିଲେ, ମାଲ ମୋ ଦେହଟା ଭାରି ଦୁର୍ବଳ ଲାଗୁଛି—ମୁଣ୍ଡଟା ବୁଲାଇ ଦେଉଛି । ହଠାତ୍ କାହିଁକି ଗୁଡ଼ାଏ ରକ୍ତ ବାନ୍ତି ହୋଇଗଲା ।

ଚମକି ପଡ଼ିଲି । ରକ୍ତବାନ୍ତି କଥା ଶୁଣି ଦେହ ମୋର ଭୟରେ ଶୀତେଇ ଉଠିଲା । ସେ ପୁଣି ପଦାକୁ ଉଠି ଆସିଲେ । ମୁଁ ତାଙ୍କ ପଛେ ପଛେ ଆସିଲି । ପୁଣି ସେ ଭକ ଭକ କରି ରକ୍ତବାନ୍ତି କରି ପକାଇଲେ । ତାଙ୍କର ରକ୍ତବାନ୍ତି ଦେଖି ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । କ'ଣ କରିବି କିଛି ଭାବି ପାରିଲି ନାହିଁ । ହତଜ୍ଞାନ ହେଲା ପରି ସେ କହିଲେ—ମାଲ, ପାଣି ଆଣ ! ପାଣି ଆଣି ଥୋଇଲି । ସେ ମୁହଁ ଧୋଇ ଉଠି ଆସିଲେ । ଦେହଟା ତାଙ୍କର ଥରୁଥାଏ । କହିଲି, ଟିକିଏ ଶୋଇ ପଡ଼ନ୍ତୁ । ସେ ଖଟ ଉପରକୁ ଆସି ମୋର କୋଳରେ ମୁଣ୍ଡଦେଇ ଚିତ୍ ହୋଇ ଶୋଇପଡ଼ିଲେ । ମୁଁ ପଙ୍ଖା ଧରି ପବନ କରିବାକୁ ଲାଗିଲି । ସେ କହିଲେ, ମାଲ ମୋ ଛାତିଟା କ'ଣ ହୋଇଯାଉଛି—ମରିଯିବି କି ଆଉ ! ତାଙ୍କ କଥା ଶୁଣି ଆଖିରୁ ମୋର ଲୁହ ଝରି ପଡ଼ିଲା । କହିଲି—ଛି, ଇମିତିକା ଅମଙ୍ଗଳ କଥା କହନ୍ତି ସେ କହିଲେ, ମାଲ, ମୋତେ ଭାରି କଷ୍ଟ ହେଉଛି । ତୁମେ ରାମହରିବାବୁଙ୍କୁ ଡାକ । ସେ ଟିକିଏ ଡାକ୍ତର କଥା କହିବେ । କହିଲି, ଏତେ ରାତିରେ ସେ କେଉଁଠୁ ଡାକ୍ତର ପାଇବେ ? ତମେ ଟିକିଏ ଆରାମରେ ଶୁଅ । ରାତି ପାହୁ—ମୁଁ ତାଙ୍କୁ ପଠାଇବି । ସେ ମୋ ମୁହଁକୁ

ଗୁହିଁ କହିଲେ, ତମେ କାନ୍ଦୁଛ ମାଲ···ଛୁ, ମୁଁ ଭଲ ହୋଇଯିବି ଯେ ସେ ମୋ ଆଖିରୁ ତାଙ୍କ କଅଁଳ ହାତରେ ଲୁହ ପୋଛି ଦେଲେ ।

ସେ ସେମିତି ମୋର କୋଳରେ ଶୋଇ ରହିଲେ । ମୁଁ ପଙ୍ଖା କରିବାକୁ ଲାଗିଲି । ରାତିର ଶେଷ ପହରକୁ ତାଙ୍କୁ ନିଦ ଲାଗି ଆସିଲା । ଗୋଟାଏ ଅଜଣା ଭୟଙ୍କର ଅନ୍ଧକାର ଭିତରେ ମୁଁ ପଥଭ୍ରାନ୍ତ ହେଲା ପରି ବାର ବାର ଖାଲି ଆଖିରୁ ଲୁହ ଗଡ଼ିବାକୁ ଲାଗିଲା ।

ତା ଆର ଦିନ ଆଠଟା ବେଳକୁ ରାମହରିବାବୁ ଡାକ୍ତର ନେଇ ଆସିଲେ । ଡାକ୍ତର ଦେଖି କହିଲେ, ଯକ୍ଷ୍ମାର ଆକ୍ରମଣ । ଶୀଘ୍ର ସାବଧାନ ହେବାକୁ ହେବ । ଯକ୍ଷ୍ମା ନାଁ ଶୁଣି ମୁଁ ଭୋ ଭୋ ହୋଇ କାନ୍ଦି ଉଠିଲି । ରାମହରି ବାବୁ, ତାଙ୍କ ସ୍ତ୍ରୀ ସୁମିତ୍ରା ଦେବୀ ମୋତେ କେତେ ବୁଝାଇ ସାନ୍ତ୍ୱନା ଦେବାକୁ ଲାଗିଲେ । କହିଲେ, ଛି ଭଉଣୀ ଇମିତି ହେଲେ ସ୍ୱାମୀଙ୍କୁ ଆରୋଗ୍ୟ କରିବ କିପରି ? ଭଗବାନ ବିପଦ ଦେଇଛନ୍ତି । ତାଙ୍କୁଇ ଡାକ । ସେ ପୁଣି ତମ ସ୍ୱାମୀଙ୍କି ଫେରି ଦେବେ । ନିଜ ମନକୁ ସାନ୍ତ୍ୱନା ଦେଇ ଆଖିରୁ ଲୁହ ପୋଛିଲି । ଡାକ୍ତର ବାବୁ ପ୍ରାରମ୍ଭିକ ଔଷଧର ବ୍ୟବସ୍ଥା କରି ବିଦାୟ ନେଲେ । ଔଷଧରେ କୌଣସି ଉପକାର ହେଲା ନାହିଁ । ବରାବର ଦିନକୁ ଦୁଇ ତିନଥର ରକ୍ତବାନ୍ତି ହେଲା—ନାକରୁ ରକ୍ତ ପଡ଼ିଲା । ଖୁଁ ଖୁଁ ହୋଇ ସେ କାଶିବାକୁ ଲାଗିଲେ । କେତେବେଳେ କାଶି କାଶି ବେଦମ ହୋଇ ପଡନ୍ତି । କାଶରେ କଫ ମିଶ୍ରିତ ରକ୍ତ ମେଞ୍ଚା ମେଞ୍ଚା ପଡେ । ଦି'ଦିନ ପରେ ସେ ଅତି ଦୁର୍ବଳ ହୋଇ ପଡ଼ିଲେ । ସବୁବେଳେ କହିଲେ, ମାଲ, ମୁଁ ଆଉ ବଞ୍ଚିବି ନାହିଁ— ମଲେ ତୋ ଅବସ୍ଥା କଣ ହେବ ! ମୁଁ କିଛି ନ କହି ଖାଲି କାନ୍ଦେ । ତାଙ୍କ ଅବସ୍ଥା ଦିନୁ ଦିନ ଅବନତି ଦେଖି ସେଦିନ ନୂଆବୋଉଙ୍କ କତିକି ମୋର ବିପଦ କଥା ଲେଖି ଶୀଘ୍ର ଆସିବାକୁ ଚିଠି ଦେଇଦେଲି । ଆମ ଘରକୁ ମଧ ଖଣ୍ଡେ ଚିଠି ଦେଲି ।

କ୍ରମାଗତ ରୋଗରେ ସେ ଭାଙ୍ଗି ପଡ଼ିବାରୁ ଚାରିଦିନ ପରେ ରାମହରିବାବୁ ତାଙ୍କୁ ହସପିଟାଲକୁ ପଠାଇବାକୁ ସ୍ଥିର କଲେ । ଘରେ ତାଙ୍କ ଚିକିତ୍ସା, ସେବା ଶୁଶ୍ରୂଷାରେ ହେଳା ହେଉଚି ଭାବି ଆପତ୍ତି ଉଠାଇବାକୁ ମୋର ସାହସ ହେଲା ନାହିଁ ।

ସେଦିନ ଚାରିଟାବେଳେ ଗାଡ଼ି କରି ହସପିଟାଲ ଯକ୍ଷ୍ମା ବିଭାଗରେ ତାଙ୍କୁ ଭର୍ତ୍ତି କରି ଦେଇ ଆସିଲୁ । ଆସିଲାବେଳେ ତାଙ୍କ ସବୁରହୀନ କରୁଣ ମୁହଁ ଓ ଭଙ୍ଗା ଶରୀରକୁ ଚାହିଁ ମୁଁ ଭୋ ଭୋ ହୋଇ କାନ୍ଦି ଉଠିଲି । ଡାହାଣ ଆଖିଟା ସେତିକବେଳେ

ମୋର କମ୍ପି ଉଠିଲା । ଅଜଣା ଭୟରେ ସାରା ଶରୀର ମୋର ଅବଶ ହୋଇଗଲା । ସେ ମୋ ହାତ ଧରି କହିଲେ, ମାଲା ମୁଁ କଣ ଆଉ ବଞ୍ଚିବି ନାହିଁ ଏତେ ଆଶା କରି ତୋତେ ପାଇ ପାଖକୁ ଆଣିଥିଲି—ଜୀବନର ସୀମାହୀନ ସୁଖସାଗର ଭିତରେ ଟିକିଏ ଅମୃତଭରା ସ୍ୱାଦ ଚାଖିବାକୁ । କିନ୍ତୁ ଏ କଣ ହେଲା ତୋ ଗର୍ଭରେ ଥିବା ପିଲାଟିକୁ ମୁଁ କଣ ଦେଖି ପାରିବି ନାହିଁ ? ଅଦିନ ରୋଗର ପହିଲି ଧକ୍କା କ'ଣ ଆମ ଦୁଇଟି ସରସ ହୃଦୟର କୋମଳ ତନ୍ତ୍ରୀକୁ ଛିନ୍ନ ଭିନ୍ନ···। ସେତିକିବେଳେ କାଶ ଉଠିଲା—ସେ ଆଉ କହି ପାରିଲେ ନାହିଁ । ଘଡ଼ିଏ ପରେ କାଶ କମିବାରୁ, ସେ ନିଜର ଦୁର୍ବଳ ଅସ୍ଥିର ଦେହଟାକୁ ଖଟିଆ ଉପରେ ପକାଇ ଟିକିଏ ଦମ ନେଲେ । ମୁଁ ତାଙ୍କୁ ଟିକିଏ ଆଉଁସି ଦେଇ ବିଦାୟ ନେଇ ଆସିଲି । କହି ଆସିଲି, କାଲି ସକାଳେ ଆସିବି—ମୋ ପାଇଁ ବ୍ୟସ୍ତ ହେବନି । ଠାକୁରଙ୍କୁ ଡାକ, ସେଇ ଆମର ଦୁଃଖ ସୁହାଗ ନିଶ୍ଚୟ ଶୁଣିବେ । ତମେ ଭଲ ହୋଇଯିବ । ପୁଣି ଆମେ ହସି ହସି ଜୀବନ ବୋଇତ ମେଲି ଦେବା ଦୁନିଆ ଦରିଆ ବୁକୁରେ । ସେ ହସିଲେ—ମଲିନହସ ପରି ତାଙ୍କ ହସଟା ଦିଶୁଥିଲା ପାଣ୍ଡୁର—ଦୀପ୍ତିହୀନ ।

ବସାକୁ ଆସି ସେଦିନ ରାତିରେ ଏକୁଟିଆ ମୋଟେ ନିଦ ହେଲା ନାହିଁ । ମନଟା ଅଜଣା ଭୟର କୁହେଳି ପରଦା ଭିତରେ ଲୁଚିଗଲା । ଦେହଟା ଖାଲି କମ୍ପୁଥାଏ । ସତେ କି ହିମାଳୟ ପରି ବିପଦ ଆସି ମୋ ଉପରେ ଭାଙ୍ଗି ପଡ଼ିବ । ମୋ ଜୀବନର ସୁନେଲି କଳ୍ପନାକୁ ଚୁରମାର କରି ଯାଇଁ ତୃପ୍ତି ପାଇବ । ଆଖିରୁ ଖାଲି ଲୁହ ଝରିଲା । ତକିଆ ଉପରେ ମୁହଁ ମାଡ଼ି କାନ୍ଦି କାନ୍ଦି ସାରା ରାତିଟା ବିତାଇ ଦେଲି । ସକାଳୁ ଉଠିଲାବେଳକୁ ସହରର ସବୁଗ ମଉଳାର ମେଘ ଘାଙ୍କିଛି । ଘଡ଼ଘଡ଼ିର ପ୍ରତିଧ୍ୱନି ବାଜି ଉଠୁଛି ପୃଥିବୀର ଛାତି ଦୋହଲୁଛି । ଆକାଶକୁ ଅନାଇ ମୋର ଯେପରି ମନେ ହେଲା, ସହରର ସବୁଗ ହଜିଗଲା ପରି ଆଜି ମୋ ଜୀବନର ସୁଖ ସ୍ୱାଦ କିମିତି ହଜି ଯାଇଛି— ମାଡ଼ି ଆସିଛି ଖାଲି ପ୍ରାଣ ଅଥୟକାରୀ ପ୍ରବଳ ଝଞ୍ଜା ।

ସ୍ୱାମୀଙ୍କୁ ଦେଖିବି ବୋଲି ମନଟା ଭାରି ଅସ୍ଥିର ହୋଇ ଉଠିଲା । ଚଞ୍ଚଳ ସକାଳର ବାସୀ କାମ ସାରି ରାମହରି ବାବୁ ଓ ତାଙ୍କ ସ୍ତ୍ରୀ ସୁମିତ୍ରାଦେବୀଙ୍କୁ ସଙ୍ଗରେ ନେଇ ଦୁଇଟା ରେକ୍ସାରେ ହସ୍‌ପିଟାଲ ଅଭିମୁଖେ ଚାଲି ଆସିଲୁ । ପହଞ୍ଚିଲାବେଳକୁ ସବୁ ଶେଷ । ଡାକ୍ତର ଆସି କହିଲେ, ରୋଗୀକୁ କାଲି ରାତିରେ ଛାଡ଼ି ଯିବା ପରେ ପୁଣି ପ୍ରବଳ ରକ୍ତ ବାନ୍ତି ହେଲା । ବାରି ବାର କାଶ ଉଠିଲା । ଯେତେ ଚେଷ୍ଟା, ଔଷଧର ବଳ ପ୍ରୟୋଗ ସତ୍ତ୍ୱେ ତାଙ୍କର ରୋଗ ଅସାଧ୍ୟ ହୋଇ ଉଠିଲା । ଠିକ୍ ଚାରିଘଣ୍ଟା ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ମଲାବେଳେ ସେ ଖାଲି 'ମାଲା' 'ମାଲା' ଡାକି ଛାଡୁଥିଲେ । ତାଙ୍କ ମଲା ଖବର ଶୁଣି ମୋ ଦେହଟା କଣ

ହୋଇଗଲା । ଗୃହଆଡ଼ କଟି କଟି ଅନ୍ଧାର ଦିଶିଲା । କାନ୍ଦି କାନ୍ଦି ତଳେ ଅଜ୍ଞାନ ହୋଇ କଚ୍ଛଡ଼ି ପଡ଼ିଲି । ଚେତନା ଫେରି ପାଇଲା ବେଳକୁ ଦେଖିଲି ଗ୍ରାମହରି ବାବୁଙ୍କ ବସାରେ ମୁଁ ଶୋଇଛି । ତାଙ୍କ ସ୍ତ୍ରୀ ମୋତେ ବାନ୍ଧି ଦେଉଚନ୍ତି । ତାଙ୍କୁ ଦେଖି ପୁଣି ମୁଁ କଇଁ କଇଁ ହୋଇ କାନ୍ଦି ତାଙ୍କର କୋଳରେ ଲୋଟି ପଡ଼ିଲି । କହିଲି, ଭଉଣୀ ମୋ ସଂସାର ସରିଗଲା ! ମୁଁ କଣ କରିବି ? ତାଙ୍କ ଆଖିରେ ଲୁହ ପୂରି ଆସିଲା । ସେ ମୋତେ କେତେ ବୁଝାଇଲେ । ଭଉଣୀ ଭଗବାନ ତ ଦୁଃଖ ଦେଲେ କଣ କରିବ ! ମୁଣ୍ଡପାତି ନ ସହିଲେ ଦୁନିଆରେ ବଞ୍ଚିବ କିପରି ? ଦୁଃଖ ଯେତେବେଳେ ଆସେ—ଇମିତି ପାହାଡ଼ ପରି ଲଦି ହୋଇ ଆସେ ଲୋ ଭଉଣୀ …ଜୀବନ ବଳେ ବଳେ ଭାଙ୍ଗି ପଡ଼େ । କିଛି ବୁଦ୍ଧି ବାଟ ଦିଶେନା । ତଥାପି ତ ଭଉଣୀ ପୁଣି ମଣିଷକୁ ବଞ୍ଚି ରହିବାକୁ ପଡ଼ିବ— ସବୁ ଦୁଃଖର ଦାଉ ଅଙ୍ଗେ ଲିଭେଇ । ସେ ଯେତେ ବୁଝାଇଲେ କୋଉଥିରେ ମନ ମାନିଲା ନାହିଁ । ଖାଲି ତାଙ୍କର କୋଳରେ ଆଖିରେ ଯାଇଥା ବେଦନାର ଲୁହତକ ଅଜାଡ଼ି ଦେଲି ।

ବେଦନାର ଅଶ୍ରୁ ନଗିଡ଼ା ସୁଅରେ ଗୃହେ ଟିଦିନ ଗୃହେଟି ରାତି କୁଆଡ଼େ ଭାସି ଯାଇଛି, ମୁଁ ଜାଣେନା । କାନ୍ଦି କାନ୍ଦି ଆଖିରୁ ଲୁହ ଶୁଖି ଯାଇଛି— ଅନ୍ତରର ହା-ହୁତାଶ ଭଗ୍ନ ତାତଲା ପରଶରେ । କିଛି ନ ଖାଇ ନ ପିଇ ଦେହଟା ମୋର ଦୁଃଖର ଧକ୍‌କାରେ କଣ୍ଟା ପରି ଦୋହଲୁଥାଏ । ମୁହଁ ସଂକ ଲାଗି ଆସୁଚି । ବସି ବସି ଭାବୁଥାଏ, ଆଉ କାହିଁକି ଏ ଜୀବନ ରଖିବି—ମରିଗଲେ ସବୁ ଚିନ୍ତା ସବୁ ଦୁଃଖ ଜଞ୍ଜାଳରୁ ମୁକ୍ତ । ହଠାତ୍ ବାହାରେ ଘୋଡ଼ାଗାଡ଼ିର ଘଣ୍ଟି ଶୁଭିଲା । ପଦାକୁ ଆସି ଦେଖେ, ନୂଆବୋଉ ଆଉ ସୁରଭାଇ ଓହ୍ଲାଉଚନ୍ତି ।

ନୂଆବୋଉ ଆଗେ ଘର ଭିତରକୁ ପଶି ଆସିଲେ । ମୋତେ ଦେଖି କୋଳକୁ ଟାଣିନେଇ ପଚାରିଲେ, ମାଲ ଦେବ କିପରି ଅଛି ? ଉତ୍ତର ଦେବାକୁ ହୃଦୟରୁ ଭାଷା ଖୋଜି ପାଇଲି ନାହିଁ । ଭେ ଭେ ହୋଇ ତାଙ୍କର କୋଳରେ କାନ୍ଦି ଉଠିଲି । ସୁରଭାଇ ଆସି ପଚାରିଲେ, କଣ ହୋଇଚି ବାସ, ଦେବ ଦେହ କିପରି ଅଛି ? ନୂଆବୋଉ ପଚାରିଲେ—ମାଲ କ'ଣ ହେଇଚି କହ, ଦେବ କିପରି ଅଛି ? ମୁଁ କିଛି ତାଙ୍କୁ ଉତ୍ତର ଦେଇ ପାରିଲି ନାହିଁ । ତଳେ କଚ୍ଛଡ଼ି ହୋଇ ପଡି ଖାଲି ବିକଳ ହୋଇ କାନ୍ଦି ଉଠିଲି । ଆଖି ଆଗରେ ମୋର ଭାସି ଉଠିଲା, ଖାଲି ପ୍ରଶ୍ନ ଉପରେ ପ୍ରଶ୍ନ— ଦେବ କିପରି ଅଛି ??? ଉତ୍ତର ଦେବାକୁ ଯେତେ ଯେପରି ପିଣ୍ଡରେ ମୋର ପ୍ରାଣ ନ ଥିଲା । ପାଷାଣ ପରି ମୁଁ ହୋଇ ଯାଇଥିଲି ନୀରବ, ନିସ୍ତେଜ, ମୂକ ଓ ବଧୀର ।



ମାଲ !

କଣ ନୂଆବୋଉ !

ଚାଲ......

ଆଉ କାହିଁକି ମୋତେ ପ୍ରଲୋଭନ ଭିତରକୁ ଟାଣି ନେଉଚ ? ଜୀବନରେ କ'ଣ ସୁଖ ସୁଆଦ କିଛି ନାହିଁ— ଇମିତି ଲେ ଜଳିଯିବ ! ଜଳୁ— ଜଳିଲେ ତ ଶାନ୍ତି ନୂଆବୋଉ ! ତାରି ଭିତରେ ପାଇବ ମୁଁ ତାଙ୍କର ଅମୃତଭରା ପରଶ ।

ଛିଃ ମାଲ, ଦୁଃଖରେ ଭାଙ୍ଗି ପଡ଼ିଲେ ମଣିଷ ବଞ୍ଚେ ନାହିଁ । ଭଙ୍ଗାଘରକୁ ଗଢ଼ି ଜାଣିଲେ ଜୀବନ ସୁନ୍ଦର ।

ଗଢ଼ିଥିଲି ନୂଆବୋଉ ! ଗଢ଼ି ବି ମୁଁ ଜୀବନକୁ ସୁନ୍ଦର କରି ପାରିଲି ନାହିଁ । ହତଭାଗୀଟା ମୁଁ — ମରିଗଲେ ସବୁ ଜଞ୍ଜାଳରୁ ଛୁଟି ।

ଛିଃ ମାଲ, ମରିବାଟା ନାରୀର ସବୁ ଦୁର୍ବଳତାର ପରିଚୟ । ଗର୍ଭରେ ତମର ସନ୍ତାନ । ତାରି ମୁହଁକୁ ଚାହିଁ ଫେରିଚାଲ ।

କେଉଁ ମୁହଁରେ ଗାଁକୁ ମୁଁ ଫେରିଯିବି ନୂଆବୋଉ, ପୁଣି ସଂସାର ପାତିବି । ଆଉ କଣ ମନ ଖୋଲି ହସ ହସି ପାରିବି ।

ମୁଁ ତ ପୁଣି ଦିନେ ଅତୀତକୁ ଜାଳି ପୋଡ଼ି ହସି ହସି ତମରି ସୁରଭାଇଙ୍କର ହାତ ଧରିଥିଲି । ତମେ ସେ କଥା ଜାଣିନ ମାଲ । କହିବି କହିବି ବୋଲି ତମକୁ ଆଜି

ଅବଧି କରି ପାରନାହିଁ । କ୍ଷଣିକ ଦୁର୍ବଳତା ମୋ ମୁହଁକୁ ଚୁପି ଧରିଚି କହୁଚି ଶୁଣ । ଆଜକୁ ଠିକ୍ ସାତ ବର୍ଷ ତଳେ । ଯଉବନର କାଉଁଖି ପରଶ ଯେତେବେଳେ ଦେହ ମନରେ ବାଜି ଉଠିଲା— ସେତେବେଳେ ମୁଁ ନିଜକୁ ଆୟତ୍ତ କରି ପାରିଲି ନାହିଁ । ମନ ପ୍ରାଣ ମୋର ପୁଲକ ଉଠିଲା— ଯୋଉଦିନ ବିଧୁ ବାବୁଙ୍କୁ ପ୍ରଥମେ ଦେଖିଲି । ବିଧୁବାବୁ ମୋ ବାପାଙ୍କର ବନ୍ଧୁ ଉମାକାନ୍ତ ବାବୁ ଜମିଦାରଙ୍କ ପୁଅ । ଆମ ଘରକୁ ସେ ଥରେ ଆସିଥିଲେ ବୁଲି— ଅଥଚ ଚର୍ଚ୍ଚା କରିବାକୁ ଯାଇ ପଢ଼ିଲି ଦେଖାରେ ସେ ମୋତେ କରି ନେଲେ ନିଜର । ସେଇଁ ଦିନଠୁ ସେ ନିତିବର ଆମ ଘରକୁ ଆସନ୍ତି । ମୁଁ ତାଙ୍କର ସ୍ନେହରଜ୍ଜୁରେ ଆପେ ଆପେ ବାନ୍ଧି ହୋଇ ପଡ଼ିଲି । ଗୋଡ଼ ଖସି ଗଲା ଆହୁରି ତଳକୁ··· ତାଙ୍କର ପ୍ରେମବହ୍ନିରେ ନିଜକୁ ଆହୁତି ଦେଲି । ଏ କଥା ଯେତେବେଳେ ସମସ୍ତେ ଜାଣିଲେ— ସେତେବେଳେ ବାପା ବିଧୁବାବୁଙ୍କ ସହିତ ମୋର ବାହାଘର ପ୍ରସ୍ତାବ ଉଠାଇଲେ । ଉମାକାନ୍ତ ବାବୁ ଖୁସି ହେଲେ— ବାହାଘର ଦିନ ସ୍ଥିରହେଲା । କିନ୍ତୁ ଦୁର୍ଯୋଗ ଭଉଣୀ, ମୋ ବାହାଘରର, ଠିକ୍ ଚାରି ଦିନ ଆଗରୁ ବିଧୁ ବାବୁ କଟକରେ ମଟର ଦୁର୍ଘଟଣାରେ ପ୍ରାଣ ହରାଇଲେ । ବଜ୍ର ପଡ଼ିଲା ମୁଣ୍ଡରେ— ଭାବିଲି ପ୍ରାଣ ହରାଇ ଦେବି । କାନ୍ଦି କାନ୍ଦି ଗୋଟାଏ ମାସ ଖାଲି ବେଦନାର ସୁଅରେ ଭସାଇ ଦେଲି । ଅଖାତକୁ ଭାଳି ଭାଳି ମନ ପରାଣ ହେଲା— ଜୀବନଟା ଡହଳି ଲାଗିଲା । କିନ୍ତୁ ବାପା ବୋଉଙ୍କ ମୁହଁରେ ହସ ଫୁଟାଇ ନିଜ ଜୀବନକୁ ସୁଖୀ କରିବାକୁ ମନର ସବୁ କଷ୍ଟ, ଦୁର୍ବଳତା ପୋଛି ପୁଣି ତମର ସୁରଭାଇଙ୍କର ହାତ ଧରିଲି । ଆଶା କରିଥିଲି ବିଧୁବାବୁଙ୍କୁ— କିନ୍ତୁ ତା' କଣ ହେଲା ! ପୁଣି ତ ମୁଁ ତମର ସୁରି ଭାଇଙ୍କର ହାତଧରି ସଂସାର କଲି— ମନ ଖୋଲି ହସି ହସି ପାରିଲି । ତମେ ଚାଲି ମାଲ— ଅବାଧ ହୁଅନା ।

ତଥାପି ବି ମନ ବୁଝୁନାହିଁ ନୂଆବୋଉ ! ମୁଁ ଯାଇ ପାରିବି ନାହିଁ, ତମେ ଯାଅ । ଛୁ ମାଲ··· ଚାଲି । ବଳା ମଉସା ମନ ବଦଳିଚି ତମକୁ ଦେଖିବାକୁ, କେତେ କରି ସେ କହୁଚନ୍ତି । ଅବହେଳା କରି ଗୋଟିଏ ଅମୂଲ୍ୟ ନିଧି ତ ହରାଇଲି— ଆଉ ଗୋଟିକୁ ପୁଣି ଜାଣି ଜାଣି ଛାଡ଼ି ଦେଇ ଯିବି କିପରି ? ମୁଁ କାହାକୁ ଚାହିଁ ବଞ୍ଚିବି ମାଲ !

ଯା ମୁହଁକୁ ଚାହିଁ ବଞ୍ଚିଥାନ୍ତି, ସେ ତ ନାହାନ୍ତି । ଆଉ ମୋ ପୋଡ଼ା ମୁହଁଟାକୁ ଚାହିଁ ନିଜର ସବୁ ଅମଙ୍ଗଳ ବରଣ କରିବ କାହିଁକି ନୂଆବୋଉ ! ସେ ଯାଇଚନ୍ତି— ତାଙ୍କ ସଙ୍ଗେ ସଙ୍ଗେ ମାଲ ବି ମରି ଯାଇଚି । ତମେ ଯାଅ ।

ଗର୍ଭରେ ତମର ସନ୍ତାନ— କୁଳର ପ୍ରଦୀପ । ତମକୁ ମୁଁ ଇମିତି କିପରି ଛାଡ଼ି ଦେଇ ଯିବି ମାଲ ! ମୋ ରାଣ— ଚାଲ ।

ଆଖିରୁ ମୋର ଲୁହ ଝରିଲା ।

ଛି ମାଳ କାନ୍ଦୁଛୁ । ମୋ ଆଖିରୁ ଲୁହ ପୋଛୁ ପୋଛୁ ନୂଆବୋଉ କାନ୍ଦ ଉଠିଲେ । ତୁହେଁ ଦୁହିଁଙ୍କୁ ଧରି ମନର ବେଦନାଟିକ ହାଲୁକା କରିବାକୁ ଖୋଲି ଲୁହ ଢାଳି ଦେଉଚୁ, ସୁରଭାଇ ଘୋଡ଼ାଗାଡ଼ି ନେଇ ଆସି ଦାଣ୍ଡ ଦରଜାରେ ଛିଡ଼ା ହୋଇ ଡାକଲେ, ମାଳକୁ ନେଇ ଚଞ୍ଚଳ ଆସ ବାସ ! ଗାଡ଼ି ସମୟ ହୋଇଗଲାଣି ।

ନୂଆବୋଉ ମୋ ହାତ ଧରି ଟାଣିଲେ, ଚାଲ ମାଳ ! ଆଖିରେ ତାଙ୍କର ଛଳ ଛଳ ଲୁହ— କରୁଣ ବେଦନାବିଧୁର ସ୍ୱର ।

କହିଲି, ନୂଆବୋଉ ତମେ ଯାଅ । ଆଉ ଏ ଅଲୋଡ଼ା ଜୀବନକୁ କାହିଁକି ସାଙ୍ଗ କରୁଚ ।

ଜୀବନ ଅଲୋଡ଼ା ନୁହେଁ ମାଳ··· ଜୀବନର ମୂଲ୍ୟ ଖୁବ୍ ବେଶୀ । ଦୁଃଖ କଷ୍ଟ ଝଡ଼ ବତାସ ଭିତରେ ଜୀବ ପୁଣି ନୂଆ କରି ହସି ଉଠେ ମାଳ··· ସବୁ ଦୁଃଖ ଦୁର୍ବଳତା ମନରୁ ପୋଛି ତୁମେ ସାହସ ବାନ୍ଧ । ସୁରଭାଇ ପଦାରୁ ଡାକଲେ,—ଡେରି ହେଲା ଚଞ୍ଚଳ ଆସ ବାସ । ନୂଆବୋଉ ହାତ ଧରି ମିନତିଭରା ଗଳାରେ କହିଲେ ଚାଲ··· ଆଗକୁ ପାଦ ବଢ଼ାଇଲି । ନୂଆବୋଉଙ୍କ ବେଦନା ମଉଳା ମୁହଁରେ ଝଟକି ଉଠିଲା ଉଷାର ଶାନ୍ତ ଛବି ପରି କ୍ଷୀଣ ମଧୁର ହସ ।

ଚିର ପରିଚିତ ଗାଁ ମାଟିକୁ ଫେରି ଆସିଲି । ଆଜି ମୁଁ ଜମିଦାର ଚୌଧୁରୀ ବଂଶର ବୋହୂ । ନୂଆବୋଉ ମୋର ଯା । ଶାଶୁ ଶ୍ୱଶୁର, ଯା ସମସ୍ତେ ଆଜି ମୋତେ ଭଲ ପାଉଚନ୍ତି । କିନ୍ତୁ କାହିଁ ଏତେ ଆନନ୍ଦ ଭିତରେ ବି ମୁଁ ଜୀବନରେ ଟିକିଏ ଶାନ୍ତି ପାଇ ପାରେଲି ନାହିଁ ! ସବୁବେଳେ କା'ର ଅଭାବ ହାଡ଼େ ହାଡ଼େ ଅନୁଭବ କଲି । ଆଖିରୁ ଢଳା ଲୁହରେ ମନର ପରାଣ ଟିକିଏ ବି କମିଲା ନାହିଁ ।

ଝରଣାର ଭାଗ୍ୟ ଆଜି ଫେରିଚି । ପୁଣି ତା ସ୍ୱାମୀ ତାକୁ ପାଖକୁ ଟାଣି ନେଇଚି । କାଲି ସକାଳେ ସେ ହେବ ଗୋଟିକର ମା । କିନ୍ତୁ ମୁଁ···ମୋ ଜୀବନର ଉଜାଣି ଢେଉ ମୋତେ ଭସାଇ ଦେଇଚି ଦୁଃଖର ଅଥଳ ଦରିଆକୁ । କୂଳ ପାଇବା ଆଉ ଆଶା ନାହିଁ । ପ୍ରାଣଉଜୁଡ଼ା ଜୀବନଟା ହଜିଗଲେ ସବୁ ଜଞ୍ଜାଳରୁ ଛୁଟି । ଅପା କେତେ ବୁଝାନ୍ତି—ବୋଉଥରେ ମନ ମାନେନା ।

ସମସ୍ତଙ୍କର ମୁଁହ ଶୁଖିଯାଉଛି ।

ଆଜି ମୋ ପୁଅର ଏକୋଇଶା । ଚୌଧୁରୀ ବଂଶର କୁଳର ପ୍ରଦୀପ ହସି ଉଠିଛି । ସେଇଥିପାଇଁ ଘରଆଡ଼େ ଉତ୍ସବର ଧୂମ୍ ଲାଗିଛି । ସା, ଶାଶୁ ଶଶୁରଙ୍କର ଗୋଡ଼ ତଳେ ଲାଗୁନାହିଁ । ଆନନ୍ଦରେ ଗାଁ ସାରା ମୁଖରିତ କରି ବାଜା ବାଜୁଛି । ଖାଇବା ପିଇବାର ଧୂମ୍ ଉଡ଼ୁଛି ।

ସମସ୍ତେ ମନଖୋଲି ହସ ହସୁଚନ୍ତି । ମୁଁ କିନ୍ତୁ ହସି ପାରୁନାହିଁ । ଅତୀତ ଆସି ଆଖି ଆଗରେ ଆଲୁଅ ଜାଳୁଛି । ଜୀବନର ଆରମ୍ଭରୁ ଶେଷଯାଏ ସ୍ମୃତି ଗୁଡ଼ା ସବୁ ଦେଖା ଯାଉଛି ସ୍ପଷ୍ଟ ହୋଇ । ତାଙ୍କର ସ୍ମୃତି ଗୁଡ଼ା ମୋ ମନକୁ ଖାଲି ବିଚଳିତ କରି ପକାଇଲା । ଶୋଇ ଶୋଇ ତକିଆ ଉପରେ ମୁହଁମାଡ଼ି ବହେ କାନ୍ଦିଲି । ମନକୁ ମନ କହିଲି, ହେ ଦେବତା ମୋତେ ତାଙ୍କର ବାଟରେ ନେଇଯାଅ—! ଆଉ କାହିଁକି ମୋତେ ଦୁନିଆର ପ୍ରବଞ୍ଚନା ଭିତରେ ବୁଡ଼ାଇ ରଖିଛ । ତାଙ୍କର ପରି ମୋ ଜୀବନକୁ ଜାଳି ପୋଡ଼ି ପାଉଁଶ ଭଳି ସୁନ୍ଦର କରି ଦିଏଁ—ଏହାହିଁ ମୋର କାମନା—ଏହାହିଁ ମୋର ଶାନ୍ତି ।

ମାଲି !

ଆଖି ମେଲି ଅନାଇଲି ସେଦିନର ନୂଆବୋଉ, ଆଜିର ଅପା ।

କାନ୍ଦୁଚି ମାଲି

ହଁ ଅପା, ଆଜି ଆଉ ନିଜକୁ ବୋଧ କରି ପାରିଲି ନାହିଁ । ଠାକୁରଙ୍କୁ ଡାକୁଚି ମୋତେ କିମିତି ଏଥିରୁ ତାଙ୍କର ବାଟରେ ଡାକି ନିଅନ୍ତୁ । ଯା' ପାଇଁ ମରୁ ମରୁ ବଞ୍ଚିଥିଲି—ସେ ଆଜି ତମର କୋଳରେ ଅପା । ତମେ ତାକୁ ସ୍ନେହ ଦେଇ ମଣିଷ କର । ମତେ ଏଥିରୁ ଛୁଟି ଦିଅ । ମୁଁ ଟିକିଏ ମନଭରି କାନ୍ଦେ ।

ଛି ମାଲି, ସୁନା ଭଉଣୀ ପରି···ଆଜି ପରି ଦିନରେ କାନ୍ଦନ୍ତି ?

ସେ ମୋ ଆଖିରୁ ଲୁହ ପୋଛିଦେଲେ ।

ଅନାଇଲି ତାଙ୍କ ଆଖିରେ ଦୁଇଟି ଲୁହ ଧାର ଗଡ଼ିଆସିଛି ମୋର ବେଦନାର ସମଭାଗୀ ହେଇ······ସେ ଲୁହ ଧାର ନୁହେଁ—ସତେ ଯେପରି ସେ ଗଙ୍ଗାର ଜଳପରି ଶାନ୍ତ, ଶୀତଳ, ପବିତ୍ର ସ୍ନେହର ଧାରା···



କବିତା ଭବନ, କଟକ-୩

ରଚନା କାଳ—୧୯୫୧

"ମଳିନା ଏ ମାଟି ତୋହର ମା'ଟି ଜୀବନ ଧାତ୍ରୀ ତୋର
ଉତ୍ସଙ୍ଗେ ପଡ଼ି ରହିଛୁ ଦିବସ ରଜନୀ ସଞ୍ଜ ଭୋର ।

ବିପୁଳ ଏହାର ସ୍ତନ୍ୟ ଦାନରେ ବିପୁଳ ଏହାର ସ୍ନେହେ
ପୁଷ୍ଟ ହୋଇଚି ଅଙ୍ଗ ତୋହର ବର୍ଣ୍ଣ ଫୁଟିଚି ଦେହେ ।

ଏ ତୋହ ମାଆର ବକ୍ଷ ଉଚ୍ଛୁଳା ଗର୍ଭୀର ସେନେହ ଭୁଲି
କେଉଁପର ଆଜି ଭରସା କରିଚୁ ଯନ୍ତ୍ରଚିତାର ଚୁଲି !

ଅନା ଅନା ଫେର ବାରେ
ଅନା ଅନା ତୋର ଦୃଷ୍ଟି ଫେରାଇ ମଳିନ ଏ ମାଟିପରେ ।"

ଶ୍ରୀ ରାଧାମୋହନ ଗଡ଼ନାୟକ

●

ବରିଷ୍ଠ ଔପନ୍ୟାସିକ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ଏହାର ସମାଲୋଚନାରେ କହିଛନ୍ତି—"ଲେଖକଙ୍କ କଲମରୁ ବିପୁଳ ଅଶ୍ରୁର ଉତ୍ସ ଝରି ପଡ଼ିଛି । ଓଡ଼ିଆ ପରବାସୀ ସବୁଠାରେ ହିଁ ଯେପରି ପରବାସୀ ରହି ଯାଉଛି; ଆପଣା ଘରେ, ପୁଣି ସୁଦୂର ବିଦେଶରେ କାହିଁହେଲେ ଯାକୁ ମଣିଷ ପରି ମୁଣ୍ଡ ଗୁଞ୍ଜିବାକୁ ଟିକିଏ ଠାବ ମିଳୁନାହିଁ । ଓଡ଼ିଆ ଜୀବନର ଏହି ଜମାଟବନ୍ଧା ଅଶ୍ରୁକୁ କିନ୍ତୁ ଲେଖକ ଠାବ କରି ପାରିଛନ୍ତି । ଏହା ତାଙ୍କ ଲେଖନୀ-କୃତିତ୍ୱର ବାସ୍ତବ ପରିଚୟ । ସରଳ ସୁନ୍ଦର ଭାଷା ଶେଫାଳି ଫୁଲ ପରି ନିଃଶବ୍ଦରେ ଝରି ପଡ଼ିଛି । ତାଙ୍କର ଭାଷା, ବର୍ଣ୍ଣନା ଚାତୁରୀ, ପ୍ରକୃତି ଚିତ୍ରଣ ଓ ଚରିତ୍ର ଗଠନ ଢଙ୍ଗରେ ଯେଉଁ ଅନ୍ତର୍ଦୃଷ୍ଟିର ପରିଚୟ ମିଳେ, ତାହା ତାଙ୍କୁ ଔପନ୍ୟାସିକ ମହଲରେ ସୁପ୍ରତିଷ୍ଠିତ କରିଛି ।"

●



ରାୟପୁର । ଏ ପାଖରେ ବାରିମୂଳ, ସେ ପାଖରେ ଶନ୍ତପୁର । ଠିକ୍ ତା'ରି ମଝିରେ ଛୋଟିଆ ଗାଁଟି ରାୟପୁର । ପୂର୍ବରେ ବିଶାଳ ଆମ୍ବତୋଟା—ସୂର୍ଯ୍ୟ କିରଣ ପଡ଼େନି ସେଠି । ପଶ୍ଚିମରେ ମଶାଣି—ଖାଲି ହାଡ଼, ମୁଣ୍ଡ, ଅଙ୍ଗାର । ଦକ୍ଷିଣରେ ଗୋବରୀ-ନଈ, ସରୁ ପାଣି ଧାର—ଶୀତଳ ମନୋହର । ଉତ୍ତରରେ କେନାଲବନ୍ଧ—ଚଳନ୍ତି ଛବି । ଗାଁର ଚାରି ପଟରେ ଛୋଟ ବଡ଼ କେତେ ଗାଁ । ମାଣପୁର, ଛୋଟି, ମଙ୍ଗଳପୁର, ଠାକୁରପାଟଣା, ନିକରାଇ, ଡୋଳ, ଯମରା···ଅସୁମାରି ଗାଁ—ମଣିଷ ।

ରାୟପୁର ଗାଁଟି ଛୋଟିଆ । ଢରେଶି ଚାଳିଶଟି ଘର । ଅଧିକାଂଶ ଚାଷୀ । ସାରା ବରଷ ବିଲରେ ଖଟନ୍ତି । ମାଟି ଉପରେ ଫସଲ ହସିଲେ ସେମାନେ ହସନ୍ତି—ଫସଲ ମଉଳିଲେ ସେମାନେ କାନ୍ଦନ୍ତି । ମାଟି ସହିତ ସେମାନଙ୍କର ଜୀବନ ତାଳ ଦେଇ ଚାଲିଚି ।

ଗାଁ ମୁଣ୍ଡ ସଜନା ଗଛମୂଳେ ନିଧି ପଧାନର ଘର । ନୂଆଣିଆ ଚାଳଘର ଖଣ୍ଡେ—ଦି' ଚାରି ବଖରା । ଘର ଆଗରେ କେଉଁ ପୁରୁଣା ଅମଳର କୂଅ—ବୟସ ତା'ର ପୂରି ଆସିଲାଣି । ଘରର ଉତ୍ତର ଆଡ଼କୁ ଚଉରା । ଦକ୍ଷିଣକୁ ବାରି—ବେଗୁନିଆ ଶିଙ୍ଖୁ ବାଡ଼ ବୁଲିଚି ଚାରିପଟେ । ବାରିତଳକୁ ନିଧି ପଧାନର ଜମି ଦି'ମାଣ । ଗୋଟିଏ ଚକ—ସୁନାଥାଳ ଜମି । ନିଧି ପଧାନର କେତେ ପୁରୁଷର ଜମି ଇଏ କହି ହେବନି । କେବଳ ନିଧି ପଧାନ ଏତିକି ଜାଣେ, ତା'ର ବାପ ଦାଦି ଅମଳର ଜମି ଇଏ । ଏହାରି ଯୋଗେ ତାଙ୍କରି ସୁଖର ସଂସାର ସବୁବେଳେ ସୁନା ପରି ହସୁଥାଏ ।

ନିଧି ପଧାନକୁ ବୟସ ଆସି ଦ'କୋଡ଼ି ପନ୍ଦର ଡେଇଁଲାଣି । ଜୀବନ ଉପରେ ତାର ଆଞ୍ଚ ଆସିଲେ ବି ଯଉବନ ତାର ମଉଳି ନାହିଁ । ଲୁହାପରି ମଣିଷଟାଏ—ଦିନରାତି ଖଟି ଖାଏ । ସେ ଜାଣେ ଜୀବନଟା ଖାଲି ଖଟିବା ପାଇଁ ଗଢ଼ା । ଲୁଗା ଖଣ୍ଡିକ ଆଣ୍ଠୁ ଲୁଚେନା । ବାର ଭଜା ତେର ତରକାରି ତା' ଘରେ ହୁଏନା । ମୋଟା ଚୋଟା ଯା ଯେତେବେଳେ ମିଳିଲା । କେତେବେଳେ ଖାଲି ପଖାଳକୁ ଶାଗଭଜା ଟିକେ ନଇଲେ ବା କଞ୍ଚାଲଙ୍କା ଖଣ୍ଡେ । କେତେବେଳେ ଖାଲି ଭାତ—ବିରି ଡାଲି ଟିକେ । ଊର୍ମି ବୋଉ ବି ସେମିତି । ସ୍ୱାମୀର ମନ ଜାଣି ସେ ଘର ସଂସାରର ସବୁ ହାନିଲାଭ ଚଳାଇ ନିଏ ।

ସେଇ ଦ'ମାଣ ଜମି ଓ ବାଡ଼ିରୁ ଯା ଆମଦାନି ହୁଏ—ସେଇଥିରେ ନିଧି ପଧାନର ସଂସାର ଚଳିଯାଏ । କା' ହାତକୁ ଅନାଇବା ଲୋକ ନିଧିଆ ନୁହେଁ । ସେ ମୁଣ୍ଡ ଝାଳ ତୁଣ୍ଡରେ ମାରି ଖଟେ । କି ବରଷା କି ଶୀତ । ସବୁ ସେ ପଥର ପରି ଅଙ୍ଗେ ନିଭେଇ ଖାଲି ଖଟିଯାଏ । ଗାଁର ଭଲ ମନ୍ଦ, ନ୍ୟାୟ ନିଶାପରେ ବି ବେଳେବେଳେ ନିଧି ପଧାନକୁ ଡକରା ହୁଏ । ନିଧି ପଧାନ ତିନିପୁଅ, ଦି ଝିଅର ବାପା । କିନ୍ତୁ ଗୋଟି ଗୋଟି ହୋଇ ଦି ପୁଅ ଗୋଟିଏ ଝିଅ ନିୟତି ଡାକରାରେ ସେପୁରକୁ ଚାଲିଯାଇଛନ୍ତି । ଅଛି ଖାଲି ଗୋଟିଏ ପୁଅ ଓ ସବା ସାନ ଝିଅଟି । ପୁଅଟି ନାଁ ଚଇତା, ଝିଅଟି ନାଁ ପାରୀ । ପାରି ଦି ବରଷ ହେଲା ବାହା ହୋଇ ସାରିଲାଣି । ଏ ଭିତରେ ଜନ୍ମମାଟି କେତେଥର ମାଡ଼ି ଶାଶୁଘରକୁ ବାହୁଡ଼ିଗଲାଣି ।

ଚଇତା ଅଠର ବରଷର ଜୁଆନ ଟୋକା । ବାପପରି ଲମ୍ବା ବଳିଷ୍ଠ ଚେହେରା । ଦେହର ରଙ୍ଗ ତାର କଳା ହେଲେ ବି ଦେହ ଭଅଁର ପରି ଚକ୍‌କଣ ଗଢ଼ଣଟି ପୁରିଲା ପୁରିଲା ଦେହକୁ ବେଶ୍ ମାନେ ।

ପାରି ବାହାଘର ସରିଲା । ନିଧି ପଧାନ ମୁଣ୍ଡରୁ ଗୋଟିଏ ବୋଝ ସିନା ଖସିଗଲା ହେଲା—ପୁଣି ଆଉ ଗୋଟିଏ ବୋଝ ମାଡ଼ି ଆସିଲା । ପୁଅ ବାହାଘର ପାଇଁ ନିଧି ପଧାନ ମୁଣ୍ଡ ଘୂରେଇଲା । ବୁଲି ବୁଲି ଶେଷକୁ ପାଟପୁର ଗାଁର ବରଜୁ ରାଉତ ଘରେ ସମ୍ବନ୍ଧ ପଡ଼ିଲା । ବରଜୁ ରାଉତର ବଡ଼ ଝିଅ କନକ—ଦେଖିବାକୁ କି ସୁନ୍ଦର ! ସୁନାପରି ଦେହ—ମୁହଁଟି ଗୋଲ ଠିକ୍ ପୁନେଇ ଜହ୍ନ ପରି । ଭସାଣିଆ ଆଖି, ଗୋଟିଏ ଗାଉଁଲିରେ ଗଢ଼ା । ଦେଖିଲେ ଥରେ ମନ ପୂରେଇ ଚାହିଁବାକୁ ଇଚ୍ଛା ହୁଏ ।

ସେଇଆକୁ ନିଧି ପଧାନ ତା ଘରର କୁଳଲକ୍ଷ୍ମୀ କରି ଆଣିବାକୁ ସ୍ଥିର କଲା । କିନ୍ତୁ ଚଇତା ସେଠି ବାହା ହବାକୁ ମଙ୍ଗିଲା ନାହିଁ । କିଏ ତାକୁ କହିଲା ଦେଖିବାକୁ

କାଲୀଟିଏ। ଚଇତାର ଷୋଳପଣ ଇଚ୍ଛା ଥିଲା ତାଙ୍କର ଗାଁରେ ମଦନ ଜେନା ଝିଅ ନୟମାଣିକ ବାହା ହବାକୁ।

ନୟମୀ—ପଦ୍ମଫୁଲପରି ଢଳ ଢଳ ସୁନ୍ଦରୀ ନୟମୀ। ଚଇତା ତାକୁ ପିଲାବେଳୁ ଦେଖିଆସିଚି ଅତି ଆପଣାର ପରି। ମନେ ମନେ ଛପି ରହିଚ୍ଛି କେତେ ଆଶା— କେତେ ଅଜଣା ବାସନା। ନୟମୀକୁ ଯେବେ ସେ ବାହା ହୁଅନ୍ତା, ତେବେ ତାର ଏଇ ପୂରିଲା ପୂରିଲା ଗୋରା ତକ ତକ ଗାଲରେ ବନ୍ଧେ ଚୁମ୍ବନ ଦେଇ ଭିଡ଼ି ନିଅନ୍ତା କୋଳକୁ। ପରକ୍ଷଣରେ ମନର ବାସନା ହଜିଯାଏ କାହିଁ କେତେ ଦୂରରେ। ଅତୀତର ସୁଖମୁଖର ସ୍ମୃତିଗୁଡ଼ା ଖାଲି ଉଙ୍କିମାରେ ମନରେ। ଚଇତାର ସାରା ଶରୀର ତୀବ୍ର ବେଦନାରେ ଭରି ଉଠେ।

ଦିନକର କଥା।

ସବୁଦିନ ପରି ସୁରୁଯ ଦେବତା ଲୁଚିଗଲେ ଦୂର ପାହାଡ଼ ସେପଟରେ। ଗାଁ ଗଣ୍ଡା, ବିଲବାଡ଼ି, ନଈନାଳ, ସବୁଆଡ଼େ ଛୁରିକ ପଡ଼ିଲା କେତେ ରଙ୍ଗ। ସେ ପାଖରେ ଧରି ସୂର୍ଯ୍ୟ ବିଦାୟ ନେଲେ। ଦିବସର କେତେ ଇତିହାସ, କେତେ ସକରୁଣ ଅଭିବ୍ୟକ୍ତି ଲଭିଗଲା ଦୂର ବନାନୀର ଅନ୍ତରାଳ ଭିତରେ—ଜୀବନର ସବୁକଥା ଯେପରି ମରି ମରି ଆସେ ମରଣର ସୀମାହୀନ ଅନ୍ଧକାର ତଳେ। ଜ୍ୟୋତ୍ସ୍ନାର ଜଅଁଳ ଆଲୁଅରେ ଘର ଦୁଆର ଚକ୍‌କଣ ଜରୀ ଶାଢ଼ୀ ପିନ୍ଧି ହସି ଉଠିଲା।

ସଞ୍ଜପହର ଗଡ଼ି ଗଲାଣି। ଚଇତା ମନଖୁସିରେ ଯାଇଁ ନୟମୀ କତିରେ ପହଞ୍ଚିଲା। ନୟମୀର ବୋଉ ଘରେ ନାହିଁ— ବାପା ଯାଇଚି ଗାଁ ଶାମ ସେଣ ଘରକୁ। ଚଇତାକୁ ଦେଖି ନୟମୀ କଥା କହିଲା ନାହିଁ। ଚଇତାର ଦୋଷ ହେଇଚି—ସେ ଗୁରୁଦିନ ହେଲା ନୟମୀ କତିକି ଆସି ନାହିଁ। ନୟମୀର ବାପ ମା ଚଇତାକୁ ଆପଣାର ପରି ଦେଖନ୍ତି। ବେଳେ ବେଳେ କୁହନ୍ତି, ନୟମୀ ସାଙ୍ଗରେ ଯଦି ଚଇତାର ବାହାଘର ହୁଅନ୍ତା, ତେବେ ବାରିବାକୁ କେହି ନଥାନ୍ତେ। ଚଇତା ନିଇତି ଆସେ ନୟମୀ କତିକି। ନୟମୀର ବାପ, ମା ବାଧା ଦିଅନ୍ତି ନାହିଁ। ସେ ମନେ ମନେ ଠିକ୍ କରିଚନ୍ତି ନୟମୀକୁ ଦିନେ ଚଇତା ହାତରେ ସମର୍ପି ଦେବେ। ନୟମୀର ରୋଷ ଦେଖି ଚଇତା କହିଲା, ନୟମୀ କଥା କହିବୁ ନାହିଁ? ତଥାପି ନୟମୀ ଅଟଳ। ଚଇତା ରାଗରେ ଫେରି ପଡ଼ି ଆସୁ ଆସୁ ଦୁଆର ବନ୍ଧଟା ତା ମୁଣ୍ଡରେ ପିଟି ହୋଇଗଲା। ମୁଣ୍ଡଟା ଫାଟି ଖାଲି ରକ୍ତ ବୋହିଲା। 'ଉହୁଁ' ବୋଲି କହି ଚଇତା ବସି ପଡ଼ିଲା। ନୟମୀ ଛୁଟି ଆସିଲା। କହିଲା, ଚଇତା ଭାଇ, କଣ ହେଲା? ଚଇତା ନୟମୀକୁ ଦୂରକୁ ଠେଲି ଦେଇ

କହିଲା, କାହିଁକି ତୁ ପର କଥା କହୁ ନଥିଲୁ—ପୁଣି କାହିଁକି ମୋ କଥାକୁ ଆସୁଚୁ ?

ନୟନମଣି ଦେଖିଲା ଚଇତା ଭାଇ ମୁଣ୍ଡରେ ରକ୍ତ । ଆଖି ତାର ଲୁହ ଛଳ ଛଳ ହୋଇ-ଆସିଲା । ବାଧା ନ ମାନି ସେ ଚଇତା ଭାଇ ମୁଣ୍ଡରୁ ନିଜ ଲୁଗାକାନିରେ ରକ୍ତ ପୋଛିବାକୁ ଲାଗିଲା । ଚଇତା କହିଲା, ନୟନମଣି ତୁ ମୋତେ ଗାଳି ଦେଲୁ କି ? ନୟନମଣି ଆଖିରୁ ଝର ଝର ପଡ଼ିଲା ଲୁହ । ତମକୁ କେବେ କେଉଁଦିନ ଗାଳି ଦେଇଚି ଚଇତାଭାଇ ? ଚଇତାର ମନ ନଇଁ ପଡ଼ିଲା ସ୍ନେହରେ । ସେ ନୟନମଣି ଆଖିରୁ ଝର ପଡ଼ୁଥିବା ଲୁହ ପୋଛି ଦେଇ କହିଲା, ନୟନମଣି କାନ୍ଦୁଚୁ କାହିଁକି—ମୁଁ ସେମିତି ତୋ ମନ ବୁଝିବାକୁ କହୁଥିଲି ନା ! ନୟନମଣିକି କୋଳରେ ଚୁପିଧରିଲା ଘଡ଼ିଏ କାଳ । ନୟନମଣି ଲତାଟି ପରି ଚଇତା କୋଳରେ ଛନ୍ଦି ହୋଇ ପଡ଼ିଲା ।

ଦିନ ଗଡ଼ି ଯାଇଚି । କେତେ ଜହ୍ନରାତି ହଜି ଯାଇଚି ଚଇତା ନୟନମଣିର ବୁକୁ ଉପରେ । ଚଇତାର କେତେ ତାଳିଲା ପରଶ ନୟନମଣିର ଓଠ ଉପରେ ବାଜିଛି । ଦିନ ଦିନକର କଥା—କାହିଁ କେତେ ଦୂରରେ ହଜିଯାଏ, ଆଉ ପୁଣି ଥରେ ମିଳେନା । ତା'ର ସ୍ମୃତିର ଶେଷ ସୌରଭଟିକି ଖାଲି ଜାଇରହେ କାଳକାଳକୁ । ଚଇତା—ନୟନମଣି । ଗୋଟିଏ ବୃନ୍ତରେ ଦୁଇଟି ଫୁଲପରି ହସି ଉଠିଥିଲେ । କିଏ ଜାଣେ—ଦୁରନ୍ତ କାଳକୀଟ ଦୁହିଁଙ୍କ ସୁନା ସପନକୁ ଚୂନା କରି ଭାଙ୍ଗିଦେବ ବୋଲି !

ଦିନେ ନିଧି ପଧାନର ବାରି ବଗିଚା ଧଡ଼ା ମେଲା ଥିଲା । ଯୋଗକୁ ମଦନ ଜେନାର ଓଲେଇ ଗାଈ ଦି'ଟା ପାଇଁ ବଗିଚା ଭିତରେ ପଶି କେତେ ଫସଲ ସବୁ ନଷ୍ଟ କରିଦେଲେ । ଆଷାଢ଼ ମାସ । ନିଧି ପଧାନ ଦିହ ମିହନତ କରି ବଗିଚାରେ ଜହ୍ନି ଭେଣ୍ଡି, କାକୁଡ଼ି, ଶାଗ ଇମିତି ବାର ରକମର ଫସଲ ଲଗାଇଥାଏ । ନିଧି ପଧାନ ହାତ ବାଜି ବାରି ବଗିଚା ସବୁବେଳେ ହସୁଥାଏ । ନିଧିଆ ସେଇଆକୁ ଦେଖିଲେ ତା ପେଟ ପୂରିଉଠେ । ଘରେ ଖାଇ ଯା ଉପୁରି ଆମଦାନୀ ହେବ ତାକୁ ଗାଁ ହାଟରେ ବିକି ଘର ଖରଚ ମେଣ୍ଟାଇବ । କିନ୍ତୁ ଦେଖିଲା ବେଳକୁ ସବୁ ଶେଷ । ମଦନ ଜେନାର ଓଲେଇ ଗାଈ ଦିଇଟା ପଶି ସବୁ ଫସଲ ନଷ୍ଟ କରି ଦେଇଚନ୍ତି । ନିଧିଆର ମୁଣ୍ଡ ବିଗିଡ଼ି ଚଲି । ରାଗରେ ମଦନ ଜେନାର ସାତପୁରୁଷ ଉଦ୍ଧାର କଲା । ତଥାପି ତାର ରାଗ ଶାନ୍ତ ହେଲା ନାହିଁ । ମଦନ ଜେନା ନିଜ ଗାଁ ଲୋକ—ପଡ଼ୋଶୀ । ରାଗ ପାଇଲେ ମୁହଁ ଚାହାଁ ଚାହିଁ । ସବୁ ସେ ଭୁଲିଗଲା । ଗାଈ ଦି'ଟାକୁ ନେଇ ପାଖ ଗାଁ କାଞ୍ଜିହାଉସରେ ସାଙ୍ଗେ ସାଙ୍ଗେ ଭୁଡ଼ି ଦେଇ ଆସିଲା ।

ମଦନ ଜେନା ଶୁଣିଲା । କଣ କରିବ—ନିଜର ଭୁଲ । ଗାଈ ଦି'ଟାକୁ ଘରେ ବାନ୍ଧି ରଖିଥିଲେ ଆଉ ଏତେ କଥା ହୋଇ ନ ଥା'ନ୍ତା । ଗରିବ ବିଚରା—କେତେ

କଷ୍ଟରେ ଟଙ୍କା ଢଗନଟା ଅକାରଣରେ ଗଣି ଗାଈ ଢ଼'ଟାକୁ ମୁକୁଲେଇ ଘରକୁ ଫେରିଲା । ମନେ ମନେ କହିହେଲ, ନିଧି ପଧାନକୁ ସେ ଭାଇପରି ଦେଖେ । ଭଲ ମନ୍ଦରେ ସବୁବେଳେ ତା'ର କତରକ ଛୁଟିଯାଏ । ପୁଣି ତା'ର ଝିଅ ନୟନ୍ତୀକ ଚଇତା ହାତରେ ଦେବ ବୋଲି କେବେଠୁ ମନେ ମନେ ଠିକ କରି ସାରିଚି—ଏତକ ମୁହଁମୋଡି ଟିକେ ନିଧିଭାଇ ରଖିଲା ନାହିଁ ! ଆଉ ବନ୍ଧୁ ବାନ୍ଧିଲା ବେଳ ତ ଅଛି ମଦନ ଜେନା ମୁଣ୍ଡଟା ବଗିଡ଼ିଗଲା । ସେଇ ଦିନଠୁ ଚଇତାକୁ ତା' ଘର ମାଡ଼ିବାକୁ ମନା କଲା । ଚଇତା ଯେତେ ବୁଝାଇଲା—ମଦନ ବୁଝିଲା ନାହିଁ । ଏକବାଗିଆ ଲୋକଟା—ଯା ବୁଝିଁଥିବ ସେଇଆ । ସାମାନ୍ୟ ଘଟଣାରୁ ନୟନ୍ତୀ ଚଇତାର ସବୁ ସୁଖ ସପନ ପୋଡ଼ି ପାଉଁଶ ହୋଇଗଲା ।

ଚଇତା କିନ୍ତୁ ନୟନ୍ତୀକୁ ଭୁଲି ପାରିଲା ନାହିଁ । ସବୁବେଳେ ତାକୁ ଦେଖିବାକୁ ତାଙ୍କ ଘର ବାଟେ ବାଆଁରେଇ ଯିବା ଆସିବା କରେ । ବେଳେ ବେଳେ ସେ ନୟନ୍ତୀକୁ ଦେଖେ କବାଟ କଣରୁ—ବେଳେ ବେଳେ କୂଅମୂଳେ—ଚଉଁରା କଡରେ । ନୟନ୍ତୀ ଚାହିଁ ରହେ ଚଇତାକୁ—ଆଖିରେ ତାର ଲୁହ ଭରିଆସେ । ଚଇତାର ହୃଦୟରେ କିଏ ହାତୁଡ଼ି ଧରି ପିଟେ । ଇମିତି ସେ ନୟନ୍ତୀକୁ ଦୂରରୁ ଦେଖି ଫେରେ ।

ଚଇତା ଜିଦ୍ ଧରି ବସିଲା ସେ ସେଠି ବାହା ହେବନି; କିଏ ତାକୁ ମିଛରେ କହିଲା, ବରଜୁ ରାଉତ ଝିଅଟା ଜହ୍ନି ମଞ୍ଜିପରି କାଳୀ—ଅସୁନ୍ଦରୀଟାଏ । ବାପା ତାର ଅନେକ ବୁଝାଇଲେ—ସେ ବୁଝିଲା ନାହିଁ । ନିଧି ପଧାନ ମନଟା ଦୁଃଖରେ କରତ ହେଲା । ସେ ଖାଇଲା ପିଇଲା ନାହିଁ । ବୋଉ କହିଲା, ଚଇତା, ବାପ ଯିଏ ତୋର, ସେ କଣ ତୋତେ ଭଲରେ ଘର କରିବାକୁ କି ସୁଖରେ ରହିବାକୁ ଚାହେଁନା ! ଛିଃ, ଧନଟା ପରା—ବାପ କଥାରେ ଅମତ ହୋନା । ତାଙ୍କ ମନ ଦୁ ଦିନ ହେଲା ଭଲ ନାହିଁ । ଯା ତାଙ୍କ ମନରେ ଟିକିଏ ଶାନ୍ତି ଦେ । ଆମର ଦିନକାଳ ତ ପୂରିଆସିଲାଣି । ଆଉ କେଇଟା ଦିନ ତୋର ହସ ଖେଳର ସଂସାର ଦେଖି ଟିକିଏ ସୁଖରେ କଟୁ । ଚଇତାର ବଗିଡ଼ା ମନଟା ବାଟକୁ ଫେରିଲା ।

ଗଲା ବରଷ ଫଗୁଣ ମାସରେ ଚଇତାର ବରଜୁ ରାଉତ ଝିଅ କନକ ସାଥିରେ ବାହାଘର ହୋଇଗଲା । ବାହାଘର ସାରି ନିଧି ପଧାନ ଟିକିଏ ଶାନ୍ତିରେ ନିଶ୍ୱାସ ମାରିଲା । ଗାଁ ଗୋଟାକରେ ଚହଲ ପଡ଼ିଲା ନିଧି ପଧାନ ବୋହୂଟି ଲକ୍ଷ୍ମୀ ପରି । ଖୁଣିବାକୁ କେହି ନାହିଁ । ନିଧି ପଧାନ, ଉମିବୋଉ ଗୁଡ ଗର୍ବରେ ଫୁଲି ଉଠିଲା । ଆଉ

ଚଇତା—ତା'ର ଅବୁଝା ମନଟା ଘର ଧରିଲା । ଅଜ୍ଞାତର କ୍ଷଣିକ ଉତ୍ତେଜନାର ଭୁଲ ପାଇଁ ଅନୁତାପ କଲା । ମଧୁଶଯ୍ୟା ରାତ୍ରି । ଗାଁ ଲେଖାରେ ଯିଏ ଭାଉଜ ହେବେ—ସେ ହସି ହସି ଆସି ଆଗେ ଚଇତାକୁ ଘରେ ଛାଡ଼ିଦେଇ ଗଲେ । ଆଉ କହିଲେ, ଦେଖ କାଳୀବୋହୂ ବୋଲି ଯିମିତି କରିଛଡ଼ା ନଦିଅ । ଚଇତା ମୁହଁରେ ଫୁଟି ଉଠିଲା ପରିତୃପ୍ତିର ହସ । ଟିକିଏ ପରେ ଚଇତା କଡରେ କନକକୁ ଆଣି ଭାଉଜ ଛାଡ଼ିଦେଇ ଗଲେ । କନକ ଆସୁ ନଥିଲା—ଘଡ଼ିଏ ଜିଦ୍ କଲା । ଭାଉଜ ବୋଉ ଆଣି ଶେଷକୁ ଟାଣି ଟାଣି ଚଇତା ହାତ ମୁଠାରେ ତା ହାତ ଧରାଇ କହିଲେ, ନିଅ ତମର କନକକୁ—ଏଥର ମୋର ଛୁଟି । ଭାଉଜ ହସି ହସି କବାଟ ଆଉଜାଇ ନେଲେ ।

ଶୁକ୍ଳ ପକ୍ଷ । ଦଶମୀ ଜହ୍ନର ମେଘ ମଉଳା ଫିକା ଆଲୁଅ ବାତାୟନ ଦେଇ ଘରେ ପଡ଼ୁଚ ଏଣେ ତେଣେ । ରୁଦ୍ଧ କକ୍ଷରେ ଦୀପଟି ଜଳୁଚ—କ୍ଷୀଣ ଅତି କ୍ଷୀଣ । ଚଇତାର ହାତ ମୁଠାଟି ଖୋଲିଗଲା । କନକ ହାତଟା କାଢ଼ି ଟିକିଏ ଦୂରକୁ ଘୁଞ୍ଚିଗଲା । ଘଡ଼ିଏ ନୀରବ—ପ୍ରଦୀପ ନିସ୍ତେଜ—ନିଷ୍ପ୍ରଭ । ଚଇତା ଛାତି ଭିତରେ ଅଜଣା ସ୍ପନ୍ଦନ । ଧୈର୍ଯ୍ୟର ବାଲିବନ୍ଧ ଭାଙ୍ଗିଗଲା । ପାଗଳ ପରି ଚଇତା ଟାଣି ଆଣିଲା କନକକୁ ନିଜ କୋଳକୁ । ଓଢ଼ଣା ମୁହଁରୁ ଟାଣି ଦେଲା । କନକ ଦେହରୁ ଲୁଗା ଫାଳେ ଖସି ପଡ଼ିଲା । କନକର ସୁନ୍ଦର ରୂପଛବି ଦେଖି ଚଇତା ଭୁଲିଗଲା ନିଜକୁ । କନକ ଅଭିମାନିନୀ ପରି କହିଲା, କାହିଁକି—ମୁଁ ତ କାଳୀ—ଅସୁନ୍ଦରୀଟାଏ, ମୋ ସାଙ୍ଗରେ କାହିଁକି ଲାଗିଚ ! କନକର ଅଭିମାନଭରା ପ୍ରଶ୍ନର ଉତ୍ତର ଦେବା ଅବସ୍ଥାରେ ଚଇତା ନଥିଲା । ଝରକା ଦେଇ ଝଲକାଏ ପବନ ବୋହି ଆସିଲା । ଦୀପଟା ଲିଭିଗଲା । ତା'ପରେ ସବୁ ଅନ୍ଧାର—ଅନ୍ଧକାରରେ ଦୁଇଟି ଅତୃପ୍ତ ଆତ୍ମା ହଜିଗଲା କାହିଁ କେତେ ଦୂରରେ—କଳ୍ପନା ରାଇଜର ସରଗ ସେ ପଟରେ ।

କନକକୁ ପାଇ ଚଇତା ଭାରି ଖୁସି । ସବୁବେଳେ ମନଟା ତା'ର ପ୍ରାଣ ଥୁରାଇ ଦେଖିବାକୁ ଛଟପଟ ହୁଏ । ବାରିତଳ ଜମିରେ ହଳ କରୁ କରୁ କେତେବେଳେ ଚଇତା ଛୁଟି ଆସେ ପାଣି ପିଇବା ବାହାନାରେ କନକକୁ ଦେଖିବାକୁ । କନକ ହସି ହସି ପାଣି ନେଇ ଛୁଟି ଆସେ । ବଚଣା ଧରି ଘଡ଼ିଏ ବସିଦିଏ । ଟିକିଏ ନିଶ୍ୱାସ ମାରି ବାହୁଡ଼ିଯାଏ ।

ପୁଣି ସେ କାମରେ ଲାଗେ—ଠିକ ଠିକ ମାତାଲ ପରି । ହେଲେ ହେଲେ ମନ ଖୁସିରେ ଗାଇଦିଏ ଉପଇନ୍ଦ୍ର ଭଞ୍ଜଙ୍କ ଛାନ୍ଦରୁ ପଦେ—ହେଲେ ହେଲେ ଭୀମ ଭୋଇ

ଭଜନରୁ ପଦେ । ମନଟା ଯେତେବେଳେ ପବନ ପରି ଚଞ୍ଚଳ ଫୁର୍ତ୍ତି ଥାଏ— ସେତେବେଳେ କେତେ ଆଡ଼େ ଉଡ଼ି ଉଡ଼ି ଧାଏଁ କଳନା ହୁଏନା । ଚଇତା କନକକୁ ପାଇ ସବୁ ଭୁଲିଯାଏ ।

ପୁଅ, ବୋହୂ, ଘରଜାଲୁ ନେଇ ନିଧି ପଧାନ ଗୃହଜଣ । ଇମିତି ତା'ର ଗ୍ରେଟିଆ ସଂସାରଟି । ନାହିଁ ଦୁଃଖ, ନାହିଁ ବଡ଼ଲୋକର ଭୋଗ ବିଳାସର ଚିହ୍ନ । ଉପରେ ନେଳିଆ ଆକାଶ, ଉଦାର ପ୍ରଶାନ୍ତ—ତଳେ ଶ୍ୟାମଳ ଧରଣୀର ମାଟି—ସବୁଜ, ସୁନ୍ଦର । ତା'ର ଉପରେ କେତେ ମହାଦେଶ, ଦେଶ, ପ୍ରଦେଶ କେତେ ଗାଁ । ତା ଭିତରେ ପୁଣି ଗ୍ରେଟିଆ ଗାଁଟି ରଘୁପୁର । କୋଉ ଗାଁରେ ଲେଖା, ନ ହେଉ ପଛେ ବଡ଼—ହେଉ ପଛେ ଅଜଣା ଅଶୁଣା, ତଥାପି ସେ ଗାଁଟି ତାର ଅତି ଆଦରର । ସେଇଠି ସେ ଜନ୍ମ ହୋଇଚି । ଜନ୍ମମାଟିର ମମତା ଘେନି ବଡ଼ ହୋଇଚି । ତାର ପୂର୍ବପୁରୁଷ କେତେ ସେଇ ଗାଁକୁ ଅଡ଼େଇ ଦିନ ପାଇଁ ଆସି ମରି ହଜିଗଲେ । ସେ ବି ଦିନେ ଯିବ ।

ନିଧିପଧାନ ଭାବେ, ଜୀବନଟା ଅଲେଡ଼ା, ଅସାର । ବର୍ଷ ଉଦ୍ବହଦାରେ କାହିଁ ଆନନ୍ଦ—କାହିଁ ଜ ଗରଣ ଖାଲି ସ୍ୱପ୍ନ—ଜୀବନଟା ଗୋଟାଏ ବିରାଟ ସ୍ୱପ୍ନ । ସ୍ୱପ୍ନ ତୁଟିଗଲେ ସବୁଶେଷ, ତା'ପରେ ଅସ୍ତିତ୍ୱ ହଜି ଯାଇଥିବା ଗୋଟାଏ ବିରାଟ ମରୁଚିକା ପରି ।

ତାର ବଡ଼ଝିଅ ଉମି—ଦି' ପୁଅ ରତନା, ସୁଦାମ । କାହାନ୍ତି ସେ ସବୁ ଆଜି ? ସବୁ ଆସିଚନ୍ତି ପୁଣି ଗ୍ଲଲି ଯାଇଛନ୍ତି ଦୂରଦିଗ୍‌ବଳୟ ସେପଟକୁ । ନିଧି ପଧାନ ସେଇ ଆଡ଼କୁ ଗ୍ୱହିଁ ବସି ବସି ଭାବେ—ଯେଉଁଠି ସରଗ ଛୁଇଁଚି ମାଟି, ଆକାଶ ଅବନୀର କୋଳାକୋଳି, ଛନୋଟି ପିଲାଙ୍କର ହସ ହସ ମୁହଁ—ଦରୋଟି ବଚନ କାନରେ ବାଜି ଉଠେ । ଚହଲି ଉଠେ ଭାବନା—ଆଖିରୁ ତାର ଝରିପଡ଼େ ଲୁହ ।

ପୁଣି ଭାବନା ବଦଳେ । ଆଖି ଆଗରେ ଭାସିଉଠେ ତାର ସୁନାର କ୍ଷେତ— ଗ୍ରେଟିଆ ସଂସାର । ଚଇତା ପରି ତାର ପୁଅ ଅଛି—ପାଖି ପରି ଝିଅ—କନକ ପରି ବୋହୂ—ଆଉ ଭଙ୍ଗା ହାଡ଼, ଭଙ୍ଗା ଜୀବନର ସାଥୀ ଉମିବୋଉ—ରଙ୍ଗୀନ ଅତୀତ ନାଚି ଉଠେ । ମନ ଧାଏଁ । କାହିଁ ଅତୀତ—କାହିଁ ବର୍ତ୍ତମାନ । ଉମିବୋଉର ଯଉବନ-ବସନ୍ତ ବିଦାୟ ନେଇଚି—ଅଛି କେବଳ ଅଧମଉଳା ଜୀବନଟା । କେବେ କେତେବେଳେ ଝଳି ପଡ଼ିବ—ଗୋଧୂଳୀର ଅନ୍ତରାଗ ଭିତରେ

ଜୀବନର ଶେଷ ଆଲୋକ କଣା ଟିକକ ହଜିଯିବ—ଗ୍ରାଢ଼ଅଗ୍ର ଅନ୍ଧକାର ପରଶରେ । ତା'ପରେ ଜୀବନରେ କେବେ ସୂର୍ଯ୍ୟ ଉଠିବ—କିଏ ଜାଣେ ?

ଭାବନାର ସ୍ୱପ୍ନ ରାଇଜରୁ ଫେରିଆସେ ନିଧି ପଧାନର ମନ । ଆଖି ଆଗରେ ବିରାଟ ଦୁନିଆଁ—କେତେ ଘର, କେତେ ମଣିଷ । ସବୁଜ ଧାନକ୍ଷେତ ତାର ହସି ଉଠିଚ । ଭରା ଫସଲ, ଧାନଯେଡ଼ର ବାସନାରେ ତାର ଅନ୍ତର ଆଶା ଓ ଉଲ୍ଲାସରେ ମହକି ଉଠେ । ସେ ଭାବେ ବଞ୍ଚିବାରେ ଆନନ୍ଦ ଅଛି—ସୁଖ ଅଛି । ଜୀଲାୟିତ ସ୍ୱପ୍ନ ଯାଏ ଭାଜି—ସେ କାମରେ ଲଗେ—ଦିନ୍ ଦିନ ।

ଚକ ଘୂରିଗଲେ । କେତେ ବରଷ, କେତେ ମାସ, କେତେ ଦିନ ଡିଆଁର ହୁଏ । ପୁଣି ହଜିଯାଏ ମଉଳା ଫୁଲର ଝଡ଼ା ପାଖୁଡ଼ା ପରି ଅମଡ଼ା ଦୁନିଆର ଅସରନ୍ତି ପଥରେ । ସମସ୍ତର ବାଲି ଉପରେ ଖାଲି ତାର ଚିହ୍ନ ରହିଯାଏ ।



ବୈଶାଖର ଖରଫୁଟା ଖରା । ଶୁଖିଲା ପୃଥିବୀ—ଚାରିଆଡ଼େ ହାହାକାର, ଖାଁ ଖାଁ । ନରମୁଣ୍ଡିଆ ଦ' ପହରରେ ସାଇଁ ସାଇଁ ଝାଞ୍ଜି ପବନ ବହୁ ବ୍ୟକ୍ତିଙ୍କର ତଣ୍ଟି ଶୁଖାଇ ଦେଉଛି । ଚଇତ ଶେଷରୁ ଗାଡ଼ିଆ ଝୋଲରୁ ପାଣି ଶୁଖିଯିବାକୁ ବସିଲାଣି । ଗଛ ଲତାର କଅଁଳ ଛନଛନ ଦେହ ଝାଉଁଳି ପଡ଼ିଲାଣି । ପକ୍ଷୀ-ଗୁଡ଼ାକ ଆଁ କରି ପତ୍ରର ଗହଳରେ ନିଜକୁ ଖରାତାପରୁ ଲୁଚାଇ ବସିଛନ୍ତି ।

ମରୀଚିକା ଦୂରରେ ଝିଲମିଲ ହୋଇ ନାଚୁଛି—କେଡ଼େ ସୁନ୍ଦର ଦିଶୁଛି ସତେ ! ପଥଚଲା କ୍ଳାନ୍ତ ପଥିକ ଚାଲିଚି କିନ୍ତୁ ଆଶା ତା'ର ମରିଯାଉଛି । ଦେହର ଝାଳ ପୋଛି ଭାବୁଛି ପଥ ମୋର କେବେ ସରିବ ? ଖଣ୍ଡିଆ ଭଙ୍ଗା ବିଲର ଶୁଖିଲା ନଡ଼ା, ରାସ୍ତାର ଧୂଳି ଓ ଶୁଖିଲା ପାଚିଲା ପତ୍ରର ଗୋଟେଇ ଗୋଟାଏ ଖମ୍ବ ତୋଳୁଛି ଆକାଶକୁ । ଅକ୍ଷୟତୃତୀୟା ଗଲାଣି ଦ' ଦିନ ହେବ—ତଥାପି ଆକାଶରେ ଖଣ୍ଡେ ବଉଦର ଦେଖା ନାହିଁ । ଚାଷିକୁଳ ଆଁ କରି ଅନାଇଛନ୍ତି, ଜମି ଆଉ କେବେ ହଳ ହେବ ! ଚାରିଆଡ଼େ ହାହାକାର—ବୁକୁଫଟା ତାତିଲା ନିଶ୍ୱାସ ।

ନିଧି ପଧାନ ଦେଖୁଛି ଏ ବରଷ ଆଉ ଭଲ ଫସଲ ହେବାର ଆଶା ନାହିଁ । ମୁଣ୍ଡଟା ତାର ଘୂରାଇ ଦେଉଛି । ଗଲା ସନ ଚଇତାକୁ ବାହା କରିଛି—ଦି ଶହ ଟଙ୍କା କରଜ । ଭାବିଥିଲା, ଏ ବରଷ ଘର ଖର୍ଚ୍ଚ ମେଣ୍ଟାଇ ଯା ଉପୁରି ଆମଦାନୀ ହେବ ସେଇଆକୁ ବାକି ସେ ଦେଣା ଶୁଝି ଦେବ । କିନ୍ତୁ କାହିଁ ତାର ଆଶାର ଫଳ !

ଆଶା—ମଣିଷର ଆଶା ଏଇ ଆକାଶ ପରି ବିରାଟ, ମହାନ । କେଇଟା ଦିନକୁ କେତେ କଥା—କେତେ ଭାବନା । ଭବିଷ୍ୟତ ନାଚି ଉଠେ—ଆଶାର ମାୟା-ମୃଗ ଦଉଡ଼େ ତାରି ପଛେ ପଛେ । କେତେବେଳେ କେଉଁ ଅଜଣା ଆଲୋକିତ ପଥରେ ଜୀବନଟା ଯାଇ ପଡ଼େ—କେତେବେଳେ ବିରାଟ ମରୁଭୂମିରେ ନିରାଶାର ଝଡ଼ ଉଠେ । ବ୍ୟର୍ଥ ଜୀବନ ନଇଁପଡ଼େ ହତାଶାର ଦୂର ଦିଗ୍‌ବଳୟ ସେ ପଟରେ । ଜ୍ୟେଷ୍ଠ ଅଧାଅଧି ହେଲାକୁ ଆକାଶରେ ଖଣ୍ଡେ ବଉଦ ଦେଖା ଦେଲା । ଅସରାଏ, ଅସରାଏ ବର୍ଷା ହେଲା—ଜୀବନ ପଶିଲା ପୃଥିବୀ ଦେହରେ । ନିଧି ପଧାନର ଭଙ୍ଗା ହୃଦୟରେ ଶୀତଳ ସ୍ନିଗ୍ଧ ପରଶ କିଏ ବୁଲାଇ ଦେଲା । ତଥାପି ତା ମନରେ ଅଶାନ୍ତ । ଯୋଉ ବର୍ଷା ଅସରାଏ ହେଲା କୁଆଡକୁ କାମରେ ଆସିଲା ନାହିଁ—ପୁଣି ଟାଇଁଟାଇଁଆ ଖରା ।

ଦିନେ ସଞ୍ଜବେଳେ । ଦିଗହଜା ନିବୁଜ ଅନ୍ଧାର ତଳେ ନିଧି ପଧାନର ଘର ଦୁଆର ହଜି ଯାଇଛି । ଦାଣ୍ଡପିଣ୍ଡାରେ ଧିକ ଧିକ ଜଳୁଚି ଲଣ୍ଠନଟା—ପୁରୁଣା ସାତଚିରା ମସିଣା ଉପରେ ବସି ବସି ନିଧି ପଧାନ ଭାବୁଚି ଜୀବନର ଅନାଗତ ଦିନର କଥା । ଏତିକବେଳେ ଗାଁର ଭୋଳା ସାମୁଲ ଆସି ପହଞ୍ଚିଲା ।

ନିଧିଆ ପଚାରିଲା; କି ସାମୁଲ ପୁଅ, କୁଆଡ଼େ କି ? ସାମୁଲ ହସି ହସି କହିଲେ, କାଲି ଯାଉଚି କଲିକତା—ଯାଉଥିଲି ଏଇ ବାଟେ—ଭାବିଲି ପଧାନପୁଅଙ୍କୁ ଟିକେ ଦେଖା କରି ଯାଏ । ପୁଣି କେବେ ଭାଗ୍ୟରେ ଥିଲେ ବରଷେ ଛ ମାସରେ ଗାଁକୁ ଲେଉଟିବା କଥା—ନଇଲେ ନାହିଁ । ପଧାନେ କହିଁ ଲେଇ ପଚାରିଲେ, ଆଚ୍ଛା ସାମୁଲେ, କଲିକତା ଚାକିରିରୁ ଆମଦାନୀ କମିତି ହେଉଚି—ବେଶ୍ ଭଲ୍ ତ ? ସାମୁଲ କହିଲେ ହଁ ପଧାନେ, ବେଶ୍ ଦି ପଇସା ହୁଏ । ଯୋଉ ହାଡ଼ ଭଙ୍ଗା ଖଟଣି ! ବେଳେ-ବେଳେ ଦିକ୍‌ଦାର ଲାଗେ । ପଧାନେ କହିଲେ, ପରିଶ୍ରମ ନକଲେ ଲକ୍ଷ୍ମୀ ଆସେନା ସାମୁଲେ । ସାମୁଲ କହିଲେ, ତା' ସତ ପଧାନେ, ତେବେ ବିଦେଶୀ ଜୀବନଟା ବଡ଼ ଅଭିଶପ୍ତ ଜୀବନ । ତା' ନହେଲେ ଅତି ଆପଣାର ଏଇ ଘର ଦୁଆର, ସ୍ତ୍ରୀ, ପୁଅ, କୁଟୁମ୍ବକୁ ଛାଡ଼ି ସାତ ସାଇଜ ତେର ନଦୀ ପାରି ହୋଇ କିଏ ବିଦେଶରେ ମୁହଁ ମାଡ଼ି ପଡ଼ିରହନ୍ତା ? ପଧାନେ ହସିଲେ । କହିଲେ, ଏ ଜୀବନରେ ଆଉ ମୋର ବିଦେଶ ଯିବା ଘଟିଲା ନାହିଁ । ଏଇ ପିତୃପୁରୁଷ ଜମିରେ ଖଟି ଖଟି, କେବେ ଦିନେ ତାରି କୋଳରେ ଢଳି ପଡ଼ିବି, କିଏ ଜାଣେ ! ଦିନ କାଳତ ଆସୁନାହିଁ—ଯାଉଛି । ଚଇତା ମୋତେ ମୁଠାଏ ମାଟି ଦେଲେ ସେଇ ମୋର ସାରା ଜୀବନର ଶାନ୍ତି ।

ତା'ପରେ ସୁଖ ଦୁଃଖ କେତେ କଥା ପଡ଼ିଲା । ପଧାନ କହିଲେ, ଏ ବରଷ ଆଉ ଫସଲ ହେବାର ଆଶା ନାହିଁ । ଜ୍ୟୋଷ୍ଠ ଆସି ସରିବା ଉପରେ । ଭଲକରି ଦି' ଅସରା ବର୍ଷାତ ହେଲା ନାହିଁ । ଜମି ହଳ ହେବ କେବେ ? ଗୃହୀ କୂଳରେ ଖାଲେଣି ପଡ଼ିଗଲାଣି ସାମୁଡ଼ି—କେମିତି ସେମାନଙ୍କର ଘରସଂସାର ଚଳେଇବେ । ସାମୁଲ କହିଲେ; ଯା କହୁଛ ସତ ପଧାନେ—ଗରିବଙ୍କର ଭେଲା ବୁଡ଼ିଲା । ସାମୁଲେ ଉଠିଲେ—କହିଲେ, ଯାଉଚି ପଧାନେ ଦଣ୍ଡବତ । ପଧାନେ ହସି ହସି କହିଲେ, ସାମୁଲପୁଅ, ଚିଠିଦେବ ଭଲ ମନ୍ଦ ଖବର ଲେଖି । ସାମୁଲ ହଁ ଭରିଲେ । ତା'ପରେ ସେଇ ଅନ୍ଧାରରେ ଘରମୁହାଁ ଧରିଲେ ।

ସାମୁଲ ଚାଲିଯିବାରୁ ନିଧି ପଧାନ ମନରେ ଚେଇଁ ଉଠିଲା କେତେ କଥା । ଏଇ ଭୋଳ ସାମୁଲ, ବାପ ମଲାବେଳେ ଘରଡିହ ଛଡ଼ା ଜମି ବୋଲି ଟିକେଟେ ନ ଥିଲା । ପୁରୁଣା ବାଉଁଶ ଘର ସାଆଁ ତବାପ ଅମଳର । ବାପ ମଲା ପରେ ସାମୁଲ ମୂଲ ଲାଗି ଯା ଦି' ପଇସା ଆଣେ— ପେଟକୁ ନିଅଣ୍ଟ । ମା, ଭାରିଯା ନେଇ ତିନି ପରାଣୀ—କଷ୍ଟେ ମଷ୍ଟେ ଦିନେ ଖାଇଲେ ଦି'ଦିନ ଓପାସ । କେତେ ଥର ତା'ର କାକ ଦଉଡ଼ି ଆସେ । ପଧାନେ ଦି ସେର ଚାଉଳ ଧାର ଦିଅ । କାଲିଠୁ ଓପାସ । ଘରେ ଖୁଦ ମକୁଣ ବି ଯା ଥିଲା—ସବୁ ଝାଡ଼ି ଝୁଡ଼ି । ଆଖି ତାର ଲୁହ ଛଳ ଛଳ । ନିଧି ପଧାନର ପାଷାଣ ହୃଦୟ ବି ତରଳି ଯାଏ । କେତେ ବାର ଉମିବୋଉକୁ ଲୁଚେଇ ଲୁଚେଇ ଭୋଳ ସାମୁଲକୁ ଚାଉଳ, ଲୁଣ, ଦି'ଟା ପନିପରିବା ଯା ଯେତେବେଳେ ମିଳେ ଦିଏ । ସାମୁଲ କୁହେ, ତୁମ ଋଣ ମୁଁ ଶୁଝି ପାରିବି ନାହିଁ । ଆଖିରେ ତାର ଲୁହ ଜକ ଜକ କରେ । ପଧାନେ କହନ୍ତି; ସାମୁଲେ ଦୁଃଖ କରନା । ଭଗବାନ ବଡ଼ଲୋକ । ସେ ଚାହିଁଲେ ଦିନେ ନା ଦିନେ ତୋର ଭାଗ୍ୟ ଫେରିବ ରେ ।

ସତକୁ ସତ ସାମୁଲର ଭାଗ୍ୟ ଆଜି ଫେରିଚି । କଲିକତା ଚାକିରୀରୁ ବେଶ୍ ଦି' ପଇସା ଆମଦାନୀ କରୁଚି । ତାର ସେଇ ପୁରୁଣା କୋଉ କାଳର ଭଙ୍ଗା ବାଉଁଶ ଘର ଆଜି ନାହିଁ । ତାର ଜାଗାରେ ସୁନ୍ଦର କାଠ ଘର ହସି ଉଠିଚି । ଭାରିଯା ବେକକୁ ସୁନାହାର—ନାକକୁ ଫୁଲଗୁଣା । ସଞ୍ଚି ସଞ୍ଚି କଲିକତା ପଇସାରେ ସୁନା ପରି ଜମି ଦି'ମାଣ କିଣିଚି । ଜମିରୁ ଯା ଆମଦାନୀ ହୁଏ—ସାମୁଲର ବରଷକ ଖୋରାକ ଚଳିଯାଏ । ଅଭାବ ଅସୁବିଧାର ଧକ୍କା ଆଜି ଆଉ ତାକୁ ବିଚଳିତ କରି ପାରେନା । ସେ ଆଜି ସୁଖୀ—ଆନନ୍ଦରେ ଭରପୂର ।

ଭୋଳ ସାମୁଲ ଅତୀତକୁ ଭୁଲିଯାଇ ବେଳେ ବେଳେ ଗାଁରେ ନିଜର ବଡ଼େଇ ଦେଖାଏ । କେତେ ବାହାପିଆ ଗପ କରେ । ଲୋକେ ଥଟ୍ଟା କରି କହନ୍ତି,

ଏଇ ସେଇ ଖେଳା ନାଁ—ଯାର ଦିନେ ଖାଇଲେ ତିନିଦିନ ଓପାସରେ କଟୁଥିଲା ! କିଏ କିଏ କହନ୍ତି—ଆରେ, ଏଇ କଲିକତା ପଇସା ଅଢ଼େଇ ଦିନ ରେ—ଏତେ ବଢ଼େଇ କରନା । ନିଧି ପଧାନର କାନକୁ ଏ କଥା ବେଳେ ବେଳେ ଆସେ । ତାର ମନଟା ଖେଳ ସାମୁଲ ଉପରେ ଚିଡ଼ିଉଠେ । ସେ ଭାବେ, କେଇଟା ଦିନ ପାଇଁ ଏଇ ମଣିଷ ଜନମ—ଅଜଣା ଅଶୁଣାରେ କେତେବେଳେ ନିଷ୍ଠୁର ଅଦେଖାହାତ ଆଖିରେ ଅନ୍ଧପୁଟୁଳି ବାନ୍ଧି ଦେବ, କିଏ ଜାଣେ ! ତା'ପରେ ସବୁ ଅନ୍ଧାର—ମରଣ ସାଥିରେ ଜୀବନ ଖେଳିବ ଲୁଚକାଳି । ଏଇଥିପାଇଁ ପୁଣି ମଣିଷର ଏତେ ଦେଢ଼ମା—ଏତେ ଗର୍ବ

କିନ୍ତୁ ଖେଳ ସାମୁଲ ଦିନେ ହେଲେ ପଧାନ ଆଗରେ ନିଜର ବଡ଼େଇ ଦେଖେଇ ନାହିଁ । ପଧାନକୁ ଦଶହାତ ଦୂରରୁ ଦେଖିଲେ ଜୁହାର ହୋଇ କୁକୁର ପରି କୋଡ଼ିଏ ହାତ ପଛେ ପଛେ ଗୋଡ଼ାଇଯାଏ । ନିଧି ପଧାନ ପୁଣି ଭାବେ, ଖେଳ ସାମୁଲଟି ଭାରି ଭଲ ମଣିଷ—ଗାଁର ଲୋକଗୁଡ଼ା ଖରାପ । ତା ଶିରୀ ଦେଖି ନ ପାରି ବାରି କଥା ପଛରେ କହନ୍ତି ଖାଲି ।

ବାପା ଖାଇବେ ଆସନ୍ତୁ । ଭାବନା ରାଇଜର ଦିଗନ୍ତ ସେପାରିରୁ ଫେରି ଆସିଲା ନିଧି ପଧାନର ମନ । ଦେଖିଲା, ଆଗରେ ତାର ବୋହୂ—କନକ । ନିଧି ପଧାନ ଘଡ଼ିଏ କାଳ ଅନାଇ ରହିଲା । ଭାବିଲା, କେଡ଼େ ସୁନ୍ଦର ଲକ୍ଷ୍ମୀଟି ପରି ତାର ବୋହୂ । ଗାଁ ଖଣ୍ଡକରେ ନାହିଁ । ଉମିବୋଉ ପରି ସେ ଆସିଲା ଦିନ ଠାରୁ ସବୁ ଖବର ବୁଝୁଛି । ପିଲାଟା, ଏତେ ବୁଦ୍ଧି କୋଉଠୁ ଶିଖିଲା ! ନିଧି ପଧାନର ମନ କ୍ଷଣକ ପାଇଁ ଅଜଣା ଆନନ୍ଦରେ ଭରିଗଲା । କନକ ପୁଣି କହିଲା, ବାପା ଆସନ୍ତୁ, ଭାତ ଦି'ଟା ଶୁଖି ଝୁଣା ହେଇଯିବଣି ସାଢ଼େ । ଚାଲ୍ ମା—କହି ନିଧି ପଧାନ ଉଠିଲା ।

ଦି'ଦିନ ପରେ ।

ଦି' ପହରର ଟାଇଁଟାଇଁଆ ଖରାଟା ନରମ ପଡ଼ି ନାହିଁ । ପବନଟା ଜୋର୍‌ରେ ପିଟୁଥାଏ । ବେଳେ ବେଳେ ଘର ଗୁହାଳରୁ ନଡ଼ା ଓଲଟ ବାଡ଼ିପଟ ଗଛ ଗହଳରେ ଖେଳୁଥାଏ ଲୁଚକାଳି । ନଡ଼ିଆ ଗଛ ଉପରୁ କାଉଟା ଉଡ଼ି ଆସି ଦୁଆରେ ବସି କା କା ହେଲା । କନକ ଭାବିଲା, କିଏ ଆସୁଛନ୍ତି କି ଆଜି—କାଉଟା କାହିଁକି ଘଡ଼ିଏ ହେଲା କା' କା' ରଡ଼ି ଛାଡ଼ୁଛି । ମାସେ ହେଲା ତ ବାପା ଭାଇଙ୍କର ଦେଖା ନାହିଁ—କେହି କାଲେ ଆସୁଛନ୍ତି କି ? ଏଇଆ ଭାବି କନକ

ମୃଦୁ ଗଳାରେ କାଉକୁ କହିଲା, ଯା ଉଡ଼ିଯା……ଉଡ଼ିଯା । କାଉଟା ଫଡ୍ କରି ଉଡ଼ିଗଲା ।

କନକ ମନଟା ଘୁରେଇ ଗୁରେଇ ହେଲା । ବାପଘରର ଛପିଲା ସ୍ମୃତି ମନେ ପଡ଼ିଲା । ଅତୀତ ଫେରି ଆସିଲା ବର୍ତ୍ତମାନକୁ । କାହିଁ ଅଛି ଆପଣାର ସେଇ ସୁଖ ସୁଆଦଭରା ଦିନଗୁଡ଼ିକ ! ଜୀବନର ଶେଷ ଭରା ବାପ, ମା, ଭାଇ, ସାଙ୍ଗ, ସାଥୀ କାହାନ୍ତି ସେ ସବୁ ଆଜି ! ସେ ଆଜି ପର ଘରେ—ନିଜ ଘର ତାର ବହୁ ଦୂରରେ…ଅନେଇଲେ ଆଖି ପାଉ ନାହିଁ । କନକର ଆଖିପତା ନଇଁ ପଡ଼ିଲା ଲୁହ ଭାରରେ ।

ସନ୍ଧ୍ୟାଖରା ଧରଣୀକୁ ଶେଷ ଆଲିଙ୍ଗନ କରି ବିଦାୟ ନେଉଛି । ଏତିକିବେଳେ ଘରକୁ ଜାମାଜୋଡ଼ହେଇ ପଶି ଆସିଲା କିଏ ଗୋଟିଏ । କନକ ଘର ଭିତରେ ଥାଇ ଚହ୍ନି ପାରିଲା ନାହିଁ । ପଦାକୁ ଆସି ଦେଖେ ତା'ର ଅତି ଆପଣାର ସାନଭାଇ ଶାମ । ହସି ହସି ତାକୁ କୋଳକୁ ନେଇ କହିଲା, ଏତେ ଦିନେ ଅପା କଥା ମନେ ପଡ଼ିଲା ? ମାସେ ହେଲା ଅନେଇ ଅନେଇ ଆଖିରୁ ପାଣି ମଲାଣି—ଏଡ଼ିକି ଦାରୁଣ ତମେ ସବୁ ! ଶାମ ହସି ହସି କହିଲା, ନାଁ ଲୋ ଅପା, ବାପାଙ୍କ ଦେହ ପରା ଭଲ ନ ଥିଲା । କନକ ଚମକି ଉଠି ପଚାରିଲା, କଣ ହୋଇଥିଲା ରେ ଶାମ ?

କଣ ହେବ, ଏଇ ଜର । ପନ୍ଦର ଦିନ ପରେ ସେ ଆଜି ଟିକେ ଭଲ ହେଇ ଉଠିଲେ । ଆସିଥାନ୍ତେ—ବଳ ପାଇଲା ନାହିଁ । ମୋତେ ପଠାଇଲେ; ଆଉ କହିଚନ୍ତି, ତୋତେ ନେବାକୁ ଦିନ ଠିକ୍ କରି ଯିବ ।

କନକ ମନଟା ଗୋଳେଇ ଘାଣ୍ଟି ହେଲା । ହୃଦୟଟା ତାର କହିଲା, ଏଇଲାଗେ ଦଉଡ଼ି ଯା'ନ୍ତା କି ବାପା କତିକି ! ଆଖିରେ ତାର ଲୁହ ଜକେଇ ଆସିଲା । ପରକ୍ଷଣରେ ନିଜର ଦୁର୍ବଳତା ପୋଛି ଶାମକୁ ଖାଇବାକୁ ଦେବାକୁ ବୋଉକୁ ଡାକିଲା । ଆଉ ଭାବିଲା, ନ ଜାଣି କାଉଟା ବୋବାଉ ଥିଲା !

ରାତିରେ ଚଇତାର ଗୋଡ଼ ମୋଡ଼ି ଦେଉ ଦେଉ କନକ କହିଲା, ଶୁଣିଲଣି—ବାପାଙ୍କ ଦେହ ଭଲ ନାହିଁ । ଶାମ ଆସିଚି ମୋତେ ନବାକୁ । ତମର ଇଚ୍ଛା କଅଣ—କେବେ ପଠାଇବ ? ଚଇତା କିଛି କହିଲା ନାହିଁ । କନକର କଥା ଶୁଣି ତା ଛାତିଟା କରତି ହେଲା । କନକ—ଯା'କୁ ଦଣ୍ଡେ ନ ଦେଖିଲେ ସେ ପାଗଳ ପରି ହେଇ ଉଠୁଚି—ତାକୁ ଆଜି ସେ ବଳେ ବଳେ ଦୂରକୁ ପଠାଇ ଦେବ କିପରି ?

ଚଇତାକୁ ନୀରବ ଦେଖି କନକ କହିଲା, ତୁହ ମ କେବେ ପଠାଇବ ? ବାପାଙ୍କୁ ଦେଖିବାକୁ ମୋର ଭାରି ଇଚ୍ଛା ହେଉଚି । ତମ ଅନୁମତି ପାଇଲେ ତେଣିକି ଘରେ ଆଉ କେହି ଅମତ ହେବେ ନାହିଁ । ଚଇତା ଅଭିମାନ ଭରା ଗଳାରେ କହିଲା, ତମର ଇଚ୍ଛା ଅଛି ତ ଯିବ—ମୋତେ କାହିଁକି ପଚାରୁଚ ?

ଆଉ ଆଉ କଥା ଶୁଣି କନକ ଚଇତାର କୋଳରେ ଢଳି ପଡ଼ି କହିଲା, ତମେ ନ କହିଲେ ମୁଁ ଯିବି ନାହିଁ । ଚଇତା କହିଲା, ତୋତେ ଛାଡ଼ିଲେ ମୁଁ ମରିଯିବି କନକ । କନକ କହିଲା, ସିମିତିକା ଅମଙ୍ଗଳ କଥା କହୁଚତ ମୁଣ୍ଡ ପିଟିଦେଇ ମରିବି । ନ ପଠେଇବ ତ ନାହିଁ । କନକକୁ ଆହୁରି କୋଳ ଭିତରକୁ ଟାଣି ନେଇ ଚଇତା କହିଲା, ତୁ ଚାଲିଗଲେ ମୋତେ ଏ ଘର ଦୁଆର ସବୁ କଷ୍ଟ ପରି ଲାଗିବ । ମୋତେ ଛାଡ଼ି ଯିବାକୁ ତୋର ମତ ବଳୁଚି କନକ ଚଇତାର ଆଖିରେ ଲୁହ ଜକ ଜକ କଲା । କନକ ତା' ଲୁଗାକାନିରେ ଲୁହ ପୋଛିଦେଇ କହିଲା, ଛିଃ କାନ୍ଦୁଚ କାହିଁକି ? ତମର ଯେତେବେଳେ ଇଚ୍ଛା ନାହିଁ—ମୁଁ କଣ ଆଉ ଯିବି ? ଚଇତା ଲୁହଭୋଳା ମୁହଁରେ ହସ ଫୁଟି ଉଠିଲା । ତାର ବଳିଲା ବଳିଲା ବାହୁ ଭିତରେ କନକକୁ ଚୁପି ଧରି ଚୁମ୍ବନ କରିବାକୁ ଲାଗିଲା । କନକ ଭୁଲିଗଲା ତାର ବାପା, ମା, ଘରଦୁଆର ଆଉ ଅତୀତର ସେଇ ଦରଲିଭା ସ୍ମୃତିଗୁଡ଼ାକ ।

ଦୁ' ଦିନ ପରେ ଶୀତ ବାହୁଡ଼ିଗଲା । ଶୀତ ଗଲା ପରେ କେଜାଣି କାହିଁକି କନକର ଆଖି ଦିଇଟା ଲୁହରେ ଭାସି ଉଠିଲା । ବାପଘର ସ୍ମୃତିକୁ ସେ ଆଉ ଦୂରକୁ ଏଡ଼ି ଦେଇ ପାରିଲା ନାହିଁ । ଖାଲି ଆଖି ଆଗରେ ନାଚି ଉଠିଲା ତାର ଘରଦୁଆର, ବାପା ବୋଉ ଆଉ ଅତି ଆପଣାର ସାଙ୍ଗ ରୁକ, ରେଶ୍ମୁ, ସଖି, ଫୁଲ, କମଳା କଥା ।

ସତେ ଯେପରି ତାର ଘରଦୁଆର ତାକୁ କହୁଚି—କନକ, ତୁ ଗଲା ଦିନରୁ ଆମେ ହତଶିରୀ ହୋଇଗଲୁଣି । କେବେ ତୋର ହାତର କଅଁଳ ଛୁଆଁକନା ବୁଲାଇ ଆମ ଦେହରେ କେତେ କାତକା ଚିତା ଲେଖି ନୂଆ ଜୀବନ ଆଣିଦେବୁ ? ବାପା ବୋଉ ଲୁହଭରା ଆଖିରେ ଡାକୁଚନ୍ତି, ଆ କନ—ଆମ କୋଳକୁ । ତୋତେ ନ ଦେଖି ଆମେ ଅନ୍ଧ ହେଇଗଲୁଣି । ତୋର ସେଇ କଅଁଳ କଥା ଦୁ'ପଦ ଶୁଣିବୁ ବୋଲି ଅନାଇଁ ବସିଚୁ । ତୋର ଅତି ଆଦରର ସେଇ ଶାଗଟି ତୋତେ ଝୁରି ଝୁରି କେଣ୍ଡା ହେଇଗଲାଣି । ପର୍ଷା ହେଲେ କଣ ହେଲା—ତାର ତ ପୁଣି ସ୍ନେହ, ମମତା ଅଛି । ଆଉ ରୁକ, ରେଶ୍ମୁହେଉକା କହୁଚନ୍ତି—କନ, ତୁ ଗଲଦିନୁ ଆମର ଖେଳ ସରିଯାଇଚି ଲେ—ଭାଲି ଭାଲି ଦିନ

ସରୁନ । ଜହ୍ନ ରାତିର ରାଣୀ ଏଇ ଜହ୍ନିଫୁଲ ମେଳରେ ଗଲା ସନର କଥା ମନେପଡ଼ୁଚ । କୁଆଁର ପୁନେଇ ଜହ୍ନ କୁଆଡ଼େ ହଜି ଯାଇଚ । ଦୁଆରେ ହରଗଉରୀ ଫୁଲର ନାଲି ଓଠରେ ଯେଉଁ ହସ ଟିକକ ଲାଗି ରହିଥିଲା ସେ ବି ମଉଳି ଯାଇଚି । ତୋର କ'ଣ ଏ ସବୁ କଥା ମନେ ପଡ଼ୁନ ! ପଣ୍ଟ ପ୍ରେମରେ ମଜ୍ଜି ତୁ ଦିନା ସବୁ ଭୁଲିଗଲୁ—ଆମେ କିନ୍ତୁ ତୋତେ ଭୁଲି ପାରୁନୁ ।

କନକର ଆଖିରୁ ଲୁହ ଝରି ପଡ଼ିଲା । ନିଜର ଦୁର୍ବଳତାକୁ ଲୁଚାଇବାକୁ ଯାଇ ଲୁଗା କାନିରେ ଲୁହ ପୋଛିଲା; କିନ୍ତୁ ପାରିଲା ନାହିଁ ।



ସକାଳର ଲାଲ ସୂର୍ଯ୍ୟ ଉଙ୍କି ଉଠୁଛି । ଘର-ଦୁଆର, ଗଛ-ଲତା, ନଈ-ନାଳ ସବୁଆଡ଼େ କିଏ ନାଲି ଅବିର ବୁଣି ଦେଲାଣି ସେତେବେଳକୁ । ଦୂର ତାଳ ବଣ ଶିଖ ସବୁଜ ମଥାନରେ କେତେ ଜାତିକା ପକ୍ଷୀ ଉଡ଼ି ବୁଲୁଛନ୍ତି । ବେଳେ ବେଳେ ଗାଉଛନ୍ତି ସକାଳ ସୂର୍ଯ୍ୟକୁ ଚାହିଁ ନୂଆ ଦିନର ମନ ଫୁଲାଣିଆ ଗୀତ । ସେ ଗୀତର ଭାଷା ବୁଝି ନ ହେଲେ ବି ସୁନ୍ଦର ଲାଗେ—ଠିକ୍ ସୁଲୁସୁଲିଆ ବାଆ ପରି ।

ଚଇତା ଉଠି ଦେଖିଲା କି ସୁନ୍ଦର ସକାଳ ! କ'ଣ ମନକୁ ମନ ଭାବିଲା । ତା'ପରେ ଚଞ୍ଚଳ ଚଞ୍ଚଳ ଦାନ୍ତରେ ଦି'ଟିଅ ମାରି ଦେଇ ବୋଉକୁ ଡାକିଲା ଖାଇବାକୁ ଦେବାକୁ । ପାଖଘରୁ ଉତ୍ତର ଆସିଲା, ଚଇତା ସେ ଘରକୁ ଯା'—ବୋହୂ ପରା ଭାତ ବାଢ଼ିଲାଣି ! ଚଇତା ସେ ଘରେ ପଶିଲାବେଳକୁ କନକ ହସି ହସି ପଖାଳ ଭାତରୁ କଂସାଏ ଆଣି ଥୋଇଲା । ଚଇତା ବଡ଼ିଚୂରା, ଖଟା ଟିକେ ଲଗେଇ ପଖାଳ ଭାତ କଂସାଏ ଘଡ଼ିକରେ ଠୁଙ୍କି ଦେଲା । ହାତ ଧୋଇ କନକକୁ କହିଲା କନ; ଆଜି ଏତେ ବେଳଯାଏ ଶୋଇ ପଡ଼ିଲି ଟିକେ ଡାକି ଦେଲୁ ନାହିଁ ? କନକ ହସି ହସି ପଚାରିଲା, କୁଆଡ଼େ ଯିବ କି, ଆଜି ଏତେ ତରବର ! ଚଇତା କହିଲା, ଆଜି ପରା ବାରମାଣିଆ ଭାଗ ଜମିକି ହଳ ନେଇ ଯିବି ! କେତେ ଦୂରରେ ସେ ଜମିଟା । ଫେରୁ ଫେରୁ ଆଜି କେତେ ବେଳ ହେଉଚି କେଜାଣି । କନକ ହସି ହସି କହିଲା, ଏତେ ଡେରି ଯାଏ ଶୋଉଚ କାହିଁକି ? ଚଇତା କହିଲା, ତୁଇ ତ ବାରଆଡ଼ୁ ବାରଗପ କରିବୁ—ଶୋଇ ଦେବୁନି । କନକ ମୁହଁରେ ଫୁଟି ଉଠିଲା ହସ । କହିଲା, ତମେ ତ ଖାଲି ଭଲ ଲୋକ କନକର ହସର ଧାର ଚଇତାର ବୁକୁରେ

ନାଚିଗଲା । ହୃଦୟରେ ବିଜୁଳି ଖେଳିଗଲା । ସେ ଉଠିଯାଇ କନକକୁ ପାଖକୁ ଆଉଜାଇ ତା’ ଗାଲରେ ଚୁମ୍ବନଟାଏ ଆଙ୍କିଦେଲା । କନକ ଲାଜରେ ଦୂରକୁ ଘୁଞ୍ଚିଗଲା । କହିଲା, ଚଞ୍ଚଳ ଯା’ଏ ଘରୁ—ବୋଉ ଆସିବେ ଏଇଲାଗେ । ଚଇତା ହସି ହସି ଘରୁ ବାହାରି ଆସି ବଳଦ ଫିଟାଇ ହଳ ଯୋଚିଲା । ତା’ପରେ ବଳଦ ଅଡ଼େଇ ଅଡ଼େଇ ବାହାରି ପଡ଼ିଲା । ଘର ଡେଇଁ ପଛକୁ ଚାହିଁଲା—କନକ ତାରି ଆଡ଼କୁ ଅନାଇ ରହିଚି । ଗଲା ଆଇଲାବେଳେ କନକର ଆଖି ଦିଇଟା ଚଇତାକୁ ଚାହିଁ ରହିଥାଏ । ଚଇତା ଭାବେ, କନକ ତାକୁ କେତେ ଭଲ ପାଏ ।

ଗାଁର ସେଇ ବଙ୍କା ବଙ୍କା ରାସ୍ତା ଡେଇଁ ଚଇତା ବନ୍ଧକୁ ଉଠିଲା । ବନ୍ଧରୁ ଗଡ଼ି ବଳଦ ଦି’ଟାକୁ ନାଳରେ ପହଁରାଇ ଚଇତା ପୋଲ ପାରି ହୋଇ ଏ ପାଖକୁ ଆସିଲା । ବଳଦ ଦି’ଟା ଓଦା ଜଡ଼ବଡ଼ ହେଇ ଉଠି ଆସିଲେ । ପୁଣି ଚଇତା ତାଙ୍କୁ ଅଡ଼େଇ ଅଡ଼େଇ କିଆ ବୁଦା ଗହ୍ୱର ପାରି ହୋଇ ବିଲକୁ ଗଡ଼ିଲା । ଆଗରେ ଧାଡ଼ି ହୋଇ ଦଶ ବାରଟା ତାଳଗଛ ବିଲ ମଝିରେ ଛିଡ଼ା ହେଇଚି—ମାଟି ଓ ମଣିଷର ନିବିଡ଼ତମ ଜୀବନ-ସଂଗ୍ରାମର ମୂକ ସାକ୍ଷୀ ହୋଇ । ଚଇତା କେତେ ବିଲ ପଟାଳି, କେତେ ହିଡ଼, ଉଇ ହୁଙ୍କାର ପାହାଡ଼, ଅରମା ବୁଦୁବୁଦୁକିଆ ଅନାବନା ଗଛର ଜଙ୍ଗଲ ପାରି ହୋଇ ବାରମାଣିଆ ଜମିରେ ଆସି ପହଞ୍ଚିଲା ।

ଆଗରୁ ଯୋଗୀ ପରିଡ଼ା ପୁଅ ନିଧିଆ ଆସି ତା ଜମିରୁ ଖଣ୍ଡେ ହଳ ବୁଲାଇ ସାରିଲାଣି । ଚଇତାକୁ ଦେଖି ନିଧିଆ କହିଲା, କରେ ଚଇତା ଭାଇ, ଆଜି କ’ଣ ଏତେ ଡେରି, ନୂଆବୋଉ କ’ଣ ଛାଡ଼ୁ ନ ଥିଲେ କି ନାଁ । କ’ଣ ରେ ନିଧିଆ ଚଇତାର ପିଲା ବେଳରୁ ସାଙ୍ଗ । ନିଧିଆଠୁ ଚଇତା ମୋଟେ ଛ’ ମାସ ବଡ଼ । ସେହି ହିସାବରେ ଚଇତାକୁ ଭାଇ ବୋଲି ଡାକେ । ଖାଲି ନାଁକୁ ଡାକେ, କିନ୍ତୁ ଭାଇ ବୋଲି ଖାତିର କରେନା—ବନ୍ଧୁ ପରି ପିଲାଟି ଦିନରୁ ଦେଖେ । ପିଲା ଦିନର କଥା । ନିଧିଆର ଚଇତା ଭାଇ ସାଙ୍ଗରେ ସେଇ ଆମ୍ବତୋଟା ଗହଳରେ କେତେ ଡାଳିମାଙ୍କୁଡ଼ି ଖେଳ, କେତେ ବାଗୁଡ଼ି ଖେଳ, କେତେ ବୋହୂଚୋରି ଖେଳ ବିତିଯାଇଚି ଭାବିଲେ କାଲିପରି ଲାଗେ; କିନ୍ତୁ ଖୋଜି ବସିଲେ ପୁଣି ଆଉ ଥରେ ମିଳେନା ।

ନିଧିଆର ପ୍ରଶ୍ନରେ ଚଇତା ହସିଲା । କହିଲା, ନାଁରେ ଜାଣି ଜାଣି ଆଜି ମୁଁ ଟିକେ ଡେରି କରି ଦେଲି । ଘରଆଡ଼େ କାମ ଥିଲା । ନିଧିଆ କହିଲା, କେଜାଣି ଚଇତା-ଭାଇ ମୋର କିନ୍ତୁ ମନେ ହେଉଚି କାଲି ରାତିରେ ଟିକେ ଡେରିରେ ନିଦ ହେଇଚି । ନିଧିଆର ଅନୁମାନଟା ସତ ହେବାରୁ ଚଇତା ମୁହଁରେ ହସ ଫୁଟି ଉଠିଲା । କହିଲା ନିଧିଆ; ତୋର ଖାଲି ସବୁବେଳେ ସେଇ କଥା ।

ଏତକ କହି ଚଇତା ଜମିରେ ହଳ ବୁଲାଇଲା । ଉପରେ ସୂରୁଯ ଦେବତା ହସୁଛନ୍ତି । କଅଁଳ ଆଲୁଅ ଆସ୍ତେ ଆସ୍ତେ ଟାଣ ହେଇ ଆସୁଚ । ଦୂରରେ ଅରଖ ଗଛର ଫୁଲଗୁଡ଼ା ଫୁଟି ଉଠିଚ ଅସୁମାରୀ । ଟିକିଏ ଗୁଡ଼ି ପାଖରେ ମସ୍ତ ହୁଙ୍କାଟାଏ । ହୁଙ୍କା ଉପରେ ଦ'ଟା ଚଢ଼େଇ ମନ ଖୁସିରେ କ'ଣ ଦୁଃଖ-ସୁଖ ହେଉଛନ୍ତି ।

ହଳ କରୁ କରୁ ନଡଆ କହିଲା, ଚଇତା ଭାଇ ଏ ବରଷ ତ ବେହୋର ଏ ଯାଏ ଦେଖା ନାହିଁ । ଫସଲ ହେବା ସେମିତ ସେମିତକା । ମୁଁ ଭାବୁଚ କଲକତା ଯିବା ପାଇଁ —କାଲି ସାମୁଲ ଯିବ, ଦ'ଗୁଣ ଦନ ପରେ । ବାପା କହୁଛନ୍ତି ତାର ସାଥୀରେ କଲକତା ଯିବାକୁ । ଆମ ଗାଁର କେତେ ଲୋକ ଅଛନ୍ତି କଲକତାରେ । ସମସ୍ତେ ବେଶ୍ ଦ'ପଇସା ରୋଜଗାର କର ଆରାମରେ ଅଛନ୍ତି । ଆମେ ଏଠି ଏତେ ଖଟି ଦେହ ରକତ ପାଣି କର ତଥାପି ପେଟକୁ ବ ଦାନା ଅଣ୍ଟୁ ନାହିଁ । ଚଇତା କହିଲା, ହଁ ରେ ନଡଆ ବାର ମାସ କ ଖରା, ବରଷା, ଶୀତରେ ଏଇ ମାଟି ସଙ୍ଗେ ଆମେ ନଡଦନ ଲଢ଼ୁ । କନ୍ତୁ କାହିଁ ପେଟକୁ, ମୁଠେ ବ ଯୁଟୁନାଇଁ । ଦୁଃଖେ-କଷ୍ଟେ କୌଣସିମତେ ଦନ ଯିବ ଯିନା; ସୁଖ ବୋଲି କହି ହେବନ । ବୁଝିଲୁ ନଡଆ, ଏଇ ମାଟି ଆଜି ପଥର ହୋଇ ଗଲଣି । ଦନ ଥିଲା, ଏଇ ମାଟିରେ ସୁନା ଫଳୁଥିଲା । ଆମର ପୂର୍ବପୁରୁଷମାନଙ୍କର ଏଇ ମାଟି ପ୍ରସାଦରୁ ସବୁବେଳେ ଲକ୍ଷ୍ମୀ ଭଣ୍ଡାର ଭରପୂର ଥିଲା । ଅଭାବ-ଅସୁବଧା, ଦୁଃଖ-ଶୋକ କଛ ନ ଥିଲା— ଥିଲା ଖାଲି ସୁଖ, ଶାନ୍ତି, ଆନନ୍ଦ ଓ ଆଲୋକ । କାହିଁ ସେ ଦନ—ଆଉ ଏ ଦନ ! ସେ ଦନର ପଇସାଗୁଡ଼ା ଏବର ଗୋଡ଼ମାଟି । ଦନକୁ ଦନ ଦୁର୍ଦ୍ଦିନ ଗଡ଼ୁଚ ; ଜନଷ ଭାଉ ନଈବଢ଼ି ପର ଆକାଶକୁ ଉଠୁଚ—ଯେତେ ରୋଜଗାର କଲେ ବ କୁଅଡ଼କୁ ଅଣ୍ଟୁ ନାହିଁ ।

ନଡଆ କହିଲା, ଚଇତାଭାଇ ଯା' କହିଲୁ ନସ୍ଲଟ ସତ କଥା । ମୁଁ ତ ସେଇଥି-ପାଇଁ କଲକତା ଯିବାକୁ ବାହାରଚ । ଜମିବାଡ଼ି ଯା' ଅଛି ସବୁ ବାପା ଦେଖାଶୁଣା କରବେ । ମୁଁ ବଦେଶରେ ଯଦ ଦ'ପଇସା ରୋଜଗାର କରପାରିଲି; ତେବେ ସେଇ ଯଥେଷ୍ଟ । ମିଛରେ ଏଠି ପଡ଼ି ରହି କଛ ଲାଭ ନାହିଁ—ବେକାର ଖଟଣି । ଚଇତା କହିଲା ହଁରେ ନଡଆ, ଏ ମାଟି କାଦୁଅରେ ପଡ଼ି ରହିଲେ କଛ ହେବ ନାହିଁ —ବଦେଶକୁ ଯା', ଆଖି ଖୋଲିଯିବ—ଦ'ପଇସା ଆମଦାନୀ ହେବ । ଦେଖୁନୁ ଆମ ଗାଁର ବଳି ମଲ୍ଲିକକୁ କ । କଣ୍ଢେଇ ଟୋକାଟା—ସେ ପୁଣି ଘର-ଦ୍ୱାର କରି ସାଇକଲ ଚଢ଼ି ବୁଲୁଛି, କୋଠା ମଡ଼େଇ ମଚ ମଚ କର ଚାଲୁଚ । ତୁ କ'ଣ ତାଠୁଁ ଏତେ ହୀନ ! ନଡଆ କହିଲା, ଚଇତା ଭାଇ ସବୁ ଭାଗ୍ୟ କଥା । ଭାଗ୍ୟରେ ଥିଲେ ଏଇ ଲୋକ ଘୋଡ଼ା ଚଢ଼େ । ଭାଗ୍ୟରେ ଥିଲେ ଏଇ ଲୋକ ବାର ଦୁଆର ଭିଖ

ମାଗି ବୁଲେ । ଶ୍ରେଷ୍ଠ ଜାତ ହେଲେ କ'ଣ ହେଲା, ସେ ତ ପୁଣି ମଣିଷ ! ତାର କ'ଣ ବଞ୍ଚିବାର, ସୁଖ କରିବାର ଅଧିକାର ନାହିଁ ? ଚଇତା କହିଲା, ତା କ'ଣ ମୁଁ ମନା କରୁଚି ନଟଆ; ତେବେ ପଇସା ହେଲେ ଏଇ ଲୋକଙ୍କର ବଢ଼େଇ ମୋ ଆଖିକି ଯାଏନା । କରେ ! ଯେତକର ମଣିଷ ସେତକରେ ରହ । ବାମନ ହେଇ ଚନ୍ଦ୍ରକୁ ହାତ ବଢ଼ାଉଚ କାହିଁକି ? ଚଇତା ଭାଇର କଥା ଶୁଣି ନଟଆକୁ ହସ ମାଡ଼ିଲା ।

ସେତେବେଳକୁ ତାଟଲା ସୂରୁଯ ମୁଣ୍ଡ ଉପରକୁ ଉଠିଲାଣି । ବିଲ ମଝିରେ ନାଆଁ ବୃଷ୍ଟି ହେଉଚି । କାହିଁ କେତେ ଦୂରରେ ଝିଲମିଲ ହୋଇ ମରୀଚିକା ନାଚୁଚି ।

ନଟଆ କହିଲା, ଚଇତା ଭାଇ, ଚାଲ ସାଥୀ ହୋଇ କଲିକତା ଯିବା । ତୋ ବାପା ତ ଜମିବାଡ଼ି ଦେଖିବାକୁ ଅଛି ! ଏ ବରଷ ତ ସେମିତି ଫସଲ ହେବାର ଆଶା ନାହିଁ । ବେଳ ଥାଉଁ ଥାଉଁ ସାବଧାନ ହେଲେ ଆଉ ସଂସାର ଚଳାଇବାରେ ଅସୁବିଧା ହେବନି । ଚଇତା ନଟଆର କଥା ଶୁଣି ଟିକିଏ କ'ଣ ଭାବି କହିଲା, ଗଲେ ହୁଅନ୍ତା, ଯିବି ଯିବି ବୋଲି ମୁଁ କେତେଦିନୁଁ ଭାବୁଚି ।—ତେବେ ଆଉ କ'ଣ—ନଟଆ ପଚାରିଲା ।

ଚଇତା ଘଡ଼ିଏ କ'ଣ ଭାବିଲା । ନଟଆ କହିଲା, କା' କଥା ଭାବୁଚୁ ଚଇତା ଭାଇ—ନୂଆବୋଉ କଥା ନା କ'ଣ ? ଚଇତାର ଝାଳ ସର ସର କ୍ଲାନ୍ତ ଭରା ମୁହଁରେ ହସ ଫୁଟି ଉଠିଲା । କହିଲା, ହଁରେ ନଟଆ, ତାରି କଥା ଭାବୁଚି । ତାକୁ ଛାଡ଼ି ମୁଁ ବିଦେଶରେ ଏତେ ଦିନ ରହିବି କିପରି ? ନଟଆ କହିଲା, ଚଇତା ଭାଇ ! ଏଇକ୍ଷଣି ସିନା ଇମିତି ଲାଗୁଚି; କିନ୍ତୁ ସେଠିକି ଗଲାଠୁ ସବୁ ଠିକ୍ ହୋଇଯିବ । ପଇସା ମୁହଁ ଦେଖିଲେ ଏଇ ଘର-ଦୁଆର ପିଲା-ମାଇପ ସବୁ ହୋଇଯିବ ପରରେ, ଖାଲି ପଇସା ହେବ ସାର । ଚଇତା କହିଲା, ଆଚ୍ଛା ମୁଁ ଘରେ ପଚାରେ—ଯଦି ହେବ ଦହେଁ ସାଙ୍ଗ ହେଇ ଯିବା । ନଟଆ କହିଲା, ଦେଖ ଡେରି କରିବୁନି—ଯେତେ ଶୀଘ୍ର ପାରୁ ବାହାରି ପଡ଼ିଲେ ଭଲ ।

ଜମି ହଳ ସରିଲାବେଳକୁ ଟାଣ ଗାଧୁଆ ବେଳ ଗଡ଼ିବା ଉପରେ । ଦହେଁ ବଳଦ ଅଡ଼େଇ ଘର ମୁହାଁ ଧରିଲେ । ବାଟରେ ଆସୁ ଆସୁ ମଝିରେ କେତେଆଡ଼ର କଥା ପଡ଼ୁଥାଏ ।

ଚଇତା ଘରକୁ ଫେରିଲାବେଳକୁ କନକ ନ ଖାଇ ନ ପିଇ ତାରି ପଥକୁ ଚାହିଁ ବସିଚି । କନକକୁ ଦେଖି ଚଇତା ମୁହଁରେ ହସ ଫୁଟି ଉଠିଲା । କିନ୍ତୁ କନକ

ହସିଲା ନାହିଁ । ଅଭିମାନରେ ମୁହଁ ଭାରି କରି ରହିଲା । ଚଇତା ଭାବିଲା ଘରେ ଥାଇ ଟିକିଏ ଡେରି ହୋଇ ଯାଉଚି ବୋଲି ତ କନକର ଏତେ ଅଭିମାନ । ପୁଣି ସୁଦୂର ବିଦେଶ ଗଲେ କନକ ତାକୁ ଭୁଲି ରହିବ କିପରି ? ବିଲରୁ ଫେରିଲା-ବେଳେ ଚଇତା ନାଳରେ ଗାଧୋଇ ଆସିଥିଲା । ଓଦା ଲୁଗା ପାଲଟି ଖାଇବାକୁ ଗଲା । କନକ ପଖାଳ ବାଢ଼ି ଆଣି ଥୋଇଲା—ମୁହଁରେ କଥା ନାହିଁ । ଚଇତା ହସି ହସି କହିଲା, କଥା ନ କହିଲେ ମୁଁ ଖାଇବି ନାହିଁ କନି । ଏତେ ଅଭିମାନରେ ବି କନକ ମୁହଁରେ ହସ ଫୁଟି ଉଠିଲା ।



ଢ ପଡ଼ୁରେ । ଖର୍ ତେଜ ମଉଳ ବି ମଉଳ ନାହିଁ । ନାଥ ପଧାନ ଦାଣ୍ଡ ପିଣ୍ଡାରେ ବସି ହୁଁସ ବୁଣୁଚ । ଚଇତା ଭାବିଲା, ଏଥିକବେଳେ ବାପାଙ୍କ ଆଗରେ କଲିକତା ଯିବା କଥା କହିବ । କେତେ କଷ୍ଟରେ ବାପାଙ୍କ ଆଗରେ ଚଇତା ଆସି ଛିଡ଼ା ହେଲା । ଭରସି କରି କହିଲା, ବାପା ଏ ବରଷ ତ ମେଘର ଯେମିତିକା ଗତି ଭଲ ଫସଲ ହେବାର ଆଶା ନାହିଁ । ନାଥଆ କଲିକତା ଯାଉଚ ଯେ—ମୋତେ ପଚ୍ଛୁରୁଥିଲ ଯିବାକୁ । ମୋର ଇଚ୍ଛା ଅଛି । ତମେ ଯଦି ଘର ଦୁଆର, ଜମି-ବାଡ଼ି ସବୁ ସମ୍ଭାଳି ପାରିବ; ତେବେ କହିଲେ ମୁଁ ଯାଆନ୍ତି । ନାଥ ପଧାନ ହସିଲା । କହିଲା, ଚଇତା ମୋତେ ବୁଢ଼ା ବୋଲି ଭାବୁଚୁ ନା କ'ଣ ! ବୟସ ସିନା ବୁଢ଼ା କରି ଦେଉଚ, କିନ୍ତୁ ଦେହ ମନ ମୋର ବୁଢ଼ା ହୋଇନାହିଁରେ ! ମାଟି ସାଙ୍ଗରେ ମାଟି ହୋଇ ଖଟି ଖଟି ଏଇ ଘର-ଦୁଆର, ବିଲ-ବାଡ଼ି ସବୁ ମୁଁ ଚଲାଇ ଆସିଚି । ଆଜି ପାରିବି ନାହିଁ ? ଯିବୁ ଯଦି ଯା' । ତୋ ବାହାଘରକୁ ଯା' ଦେଣା ହୋଇଚି—ଏ ବରଷ ଆଉ ଫସଲରୁ ଶୁଝିବାର ଆଶା ନାହିଁ । ଯଦି ଦି' ପଇସା ରୋଜଗାର କରୁ—ତେବେ ଭଗବାନଙ୍କ କୃପାରୁ ଏ ମହାଜନ ଦେଣାରୁ ଖଲାସ ହେବା—ନଇଲେ ନାହିଁ, ଦିନକୁ ଦିନ ଋଣ ଭାରରେ ନଇଁ ପଡ଼ିବା ।

ଚଇତାର ମନକୁ କଥା ପାଇଲା । ସତରେ ତା' ବାହାଘର ବେଳକୁ ମହାଜନର ଦେଣା ହୋଇଚି । କଲିକତା ନ ଗଲେ ସେ ସୁଝିବ କପରି ! କାଁ ଭାଁ ବରଷା ତ ଏ ଯାଏ ନାହିଁ—ଫସଲ ଉପରେ ଆଶା ରଖିଲେ କଣ ହେବ; ଭରସା କରି ହେବ ନାହିଁ । ବାପର ବୟସ ହେଲାଣି—ସେ ଆଉ କେତେ ଦିନ ! ଘରର ସବୁ ଭାର ନିଜ ଉପରେ । ନାଁ ସେ କଲିକତା ଯିବ, ଦି' ପଇସା ଜମେଇବ । ମହାଜନ

ଦେଣାରୁ ମୁକ୍ତ ହେବ । ଏ ବାଉଁଶ ଘର ଭାଙ୍ଗି କାଠ ଘର କରିବ । ଆଉ କନକ ବେକକୁ ସୁନ୍ଦର ସୁନା ହାରଟିଏ ଆଣି ଦେବ । ରୁପା ହାରଗୁଡ଼ା ତା' ଦେହକୁ ମାନୁ ନାହିଁ । ତା' ଗୋରା ଦେହକୁ ସୁନାହାର କି ସୁନ୍ଦର ଦେଖାଯିବ !—ଚଇତା ମନ କଳ୍ପନା ରାଇଜରୁ ଫେରି ଆସିଲା ବାସ୍ତବକୁ । ବାପା ରାଜି ହେଲେ ଯିନା; କିନ୍ତୁ କନକ ? ଚଇତା ଭାବିଲା, ରାତିରେ କନକକୁ ବୁଝାଇ ସୁଝାଇ କହିବ ।

ସୁନ୍ଦର ମାଧବୀ ରାତି । ଘର ସେପଟ ବାଉଁଶ ବୁଦା ବାଧା ନ ମାନି ଝରକା ଫାଙ୍କରେ ଜୋଛନା ଆଲୁଅ ଝରି ପଡ଼ୁଚି । ସବୁ ଦିନ ପରି ଚଇତା ଆଗ ଆସି ବିଛଣାରେ ଶୋଇ ପଡ଼ିଲା । ବିଛଣା ଉପରେ ଆଲୁଅ ଛାଇର ଚିତା ପଡ଼ିଚି । ଚଇତା ଶୋଇ ଶୋଇ ଭାବିଲା ଜୀବନର ଅନାଗତ ଦିନର କଥା । ଭାବୁ ଭାବୁ ଭାବନାର ଦିଗନ୍ତ ସେପାରିକି ଚାଲିଗଲା ଚଇତାର ମନ । କ'ଣ ସେ ଭାବୁଚି, ଅର୍ଥହୀନ ଭାବନା ଏ— ଅଳୀକ, ଅସାର । ଚଇତା ମନ ପୁଣି ଫେରି ଆସିଲା ଜୀବ ଜଗତକୁ । ଦେଖିଲା, ସୁନ୍ଦର ପୃଥିବୀ—ଚାରିଆଡ଼େ ଖାଲି ଆନନ୍ଦ—ବଞ୍ଚି ରହିବାର ବିରାଟ ଆନନ୍ଦ ।

ପୁଣି କାହିଁକି ଏତେ ବିହ୍ୱଳ ମଣିଷ ଭାବେ, ସେ ଯେପରି ଜୀଇଁ ଥାଉ ଥାଉ ମରି ଯାଇଚି ଏ ବିରାଟ ଦୁନିଆରେ । ଅଭାବ ଉତ୍ପୀଡ଼ନ, ଘାତ ପ୍ରତିଘାତରେ ଜୀବନ-ନଉକା ଦୋହଲି ଉଠେ । ବେଳେ ବେଳେ ବୁଡ଼ିଯାଏ ଝଡ଼ ଘୂର୍ଣ୍ଣିବାୟୁରେ-ହା'ହୁତାଶର ଗହ୍ୱର ଦରିଆରେ । ଭାବୁ ଭାବୁ ଆଖିପତା ନଇଁ ପଡ଼ିଲା ନିଦରେ ।

କନକର କଅଁଳ ହାତର ଶୀତଳ ପରଶରେ ଚଇତାର ଛାଇନିଦଟା ଛିଟ କରି ଭାଙ୍ଗିଗଲା । ଅନାଇଲା କନକ ବସି ଗୋଡ଼ ମୋଡ଼ି ଦେଉଚି । ଝରକା ଦେଇ କଣିକାଏ ଜହ୍ନ ଆଲୁଅ ତା ମୁହଁରେ ପଡ଼ିଚି । କନକକୁ ଦେଖି ଚଇତା କହିଲା, ଶୁଣିଲଣି କନ, ମୁଁ କଲିକତା ଯାଉଚି ଦି'ଦିନ ପରେ । ଅଭିମାନରେ କନକ କହିଲା, ଯାଉନ—ମୋତେ କାହିଁକି କହୁଚ ? କନକର ଅଭିମାନଭରା କଥା ଶୁଣି ଚଇତା କହିଲା, ସତରେ କ'ଣ ତୋତେ ଛାଡ଼ି ଯିବାକୁ ମୋର ମନ ହେଉଚି ! କିନ୍ତୁ କଅଣ କରିବ ? ମହାଜନର ଦେଣା ବଢ଼ୁଚି । ବାପାଙ୍କର ଦିନ କାଳ ପୂରି ଆସୁଚି । ଶେଷଆଡ଼କୁ ସେ ତ ଟିକେ ଶାନ୍ତିରେ ନିଶ୍ୱାସ ମାରିବା ଦରକାର । କନକ ଅଭିମାନ ଦରଦ ମିଶା ଗଳାରେ କହିଲା, ତମର ଯଦି ବିଦେଶ ଯିବାକୁ ମନ ଥିଲା, ମୋତେ କାହିଁକି ଆମ ଘରକୁ ଛାଡ଼ୁ ନ ଥିଲ ? ମୁଁ କାହା ପାଇଁ ଏଠି ପଡ଼ି ରହିଲି ? କନକ ଆଖିରୁ ଲୁହ ଦି' ଟୋପା ଚଇତା ଗୋଡ଼ ଉପରେ ଝରି ପଡ଼ିଲା । ଚଇତା କନକକୁ କୋଳକୁ ଟାଣି ଆଣିଲା—କହିଲା ଛିଃ କନ; ତୁ କାନ୍ଦୁଚୁ—ମୁଁ କ'ଣ ପୁଣି ଲେଉଟି ଆସିବି ନାହିଁ ! ତଥାପି କନକ ଆଖିରୁ ଲୁହ

ବନ୍ଦ ହେଲା ନାହିଁ । ସେ ପିଲାଙ୍କ ପରି ଚଇତା କୋଳରେ କହିଁ କହିଁ ହୋଇ କାନ୍ଦ ଉଠିଲା । ଚଇତା ତା ଆଖିରୁ ଲୁହ ପୋଛି କେତେ ବୁଝାଇଲା—କନ, ମୁଁ କଲକତା ଯାଉଚି କାହା ପାଇଁ ? ତୋର ବେକରେ ଏ ରୁପା କଣ୍ଠିଗୁଡ଼ା କି ଅସୁନ୍ଦର ଦେଖା ଯାଉଚି ! କାନଟା ଖାଲି, ଦ' ପଇସା ରୋଜଗାର କଲେ ଆଗେ ତୋର ପାଇଁ ଗୋଟାଏ ସୁନାହାର ଆଉ କାନକୁ ଦୁଲ୍ କରିବି । ସତେ କନ, ତୋର ଏଇ ଗୋରି ତକ ତକ ଚମ୍ପାଫୁଲ ପରି ଦେହରେ ସୁନାହାର ଆଉ କାନରେ ଦୁଲ୍ କେଡ଼େ ସୁନ୍ଦର ନ ମାନିବ ! ସେତକବେଳେ ତୋର ନାଲି ଓଠରେ ସରୁ ହସ ଦେଖିଲେ ମୋର ସବୁ ବିଦେଶ ଦୁଃଖ ଆପେ ଆପେ ପାସୋରି ଯିବ । ଚଇତାର ମନଭୁଲା କଥାରେ କେତେ ଘଡ଼ି ପରେ କନକ ଶୋଇ ପଡ଼ିଲା ଚଇତା କୋଳରେ ।

ସେତେବେଳକୁ ରାତି ଅଧ—ନିଶା ଗର୍ଜୁଚି । ପକ୍ଷୀ ଓ ପକ୍ଷିଣୀ ଗଛ ଡାଳରେ ଆବେଗରେ ନିଦ୍ରା ଯାଉଛନ୍ତି । ଚଇତା ଆଖିରେ ନିଦ ନାହିଁ । ସେ କଲିକତା ଯିବ ବୋଲି ଖାଲି ସ୍ୱପ୍ନ ଦେଖୁଚି ।

କେତେ ଗାଁ, କେତେ ନଈ ପାରି ହୋଇ ସେଇ ସେଉଁ ସହର—ସେଇ କଲିକତା । ବଡ଼ ସହର । କେତେ ମଣିଷ, ଘୋଡ଼ାଗାଡ଼ି, ରିକ୍ସା, ମଟର, ଟ୍ରାମ୍, ବସ— କେତେ କାରଖାନା ମୁଆଡ଼େ ଗୁହିଁ ଖାଲି କଳ, କାରଖାନା ମଣିଷ, କୋଠାବାଡ଼ି । ସେଠିକା କୋଠାଗୁଡ଼ା କୁଆଡ଼େ ଆକାଶକୁ ଲାଗିଚି ! ସେଠିକା ମଣିଷ ମଉଜ ମଜଲିସରେ ଦିନ କାଟନ୍ତି—ଭଲ ପିନ୍ଧନ୍ତି—ଭଲ ଖାଆନ୍ତି । ଆମ ଏଠିକା ମଣିଷ-ଗୁଡ଼ା ସେଠିକା ମଣିଷ ଆଗରେ କୁଆଡ଼େ ପୋକପରି ଦିଶନ୍ତି; ଚଇତା ଖାଲି ଯା ଶୁଣିଚି—ସେଇଆ ଭାବି ଭାବି ଜୀବନର ବେଳାଭୂମିରେ ସ୍ୱପ୍ନ ଦେଖୁଚି ।

ସେଇଠି—ସେ ପୁଣି ତାର ଜୀବନ କାଟିବ । ସେଠି ଏ ଘର ଦୁଆର, ବାପ, ମା ନ ଥିବେ ଆଉ ଅନ୍ଧାର ଆଲୁଅ ପରି ଜୀବନ ପଛେ ପଛେ ଅତି ଆପଣାର ଛାଇଯା ଏଇ କନକ ବି ନ ଥିବ । କିପରି ଏଇ ଅସରନ୍ତି ଦିନଗୁଡ଼ା କଟିବ ! ଚଇତା ଭାବିଲା କେତେ କେଜାଣି । ସାରା ଶରୀରରେ ତାର ଉତ୍ତେଜନାର ତଡ଼ିତ ପ୍ରବାହ ଖେଳିଗଲା । କନକକୁ ଆହୁରି ଜୋରରେ କୋଳରେ ଜାକିଧରି ତାର ଘୁମନ୍ତ ଗଣ୍ଡ ଦେଶରେ ଚୁମ୍ବନଟାଏ ଆଙ୍କି ଦେଲା । ତା'ପରେ ସପନ ଦୋଳାରେ ଦୋଳି ଖେଳିଲା ଚଇତାର ଦେହ ଓ ମନ । ରାତିର ନୀରବତାର ବୁକୁ ଚିରି ସେତେ-ବେଳକୁ ସାଇଁ ସାଇଁ ପବନ ବହୁଥିଲା ।

ସେଦିନ ମଙ୍ଗଳବାର । ଦିନସାରା କନକର ମନଟା ଭଲ ନାହିଁ । ବେଳେ ବେଳେ ଆଖିରେ ଲୁହ ଜକେଇ ଆସୁଚି । ରାତି ପାହିଲେ ତାର ଅତି ଆପଣାର

ସ୍ୱାମୀ ତାକୁ ଛାଡ଼ି ଚାଲିଯିବ ସୁଦୂର ବିଦେଶକୁ । ସାତ ସମୁଦ୍ର ତେର ନଈ ସେପାଖିରେ ସେ ଯେଉଁ ବିଦେଶ, ସେଠି କିଏ ଥିବ ତା ସ୍ୱାମୀର ଭଲ ମନ୍ଦ, ଖାଇବା ପିଇବା ସବୁ ଖବର ବୁଝିବ ! କନକ ଖାଲି ଭାବୁଚି—ଦିନସାରା କୌଣସି କାମରେ ମନ ନାହିଁ ।

ସଞ୍ଜ ହେଲା । ସରଗ ମଝାନରେ ଜହ୍ନମାମୁଁ ର ତୋରା ଦିସହିକି କେଡ଼େ ସୁନ୍ଦର ଦିଶିଲା । କନକ ଚଇତାକୁ ଚକୁଳି ପିଠା କରି ଖାଇବାକୁ ଦେଲା । ତାକୁ କିଏ କହିଥିଲା ଚକୁଳି ପିଠା ଖାଇ ବିଦେଶ ଗଲେ ଚଞ୍ଚଳ ଘରକୁ ଫେରି ଆସନ୍ତି ବୋଲି ।

ଚଇତା ତାର ସାଙ୍ଗସାଥୀମାନଙ୍କୁ ଶେଷ ଦେଖା କରି ରାତି ଦ'ଘଡ଼ି ବେଳକୁ ଘରକୁ ଫେରି ଆସିଲା, ଘରର ଭଲ ମନ୍ଦ ବିଷୟରେ କେତେ କଥା ବାପାଙ୍କ ସହିତ ପଡ଼ିଲା । ତା'ପରେ ଖାଇ ଶୋଇବାକୁ ଗଲା । ରାତିରେ କନକକୁ କେତେ ବୁଝାଇଲା । କନକ କହିଲା, ବିଦେଶ ଯାଉଚ—ମୋତେ ଭୁଲିଯିବ ନାହିଁ ତ ? ଚଇତା କହିଲା, କନ, ଭୁଲିବ କିଏ ପାରେ !

ପାହାନ୍ତିଆ ତରା ଉଇଁଲାବେଳକୁ ଚଇତା ନିଦରୁ ଉଠିଲା । ପାହାନ୍ତା ପହରୁ ବିଦେଶ ଯିବା ଶୁଭ । କନକ ଉଠି ଦୁଆରେ ପୂର୍ଣ୍ଣ କଳସ ବସାଇଲା । ଭୋରୁ ଭୋରୁ ଚଇତା ଗାଧୋଇ ଖାଇ ବାପା ବୋଉଙ୍କଠାରୁ ବିଦାୟ ନେଇ କଳସ ଓ ଚଉଁରା ମୂଳେ ଦଣ୍ଡବତ ହୋଇ ବାହାରି ପଡ଼ିଲା । କନକ ଖାଲି କାନ୍ଦୁଥାଏ । ଶାଶୂ ଆସି ତାର କେତେ ବୁଝାଇଲା । ଛି ବୋହୂ, ବିଦେଶ ଗଲାବେଳେ କାନ୍ଦନ୍ତି ନାହିଁ—ସ୍ୱାମୀର ଅମଙ୍ଗଳ ହେବ । କନକ ଆଖିରୁ ଲୁହ ପୋଛିଲା । ଆଗରୁ ନିଧିଆ ଓ କାଳି ସାମୁଲ ଯାଇ ଗାଁ ମୁଣ୍ଡ ଠାକୁରାଣୀ ବରଗଛ ନିକଟରେ ଚଇତା ଅପେକ୍ଷାରେ ଥିଲେ, ସେଇ ଯାଗାଟା ଗାଁର କଲିକତିଆଙ୍କର ପାହାନ୍ତିରା ପଡ଼ିଆ, ସେଇଠି କଲିକତିଆ ସବୁ ସାଙ୍ଗ ହୁଅନ୍ତି । ଠାକୁରାଣୀଙ୍କ ନିକଟରେ ନିଜର ମଙ୍ଗଳ କାମନା କରି ତା'ପରେ ବାହାରି ପଡ଼ନ୍ତି—ସୁଦୂର ବିଦେଶ ପଥରେ । ଚଇତା ପହଞ୍ଚିଲାରୁ ସମସ୍ତେ ଉଠିଲେ । ଠାକୁରାଣୀଙ୍କୁ ମୁଣ୍ଡିଆ ମାରି ବାହାରି ପଡ଼ିଲେ । ଘର-ବାଡ଼ି, ଗାଁ-ଭୂଇଁ, ବାପ ମା, ସ୍ତ୍ରୀ ମାୟା ମମତା ସବୁ ପଡ଼ି ରହିଲା ପଛରେ । ସେମାନେ ଆଗେଇ ଚାଲିଲେ କେତେ ଗାଁ ଅତିକ୍ରମ କରି ।

ରେଲଗାଡ଼ି ଦଉଡ଼ୁଥିଲା ସତେ ଯେପରି ସୀମାହୀନ ଅସୀମ ପଥରେ । ତା ସଙ୍ଗେ ସଙ୍ଗେ ଚଇତାର ମନ ବି ଦଉଡୁଥିଲା । କାହିଁ କେତେ ଦୂରରେ ଆଜି ସେ !

କୁଆଡ଼େ ଯାଉଚି । ନଠିଆ କହିଲା, କଣ ଭାବୁଚି ଏତେ ଚଇତା ଭାଇ, ନୂଆବୋଉ କଥା ମନେ ପଡ଼ୁଚକି ରେ ! ଚଇତାର ମନ ଭାବନା ମୂଳକରୁ ଫେରି ଆସିଲା । ହସି ହସି ନିଜର ଦୁର୍ବଳତାକୁ ଲୁଚାଇ କହିଲା, ନାଁରେ ନଠିଆ, ଭାବୁଚି ବିଦେଶରେ କେଉଁଠି କିପରି ଦିନ କାଟିବା । ନଠିଆ କହିଲା, ଯା ଭାଗ୍ୟରେ ଥିବ ହେବ, ଏତେ ଭାବୁଚୁ ଗୋଟାଏ କଣ ମ ! ତଥାପି ଚଇତାର ମନଟା ଘର ଧରିଲା ନାହିଁ—ଖାଲି ଭାବନା ମୂଳକର ସରଗ ସେ ପଟରେ ଉଡ଼ି ଉଡ଼ି ବୁଲିଲା ।

ଗାଡ଼ି ଚାଲିଛି କେତେ ଷ୍ଟେସନ ଅତିକ୍ରମ କରି । ଚଇତାକୁ ସବୁ ଯେପରି ନୂଆ ପରି ଲାଗୁଚି । କେତେ କେତେ ନୂଆ ଲୋକ ଆସୁଚନ୍ତି—ଯାଉଚନ୍ତି । ଗାଡ଼ି ଆସି ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲା । ଷ୍ଟେସନ ଉପରୁ ଲୋକ ଗହଳି ଶୁଭିଲା । ଷ୍ଟେସନ ଉପରେ ଗୋଟାଏ ଟୋକା ଚା’ ଗରମ, ଚା’ ଗରମ ଡାକି ଡାକି ଗଲା । ତା’ପରେ ଆଉ ଗୋଟାଏ ଟୋକା ପାନ ବିଡ଼ି ସିଗାରେଟ, ପାନ ବିଡ଼ି ସିଗାରେଟ୍ ଚିତ୍କାର କରି ଉଠିଲା । ଚଇତା ଗାଡ଼ି ଭିତରୁ ବାଲେଶ୍ୱର ଷ୍ଟେସନ ଉପରେ ଟିକିଏ ଆଖି ବୁଲାଇ ନେଲା । ସତରେ, ଆଜି ସେ କେତେ କେତେ ନୂଆ ଯାଗା ଦେଖୁଚି । ନୂଆ ଲୋକଙ୍କର ପରିଚୟ ପାଉଚି । ଟିକିଏ ପରେ ସିଗନାଲ ଦେଇ ଗାଡ଼ି ଛାଡ଼ିଲା । ଯେତେ ଯୋରରେ ଗାଡ଼ି ଚାଲୁଛି—ସେତିକି କଲିକତା ନିକଟ ହେଇ ଆସୁଚି । ଚଇତା ମନରୁ କିନ୍ତୁ ଭାବନା ମରି ମରି ଆସୁଛି । କଲିକତା ସ୍ୱପ୍ନ ଦେଖୁ ଦେଖୁ ଚଇତା କେତେବେଳେ ଶୋଇ ପଡ଼ିଲା—ଜାଣେ ନାହିଁ ।

ଭୋର ସାଢ଼େ ଛ’ଟା ବେଳକୁ ଗାଡ଼ି ଆସି ହାଓଡ଼ା ଷ୍ଟେସନରେ ପହଞ୍ଚିଲା । ନଠିଆ ଡାକିଲା, ଚଇତା ଭାଇ ଉଠ ଉଠ, ଆମେ ଆସି କଲିକତାରେ ପହଞ୍ଚିଲେଣି । ଚଇତା ଆଖି ମଳି ମଳି ଗଣ୍ଠିଲିଟି ଧରି ହୁସ୍ କରି ଉଠି ପଡ଼ିଲା । ଷ୍ଟେସନରେ ପେଲାପେଲି ମଣିଷ ସମୁଦ୍ରର ଅସୁମାରି ଭିଡ଼ ତରଙ୍ଗ ଠେଲି ଠେଲି ସାମୁଲ ଚଇତା ଓ ନଠିଆକୁ ନେଇ ବାହାରି ଆସିଲା । ଆଗରେ ଗଙ୍ଗାନଦୀ, ହାଓଡ଼ା ପୋଲ, ଅସଂଖ୍ୟ କୋଠାବାଡ଼ି, ପେଲାପେଲି ମଣିଷ, ଅସୁମାରି ଗାଡ଼ି । କାହାରିକୁ ତର ନାହିଁ—ସମସ୍ତେ କର୍ମଚଞ୍ଚଳ । ଚଇତା ନଠିଆ ଦିହେଁ ଦେଖିଲେ ଏଇ ତାଙ୍କର ସେଇ ସ୍ୱପ୍ନର କଲିକତା—ଓଡ଼ିଆଙ୍କର ଆଶା ଭରସାର ଶେଷ ସଙ୍ଖାଳି ଏଇ ସେଇ କଲିକତା ।



ବଡ଼ବଜାର । ଅଲି ଗଲି କନ୍ଧି ସନ୍ଧିରେ ଓଡ଼ିଆ ପୂରି ରହିଛନ୍ତି । ଶଶୀଭୂଷଣ ଦେ ଷ୍ଟ୍ରୀଟକୁ ଲଗି ଷ୍ଟ୍ରେଟ ଗଳିଟି ଭିତରେ କାଳି ସାମୁଲର ବସା । ସେହି ବାଡ଼ି ଭିତରେ କେତେ ମୁଲକର ଓଡ଼ିଆ ଭାଇ ବସା ବାନ୍ଧି ରହିଚନ୍ତି । ଯେପରି ଏକା ଘରର— ବାଦ ନାହିଁ—ବିବାଦ ନାହିଁ । ବିଦେଶରେ ସମସ୍ତେ ଭାଇ ଭାଇ । କାଳି ସାମୁଲ ସାଙ୍ଗରେ ଆଉ ଦି'ଜଣ ଲୋକ ଏକା ବସାରେ ରହନ୍ତି । କାମ କରନ୍ତି ଏକାଠି । ଚଇତା ନଢ଼ିଆ ଦିହେଁ ସେଇଠି ଗୁରି ଧନ ହେଲା ଆସି ରହିଛନ୍ତି । କାଳି ସାମୁଲ ତାଙ୍କ ଦିହିଙ୍କ ପାଇଁ କେତେ ଯାଗା ବୁଲି ଚାକିରିର ସନ୍ଧାନ ନେଉଚି । ବୁଲି ବୁଲି ୧୫ ଦିନ ପରେ ନଢ଼ିଆ ପାଇଁ ଗୋଟିଏ ଚାକିରି ମିଳିଗଲା ପାର୍କ ସର୍କସରେ ଗୋଟିଏ ସାହେବ ବାଗାନରେ । ମାଳି କାମ—ମାସକୁ ଚାଳିଶ ଟଙ୍କା, ନଢ଼ିଆ କାମରେ ଯୋଗ ଦେଲା । ଜଣକ ଚିନ୍ତାରୁ କାଳି ସାମୁଲ ଖଲାସ ହେଲା—ବାକି ରହିଲା ଚଇତା ।

କଲିକତା ସହରର ସୌନ୍ଦର୍ଯ୍ୟ ଦେଖି ଦେଖି ଚଇତା ଘର ସ୍ମୃତିଗୁଡ଼ାକ ଦୂରକୁ ଟିକେ ଆଡ଼େଇ ଦେଇଚି ସିନା—କିନ୍ତୁ ଏ ଯାଏ ଭୁଲିନାହିଁ । ଅବସରବେଳେ କନକର ସେଇ ଦରଦର ହସିଲା ମୁହଁଟି ଆଖି ଆଗରେ ନାଚିଉଠେ । ସାଥୀହୀନ ହୃଦୟଟା ତାର ହାହାକାର କରିଉଠେ । ମନଟା ବି ଭଲ ଲାଗୁନି ଏଯାଏ । ଚାକିରିର ଯୋଗାଡ଼ ହେଲା ନାହିଁ । ଏତେ ଆଶା ପୋଷି କଲିକତା ଆସିଚି—ସବୁ କଣ ନିରର୍ଥକ । ବସି ବସି ଶୁଖିଲା ମୁହଁ କରି ଚଇତା ଯେତେବେଳେ ଭାବେ, କାଳି ସାମୁଲ ତାକୁ ଭରସା ଦେଇ କହେ, ଚଇତା ମନମାରି ବସିଚୁ କାହିଁକି ରେ—ଯା ବୁଲି ଆସିବୁ । କଲିକତା ସହର ଲକ୍ଷ ଲକ୍ଷ ଲୋକଙ୍କୁ ଦାନା ଯୋଗାଉଚି—ତୋ ପାଇଁ

ଗୃହକଷ୍ଟଟାଏ ମିଳିବ ନାହିଁ ! ଯା ଯା ହସ ଖୁସିରେ ବୁଲ ! ତୋ ଗୃହକଷ୍ଟ କଥା ମୁଁ ବୁଝିବି ।

ଏବେ କାଳି ସାମୁଲ୍ ଶୁଣିଲି, ମାଟିଆବୁରୁଜ ସୂତା କଳରେ ନୂଆ ଲୋକ ନେଉଛି । ଖବର ପାଇ ଚଇତାକୁ ନେଇ ମାଟିଆବୁରୁଜରେ ପହଞ୍ଚିଲା । ମାଟିଆବୁରୁଜ ସୂତା କଳର ବୁଧୁ ସରଦାର ସହିତ କାଳି ସାମୁଲର ଆଗରୁ ଜଣାଶୁଣା ଥିଲା । ତାର ଦ୍ୱାରା ଚଇତାର ଚାକିରିଟିଏ ଯୋଗାଡ଼ ହୋଇଗଲା । ସୂତା ଯୋଡ଼ିବା କାମ— ହପ୍ତା ପନ୍ଦର ଟଙ୍କା ।

ଚଇତା ଭାବିଲା ମନ୍ଦ ନୁହେଁ ଚାକିରିଟା । ମାସକୁ ହେଲାଣି ଷାଠିଏ ଟଙ୍କା । କୋଡ଼ିଏ ଟଙ୍କା ସେ ନିଜର ଖର୍ଚ୍ଚ ତୁଲାଇ ବାକି ଟଙ୍କା ମାସକୁ ମାସ ଘରକୁ ପଠାଇ ଦେବ । ବାପା ଟଙ୍କା ପାଇଲେ କେତେ ଖୁସି ହେବେ । ମନଖୁସିରେ ବାପାଙ୍କ କତିକି ଚିଠି ଖଣ୍ଡେ ଲେଖି ସେହି ଦିନ ପଠେଇଦେଲା ।

ପରଦିନ ତାପରଠାରୁ ଚଇତା କାମରେ ହାଜର ଦେଲା । ଏଣିକି ନିଇତି ସକାଳ ହେଲେ କଳଘରର କଳଜାଅର ବଇଁଶୀ ଚଇତାକୁ ଡାକଦିଏ । ଚଇତା କାମକୁ ଦଉଡ଼େ । ଶହ ଶହ ମଜୁରିଆ ଦଉଡ଼ନ୍ତି—ଚଇତା ବି ତାପରି ଭିତରୁ ଜଣେ । ମନରେ ତାର କ୍ଳାନ୍ତି ନାହିଁ । ନାହିଁ ଅବସାଦ । ବଜୁଲି ପରି ସେ କାମ ବେଳେ ଖଟିଥାଏ ।

କୁଲି ଲାଇନ କରକୁ ଗ୍ରେଟିଆ ବସ୍ତି ଭିତରେ ଚଇତା ଜଣଙ୍କ ବସାରେ ମୁଣ୍ଡ ଗୁଞ୍ଜି ରହିଛି । ଖପରଲି ଘର ଖଣ୍ଡେ—ପାଖକୁ ପାଖ ଆଉ କେତେ ଘର । କେତେ କେଜାଣି ମଜୁରିଆ ରହନ୍ତି କେତେ ଦେଶର—କେତେ ଆଡ଼ର । ବସ୍ତି ସେ ପାଖରେ ନର୍ଦ୍ଦମାର କୁଢ଼—ମାଛି ଭଣ ଭଣ । କେବେକେବେ ନାକଫଟା ଗନ୍ଧ ଆସେ ପବନରେ । ସେ ବସାରେ ଆଉ ତିନିଜଣ ଲୋକ ରହନ୍ତି—ସେମାନେ ବି ଚଇତା ପରି କଳଘରର ମଜୁରିଆ । ବୁଧୁ ସରଦାର ଚଇତାକୁ ଆଣି ସେ ବସାରେ ରଖିବାକୁ ସ୍ଥାନ ଦେଇଛି । ସେ ବସାରେ ଯୋଉ ତିନିଜଣ ରହନ୍ତି—ସେମାନେ ବୁଧୁ ସରଦାରର ଗାଁ ଆଖପାଖ ଲୋକ ।

ଚଇତା ବସାରେ ରହିଲା ଦିନୁ ସେ ଅନ୍ୟ ତିନିଜଣଙ୍କୁ ନିଜର କରି ପାରିଛି । ସମସ୍ତଙ୍କୁ ଆପଣାର ପରି ଦେଖେ—କାହାରି କଥା ତଳେ ପକାଇ ଦିଏନା । ସମସ୍ତେ ଚଇତାକୁ ଆଦର କରନ୍ତି—କିନ୍ତୁ ସବୁଠୁ ଚଇତାକୁ ବେଶୀ ଭଲ ପାଏ ବାଉରିଆ । ବାଉରିଆ ଚଇତା ଦିହେଁ ଏକା ବୟସର—ସେଥିପାଇଁ ଦିହିଁଙ୍କର ବେଶୀ ମନ

ମିଳେ । ଅବସରବେଳେ କେତେ ମନଖୋଲା ଅଛୁଣ୍ଣା ଗପ ପଡ଼େ । ଚଇତା ବାଉରିଆକୁ ନାଁକୁ ଖାଲି ଭାଇ ବୋଲି ଡାକେ ସିନା—କିନ୍ତୁ ଭାଇ ପରି ଖାତିର କରେନା । ବନ୍ଧୁ ପରି ଦେଖେ ।

ଦିନଟାଯାକ କାମ କରି କରି ଚଇତାର ଦିନଟା କଟିଯାଏ—ଭାବିବାକୁ ବେଳ ମିଳେନା । ରାତି ଆସେ—ଚଇତା ଭାବେ, କ୍ଲାନ୍ତ ଅବଶ ଦେହଟାକୁ ବିଛଣାରେ ଗଡ଼ାଇ ଦେଇ ଟିକେ ଶାନ୍ତିରେ ନିଶ୍ୱାସ ନେବ । କିନ୍ତୁ ଆଖି ଆଗରେ ତାର ଭାସି ଉଠେ ଗୋଟି ଗୋଟି ହୋଇ ଗାଁ, ଘର ଦୁଆର, ଧାନ ବିଲ, ବୋଉର ରୁଗ୍ଣ ଶରୀର, ବାପାଙ୍କର ବଦଳି ଯାଇଥିବା ଚେହେରା, କନକର ଶୁଖିଲା ମୁହଁ । ଆସିଲାବେଳେ କେତେ ସେ କାନ୍ଦିଥିଲା । ଚଇତା ଦେଖେ—ଆସିଲା ଦିନୁ ସବୁ ଦିନେ ଯେପରି ସେ ସିମିତି କାନ୍ଦୁଛି । ଭାବୁ ଭାବୁ ଚଇତା ଆଖିଟା କେତେବେଳେ ଓଦା ହୋଇଆସେ । କିରେ ଏତେ କଣ ଭାବୁଚୁ କିରେ ଚଇତା—ମୁହଁଟା କାହିଁକି ଶୁଖିଲା ଦିଶୁଚି ? ବାଉରିଆ ପଚାରେ ଚଇତାକୁ । ଚଇତା ମୁହଁର ଭାବ ବଦଳାଇ କହେ, ନାଁ ମ ବାଉରିଆ ଭାଇ, ଭାବିବି ଗୋଟାଏ କଣ ? ଏଠି ମୋର କଣ ଅସୁବିଧା ହେଉଚି ଯେ ମୁହଁ ଶୁଖିଲା କରିବି ? ତୋ ପରି ଭାଇ ପାଇଚି —ଏହାଠୁ ବଳି ଭାଗ୍ୟ ମୋର କଣ ଅଛି ? ବାଉରିଆ ହସି ହସି କହିଲା, ହରେ ଚଇତା, ମୁଁ ଜାଣେ—ତୁ ଯେତେ ଲୁଚାଇଲେ ବି ତୋ ମନ କଥା ମୁଁ ଭଲକରି ଜାଣେ । ନୂଆ ବାହା ହୋଇ ନୂଆ ସୁଆଦ ଚାଖୁ ଚାଖୁ ଘରେ ସୁନ୍ଦରୀ ଭାରିଯାକୁ ଛାଡ଼ି ଆସିଚୁ ବୋଲି ବିଦେଶରେ ମନଟା ତୋର ଲାଗୁନି, ନୁହେଁ ?

ଚଇତା କିଛି କହିଲା ନାହିଁ । ଖାଲି ମୁରୁକି ମୁରୁକି ହସିଲା । ସେ ହସରେ ଯେପରି ଇଙ୍ଗିତ ଦେଲା, ବାଉରିଆ ଭାଇ ତୁ ମୋ ମନ କଥା ଜାଣିଲୁ କିପରି ? ବାଉରିଆ କହିଲା, ଚଇତା ନୂଆ ନୂଆ ସବୁ ସିମିତି ହୁଏ । ମୁଁ ବି ଦିନେ ତୋରି ପରି ହେଉଥିଲି । ଦିନ ଗଡ଼ି ଯାଇଚି—ଅବୁଝା ମନ ଘର ଧରିଚି । ବାହା ହେଲିଣି ଆଜିକି ପାଞ୍ଚ ବରଷ ହେବ । ଏହି ପାଞ୍ଚ ବରଷ ଭିତରେ କେତେ ସୁଖ ଦୁଃଖର ଲହଡ଼ି ଭାଙ୍ଗି ଜୀବନ ସିମିତି ଚାଲିଚି ଆଗକୁ । ଅତୀତର ସୁଖ ସ୍ମୃତିଗୁଡ଼ା ଗୋଡ଼ି ମାଟି ପରି କାହିଁ କେତେ ଦୂରରେ ପଡ଼ିଲେଣି ରେ ଚଇତା । ଆଜି ଭାବିବାକୁ ବେଳ ମିଳୁନାହିଁ । ଖାଲି ରାତି ପାହିଲେ କାମ କର—ଖାଅ ପିଅ । ନିଜର ଘର ସଂସାର ଦେଖ । ଏହାହିଁ ହେଉଚି ସାର । ଜୀବନର ସୁଖ ସୁଆଦ ସବୁ ବୟସ ଗଡ଼ିଲେ ମରି ଯିବରେ ଚଇତା, ତୁ ପୁଣି ଦିନେ ବୁଝିବୁ । ଆମେ ତ ମଜୁରିଆ—ଦିନ ରାତି ଖଟିଲେ ବି ପେଟ ଗଣ୍ଡିକ ପୂରୁନାହିଁ । ଘରେ ପିଲାପିଲି ଉପାସ । ଆମର ଗୋଟାଏ ସୁଖ ଆନନ୍ଦ କ'ଣ ଅଛି ରେ । ମନ ସିନା ଲୋଡ଼େ—କିନ୍ତୁ ଜୀବନରେ ତା ସମ୍ଭବ ହୋଇ ପାରେନା ।

ଚଇତା ବାଉରିଆର କଥା ଶୁଣି କହେ—ସତେ ବାଉରିଆ ଭାଇ, ସବୁ ବୁଝି ବି ମନଟା ବୁଝୁନାହିଁ । ଖାଲି ଘର ଦୁଆର, ବାପା ବୋଉ, କନକ କଥା ବାର ବାର ମନେ ପଡୁଛି । ଆସିଲାବେଳେ କନକ ଖୁବ କାନ୍ଦୁଥିଲା । ଘରେ ଥିଲାବେଳେ ଦିନେ ଦିନେ ହଳରୁ ଫେରୁ ଫେରୁ ଡେରିହେଲେ ସିଏ ମନମାରି ବସେ—କଥା କହେନା —ସେ ପୁଣି କେମିତି ଚଳୁଥିବ, ଖାଲି ତାରି କଥା ମନେ ପଡୁଛି । ବାଉରିଆ ହସି ହସି କହିଲା, ମୁଁ ବି ଦିନେ ଏଇ ପାଇଁ ସେମିତି ହେଉଥିଲି । ମାସେ ଦି' ମାସରେ ଘରକୁ ପଳାଉଥିଲି । କିନ୍ତୁ ଦିନେ ସୁଦାମ ଭାଇଙ୍କର ଗାଳି ଶୁଣିଲି । କହିଲେ—ଗୃହଲକ୍ଷ୍ମୀ ଆଗ ନା ରେ ବାଉରିଆ ମାଇପ ଆଗ ? ତୋର ହାତକୁ ଘରେ ମଲା ଦିଦିଗି ବୁଢୀମା, ବୋଉ, ବାପା ଭାଇମା ଗୁହ ଗୁରଣ୍ଟା ପରାଣୀ ଅନାଇ ରହିଛନ୍ତି । ପିତୃପୁରୁଷ ଅର୍ଜିତ ଜମି ବୋଲି ଅଛିଏ ତ ନାହିଁ । ସବୁଦିନେ କିଣିବେ—ଖାଇବେ । ତୁ ଇମିତି କାମରେ ମାରି କରି ଘରକୁ ଦଉଡ଼ିଲେ ଗୃହଲକ୍ଷ୍ମୀ ରହିବେଟି ରେ ବାଉରିଆ; ସେଇ ଦିନଠୁ ଚେତନା ପଶିଲା ମୋ ଦେହରେ । ତା ପରେ ଆପେ ଆପେ ସବୁ ଦେହସୁହା ହୋଇଗଲା ।

ସେତିକବେଳେ ବସାରେ ଆଉ ଦି'ଜଣ ପଦନ ସୁତାର, କେଳୁ ମାହାନ୍ତି ଆସି ପହଞ୍ଚିଲେ । ପଦନ ସୁତାର, କେଳୁ ମାହାନ୍ତି ଦି'ଜଣଙ୍କ ବୟସ ଚାଳିଶ ପାଖା-ପାଖି । ଦି'ଜଣଯାକ ଜୋରଦାର ମଣିଷ—ଖଟିଲେ ହଟି ପଡ଼ନ୍ତି ନାହିଁ । ପଦନ ସୁତାର ଘର ଯାଜପୁର—କେଳୁ ମାହାନ୍ତି ଘର ଯାଜପୁର ପାଖ ଗାଁ ପ୍ରୀତିପୁର । ଦିହେଁ ଘର ପାଖାପାଖି ଲୋକ ବୋଲି ଦିହିଁଙ୍କର ଏକ ମେଳ—ଏକ କଥା ।

ପଦନ ସୁତାର ଦାନ୍ତ ଦି'ଟା ପଦାକୁ ବାହାରିଛି । ଦେହର ରଙ୍ଗ କଳା, ଦେଖିବାକୁ ବିକୃତ ଚେହେରାର ମଣିଷଟାଏ । ସେଥିପାଇଁ ପଦନ ସୁତାରକୁ କାଳିଆ ଦନ୍ତା କହିଲେ ଭାରି ଚଡ଼େ । ପାନ ଖାଏ ବେଦମ—ଦାନ୍ତଗୁଡ଼ା କଳା ପଡ଼ିଗଲାଣି । କେଳୁ ମାହାନ୍ତି ଏକବାଗିଆ ଲୋକଟା । ଯା ବୁଝିଥିବ—ସେଇଆ । ସାମାନ୍ୟ କିଛି ପାଠ ଶାଠ ପଢିଛି । ସେଥିପାଇଁ ମଜୁରିଆଙ୍କ ଭିତରେ ସେ ଟିକେ ନେତାଗିରି ଦେଖାଏ । ଗୌରବର୍ଣ୍ଣ—ମୁହଁଟି ଗୋଲ—ନାକଟା ଟିକିଏ ଚେପ୍‌ଟା —ଆଖି ଦିଇଟା ବଡ଼ ବଡ଼ ।

ପଦନ ସୁତାର କହିଲା, କିରେ ବାଉରିଆ, ଆଜି ଆସି ଏତେ ରାତି ହେଲାଣି । ବଜାର ସଉଦା ହେବ କେତେବେଳେ—ରୋଷେଇ ହେବ କେତେବେଳେ ? ବାଉରିଆ କହିଲା, ଯାଉଛି ପଦନ ଭାଇ, ତମେ ଦିହେଁ ବସାରେ ରୁହ । ଏତିକି କହି ବାଉରିଆ ତାରି ମଇଳା କୋଟଟି ଅଖା ବେଗ୍‌ଟା ନେଇ ଚଇତା ସାଥିରେ ବଜାରକୁ ବାହାରି ପଡ଼ିଲା ।

ବଜାରରୁ ଫେରୁ ଫେରୁ ରାତି ନଅଟା ବାଜିଗଲା । ତରବର ହୋଇ ଚଇତା ଚୂଲି ଧରି ଭାତ ହାଣ୍ଡି ଆଣି ବସାଇଲା, ବାଉରିଆ ପଶନ୍ତା କାଟିଲା । ଦିନବେଳେ ପଦନ ସୂତାର, କେଳୁ ମାହାନ୍ତି ରାତିକି ଚଇତା ଓ ବାଉରିଆ ପାଳି କରି ରୋଷେଇ କରନ୍ତି । ଖାଉ ଖାଉ ସେଦିନ ବାରଟା ବାଜିଲା । ମଜୁରିଆ ଜୀବନରେ ଖାଇବା ପିଇବା ବି ଠିକ୍ ନଥାଏ । କୋଉଦିନ ରାତିରେ କଳଘର ଚାଲିଲେ ମଜୁରିଆମାନଙ୍କୁ ନିଶ୍ୱାସ ମାରିବାକୁ ବେଳ ନଥାଏ । ଗଣ୍ଡିଏ ଖାଇ ପୁଣି ସେମାନେ ଦଉଡ଼ନ୍ତି ଅଧିକ ଲୋଭରେ ।

ଇମିତି କଳଘରର ମଜୁରିଆ ଜୀବନ ବିତିଯାଏ । ନିତି ସଞ୍ଜହେଲେ କୁଲି ବସ୍ତି ଭିତରୁ ଓଡ଼ିଆଙ୍କର ଖଞ୍ଜଣୀ ମାଡ଼ ଶୁଭେ । କିଏ ଭଜନ ଚଉତିଶା, କିଏ ବା ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣଙ୍କ ଛାନ୍ଦରୁ ପଦେ ଅଧେ ବୋଲି ନିଜର କର୍ମକ୍ଳାନ୍ତ ନୀରସ ଜୀବନକୁ ଟିକେ ସରସ କରି ଆନନ୍ଦ ଉପଭୋଗ କରନ୍ତି । ଆଉ କିଏ ବାହାରେ ଆଲୁଅ, ରଜ ଭାବନା, ପୁଜାବଳୀ'ସ ଗୀତମାନ ବୋଲି ଦିନସାରା ଦୁଃଖ କଷ୍ଟ ଭୁଲି ଯାଆନ୍ତି ।

କେଉଁଠି କେଉଁଠି ଦି' ଚାରିଜଣ ମେଳ ହୋଇ ସରଗ ସେପଟର ଅଚ୍ଛିଣ୍ଡା ଗପ କରନ୍ତି । କେଉଁଠି ଟୋକା ଟୋକା ମେଳ ହୋଇ ବସ୍ତି ଭିତରେ କାହାର ସୁନ୍ଦରୀ ବୋହୂ, ଝିଅ ବିଷୟରେ ଆଲୋଚନା କରନ୍ତି । କିଏ କିଏ ଘର, ପିଲା କୁଟୁମ୍ବ କଥା ଭାବି ହୁଅନ୍ତି ।

ପଦନ ସୂତାର ଟିକେ ହସଖୁସିର ଲୋକ । ବେଳେବେଳେ ଏପରି କଥା କହେ ହସେଇ ହସେଇ ପେଟ ଦରଜ କରେ । ଦିନେ ଦିନେ ରାତିରେ ପଦନ ସୂତାର ବସି କଣ ଭାବିଲା ବେଳେ ବାଉରିଆ ଭାଇ ପଚାରେ—କି ପଦନ ଭାଇ କା କଥା ଏତେ ଭାବୁଚୁ ମ ! ପଦନ ସୂତାର ହସି ହସି କହେ ଶାଳିଆ ବୋଉ କଥା ଭାବୁଚି ରେ । କେତେ ଥର ନିୟମ ପକେଇ କହିଥିଲି ଦଶରାକୁ ଘରକୁ ଯିବାକୁ । ଦଶରା ତ ଗଲା —ଗଲି ନାହିଁ । ସେଇଲାଗି ଫୋଖା ହୋଇ ଚଠି ଖଣ୍ଡେ ବି ଦେଉ ନାହିଁ । ବାଉରିଆ ହସି ହସି କହିଲା, ଶାଳିଆ ବୋଉ ତମର ଏଇ ସୁନ୍ଦର ଚେହେରା ଦେଖି ଏତେ କେମିତି ରସିଚ ମ ! ପଦନ ହସି ହସି କହେ; ଆରେ ଦିନେ ପରା ରାତିରେ ଡେରିକରି ଗଲି ବୋଲି ଶାଳିଆ ବୋଉ କବାଟ ଖିଲି ଦେଲା । ଯେତେ ଡାକିଲି ଫିଟାଇଲା ନାହିଁ । ପାଞ୍ଚଦିନ କାଳ କଥା ବି ପଦେ କହିଲା ନାହିଁ—ଚଇତା, ବାଉରିଆ, କେଳୁ ମାହାନ୍ତି ସମସ୍ତେ ହିଁ ହିଁ ହୋଇ ହସିଉଠିଲେ ।

କେଲୁ ମାହାନ୍ତ ନଜର ବଢ଼ମା ଦେଖାଇ କହୁଲା; ବିମଳୀକୁ ଯେତେବେଳେ ମୁଁ ବାହାହେଲି, ତା ରୂପ ଦେଖି ମୁଁ ଦୁନିଆ ଭୁଲିଗଲି । ଗାଁରେ ଯିଏ ଦେଖିଲା ସମସ୍ତେ କହୁଲେ; ମାହାନ୍ତ ଘରର ଲକ୍ଷ୍ମୀ ବୋହୂଟିଏ । ଦିନେ ତା ମନ ବଢ଼ିବାକୁ କହୁଲି, ବିମଳୀ ତୁ ଯେତେବେଳେ ଆମ ଗାଁ ରାମ ଭାଇଙ୍କ ସ୍ତ୍ରୀଙ୍କଠୁ ସୁନ୍ଦରୀ । ଏତିକରେ ମୁଁ ଯାଏ କୁଆଡ଼େ । ଫଁ କିନା ତ ଫଣା ଟେକି ଉଠିଲା । କହୁଲା; ଯାଉନା ସେଇ ରାମଭାଇଙ୍କ ମାଇପ କତିକି । ମାସେ କାଳ ପରା ମୋତେ କଥାରେ ପୂରାଇ ଦେଲା ନାହିଁ । ଯୋଉ ଡହଳ ବିକଳରେ ଦିନ କାଟିଲି ।

ଇମିତି କେତେଆଡ଼ର ଗପ ପଡ଼େ । ହସ ଖୁସିରେ ରାତିଟା ବିତିଯାଏ । ଦିନେ ଦିନେ ଏଇ ସବୁ କଥା ଶୁଣି ଚଇତା କନକକୁ ରାତିରେ ସପନ ଦେଖେ । ଚଟକିଣି ନିଦଟା ଭାଙ୍ଗିଯାଏ—କାହିଁ ତାର କନକ ? ବାହାରକୁ ଉଠି ଆସି ଅନାଏ ଆକାଶରେ ତାରାଗୁଡ଼ା ଆଖିମିଟିକା ମାରୁଚନ୍ତି । ମଇଲା ଜହ୍ନ ଆଲୁଅ କୁଲି ବସ୍ତି ଉପରେ ଘାଲି ପାଉଚି । ସେ ପାଖରେ କଳଘରଟା ଅସୁର ପରି ଛିଡ଼ା ହେଇଚି । ବିଜୁଳିବତୀ ଗୁଡ଼ା ଏଣେ ତେଣେ ଜଳୁଚି ।

ହଠାତ୍ କୁଆଡ଼ୁ ପବନଟା ବହି ଆସେ । ପାଖ ନର୍ଦ୍ଦମା କୁଡ଼ରୁ ଭାସି ଆସେ ପଚା ଗନ୍ଧ । ଚଇତାକୁ ବିରକ୍ତ ଲାଗେ । ଘର ଭିତରକୁ ଆସି କବାଟ ବନ୍ଦ କରି ଦେଇ ଭାବେ କି ବିରକ୍ତିକର ଏଇ ଜୀବନ । ଚାରେଟି ମାସ କଟିଗଲା । ଚଇତା ବରାବର ଘରକୁ ଟଙ୍କା ପଠାଉଚି । ଗଲା ମାସରେ ଘନ ସାହୁ ହାତରେ ବୋଉ ଓ କନକ ପାଇଁ ଲୁଗା, ବାପା ପାଇଁ କେତେ ଜାତିର ଖାଇବା ଦରବ ପଠାଇ ଦେଇଥିଲା । ବାପା ତାର ଟଙ୍କା, ଜିନିଷ ପାଇ ଭାରି ଖୁସି । ଚଇତା କତିକି ଚିଠି ଦେଇଚି, ଚଇତା ବୋଉ ଦେହ ଭଲ ନାହିଁ—ମଝିରେ ମଝିରେ ଜର ହେଉଚି । ବୋହୂ ଦେହପା ଭଲ ଅଛି । ଗାଁକୁ ବର୍ଷା ପାଣି ହେଉଚି । ଧାନ ଗଛ ସବୁ ଅଣ୍ଟାଏ ଉଚ ହେଲଣି । ଇମିତି କେତେ କ'ଣ ।

ରବିବାର ଛୁଟି ହେଲେ ଚଇତା ମାଟିଆ ବୁରୁଜ ଛାଡ଼ି କଲିକତାର ଚୌରଙ୍ଗୀ, ବଡ଼ବଜାର ଆଡ଼କୁ ଚାଲିଆସେ । ନିତିଆ ବସାରେ ପହଞ୍ଚିଲେ ହସି ହସି ଚଇତାକୁ କୁଣ୍ଢାଇ ପକାଏ । ତା'ପରେ ଦିହେଁ କେତେଆଡ଼େ ବୁଲନ୍ତି ।

ଚୌରଙ୍ଗୀର ବଡ଼ ରାସ୍ତା—ଦି'କଡ଼ରେ ଠାଏ ଠାଏ କୃଷ୍ଣଚୂଡ଼ା ଫୁଲର ଉଛୁଳା ହସ । ମଟର, ଘୋଡ଼ାଗାଡ଼ି, ଟ୍ରାମ, ବସ, ରେକ୍ସା ଛୁଟି ଚାଲିଚି । ଇଂରାଜୀ, ଆମେରିକାନ, ଚାଇନିଜ୍, ହିନ୍ଦୁସ୍ତାନୀ, ପଞ୍ଜାବୀ କେତେ ଜାତିର ମଣିଷ । କେତେ ସୁନ୍ଦରୀ ଯୁବତୀ ।

ଘୁରିଆଡ଼େ ଭୋଗ ବିଳାସର ଉଚ୍ଛ୍ବାସ । ଚଇତା ଏ ସବୁ ଦେଖିଲେ ମାଟିଆବୁରୁଜ ଓ ତାର ସେଇ କୁଲି ବସ୍ତି ଟା କେଡ଼େ ଅସନା ଦିଶେ । ମାଟିଆବୁରୁଜ ସେଇ ରାସ୍ତା କଡ଼ରେ କଂସେଇଙ୍କର ମାଂସ ଦୋକାନ । କି ଅସନା—ଆଇଁସିଣିଆ ଫକୁଟିଆ ଗନ୍ଧ । ଚଇତା ଭାବିଲାବେଳକୁ ତା ଦେହରେ ରୋମାଞ୍ଚ ଆସେ । ତାଠୁ ବଳି ପୁଣି ତାଙ୍କ କୁଲି ବସ୍ତିର ସେଇ ନର୍ଦ୍ଦମାର ଗନ୍ଧ—କି ଉତ୍କଟ । ଘୁରୁ ଘୁରୁ ଚଇତା ଆଗେଇ ଚାଲେ । ନଢିଆ କହେ, ଚଇତା ଭାଇ ଏଣେ ଦେଖନ୍ତ ।

ଚଇତା ଦେଖେ ଗୋଟିଏ ସଜ ଫୁଲ ପରି ଢଳ ଢଳ ସୁନ୍ଦରୀ ସ୍ତ୍ରୀଟିଏ ରେକ୍ସାରେ ଯାଉଚି । କଡରେ ତାର ସ୍ୱାମୀ । ସ୍ୱାମୀର ବାହୁବେଷ୍ଟନୀ ଭିତରେ ସୁନ୍ଦରୀଟି ହସି ହସି କ'ଣ କହୁଚି । ଚଇତା ଏହି ସବୁ ଦୃଶ୍ୟ ଦେଖିଲେ ତା ଦେହରେ ଲାଗେ ଚମକ—ରକ୍ତରେ ଆସେ ଉଷ୍ଣତା । କନକ କଥା ମନେପଡ଼େ । ଭାବେ କନକ ଏହାଠୁ ବଳି ସୁନ୍ଦର ନୁହେଁ । ହଠାତ୍ ରାସ୍ତାକଡ଼ ଦୋକାନରୁ ସଙ୍ଗୀତର ମୂର୍ଚ୍ଛନା ଭାବନାକୁ ତାର ଗୋଳମାଳ କରିଦିଏ ।

ଛନ୍ଦେରେ ହାସିର ବାନ୍ଧ ଭେଙ୍ଗେଚେ
ଉଚ୍ଛଲେ ପଡ଼େ ଆଲୋ
ଓ ରଜନୀଗନ୍ଧା ତୋମାର
ଗନ୍ଧ ସୁଧା ଢାଲୋ......

ଆଗରେ ପାରାଡାଇସ୍ ସିନେମା—ବିଳାସର ସ୍ୱପ୍ନପୁରୀ । ନୂଆ ଖେଳ ଆସିଚି—ସେଥିପାଇଁ ଭାରି ଭିଡ଼—କଣ୍ଟ୍ରୋଲ ଦୋକାନଠୁ ବଳି । ଚଇତା ଭାବିଲା ଖାଇବାକୁ ମିଳୁ ନାହିଁ—ଦେଶରେ ଅଭାବ ଅନାଟନ ଲାଗି ରହିଚି—ଭୋକିଲା ମଣିଷ ଚିତ୍କାର କରୁଚି ଦାନା ଦିଅ; ଅଥଚ ଦେଶର ଏତେ ପଇସା ଏଇଆଡ଼େ ପଡ଼ିଯାଉଚି ।

ଦିହେଁ ବୁଲି ବୁଲି କାଳି ସାମୁଲ ବସାରେ ପହଞ୍ଚିଲେ । କାଳି ସାମୁଲ ଦିହିଙ୍କୁ ଦେଖିଲେ ଭାରି ଖୁସି ହୁଏ । ଦିହିଙ୍କି ସେ ମଣିଷ କରିଚି—ଏହାଠୁ ବଳି ଆଉ କ'ଣ କରନ୍ତା ! କେତେ ସୁଖ-ଦୁଃଖ ପରେ ଚଇତା ନଢିଆ ଦିହେଁ ଫେରି ଆସନ୍ତି ନିଜ ନିଜର ବସାକୁ । ପାଣି ସୁଅ ପରି ଦିନ ଗଡ଼ିଚାଲେ ।



ଚଇତା କଲିକତା ଗ୍ଭଲିଗଲା । ଆଠ ଦିନ ପରେ ଭଲକରି ନଇଁଢ ଅସରାଏ ଅସରାଏ ବର୍ଷା ହେଲା । ନିଧି ପଧାନ ଜମିତକ ହଳ କରି ଧାନ ବୁଣିଦେଲା ।

ପୃଥିବୀକୁ ଶ୍ୟାମଳତା ଫେରି ଆସିଲା । ଧୀରେ ଧୀରେ ଧାନ ଗଛ ଦୋହଲିଲା । ନିଧି ପଧାନ ଆଶାଲତାରେ କେତେ ଜାତିର ଫୁଲ ଫୁଟିଲା । ଲକ୍ଷ୍ମୀଙ୍କ ଦୟା ହେଲେ ଧାନ ଗଣ୍ଡାକ ତାର ଭଲ ହେବ । ଘର କୁଟୁମ୍ବ ଚଳାଇ ମହାଜନ ଦେଣା ସୁଝିବ । ଦୁନିଆରେ ପାଞ୍ଚ ଜଣଙ୍କ ଆଗରେ ମୁଣ୍ଡ ଟେକି ଗ୍ଭଲିବ ।

ଚଇତାଠୁ ଯେଉଁ ଦିନ ଚିଠି ପାଇଲା—ସେ ଗ୍ଭକିରି କରିଚି—ଭଲରେ ଅଛି, ନିଧି ପଧାନ ହୃଦୟ ଆନନ୍ଦରେ ପୂରି ଉଠିଲା । ଗାଁ ମହାପୁରୁଷଙ୍କ ପାଖରେ ଗଞ୍ଜେଇ ଭୋଗ କଲା ।

ଗାଁର ସେହି ବଙ୍କା ବରକୋଳିକୁ ବାଳମାଳ ମଠ—ମହାପୁରୁଷଙ୍କୁ ବିପଦ ଆପଦରେ ଡାକିଲେ ଜବାବ ଦିଅନ୍ତି । ସେଇଥି ପାଇଁ ଗାଁ ଗୋଟାକଯାକ ମହାପୁରୁଷଙ୍କୁ ମାନନ୍ତି । ନିଧି ପଧାନ ମାନସିକ କରିଥିଲା, ପୁଅ ତାର ଭଲରେ ଗ୍ଭକିରି କରୁ । ମନକାମନା ତାର ମହାପୁରୁଷ ପୂରଣ କରିଚନ୍ତି ।

ମାସକୁ ମାସ ଚଇତା ଟଙ୍କା ପଠାଇଲା । ନିଧି ପଧାନ ଟଙ୍କା ପାଇ ଆତୁରି ଖୁସି ହେଲା । ଭାବିଲା ଏ ବରଷ ପୁରୁଣା ଘରଟାକୁ ଭାଙ୍ଗି ତାରି ଜାଗାରେ ନୂଆ ଘର ଠିଆ କରିବ ।

ନିଧି ପଧାନ ନିଜକୁ ଭୁଲିଯାଏ । ଦିନସାରା ଗୁଙ୍ପରେ ଲାଗେ । ଧାନ କିଆରୀରେ ବୁଲି ଆସିଲେ ପେଟ ତାର ପୂରିଯାଏ ।

ଚଇତା ଗଲା ଦିନଠାରୁ ଉର୍ମିବୋଉର ଦେହ ଭଲ ନାହିଁ । ବାୟୁ ରୋଗରେ ମରଣ ସହିତ ଅନବରତ ଯୁଦ୍ଧ କରି ଆଜି ତା'ର ଅଛି ଖାଲି ଭଙ୍ଗା ଜୀବନର ହାଡ଼ କେଇଖଣ୍ଡ । ମଝିରେ ମଝିରେ ଜର ହେଉଚି । ଯେତେ ମୁଆଡ଼ର ଔଷଦ ଦେଲେ କାଟୁ ନାହିଁ ।

କନକ—ଚଇତା ଗଲାଦିନୁ କନକର ଅବସ୍ଥା କହିଲେ ନସରେ । ସବୁବେଳେ ଚଇତାକୁ ଝୁରି ଝୁରି ଆସି କଣ୍ଟା ହେଲଣି । କୋଉ କାମରେ ତା'ର ମନ ଲାଗେନା । ଖାଲି ମନ ମାରି ବସେ । ଭଲ ଲୁଗା ଖଣ୍ଡେ କି ଗହଣା ଦି'ପଟ ପିନ୍ଧେନା । ଶାଶୁ କେତେ ଆକଟି କହେ । କନକ ସବୁ ଶୁଣେ । ବେଳେ ବେଳେ କୁହେ—କୋଉ ପିନ୍ଧିଲି, ନାଇଲି ଦିନ କ'ଣ ମୋର ସରି ଯାଉଚି ? ପୁନେଇଁ ପରବ କୁଆଡ଼େ ଯାଏ କନକକୁ କିଛି ଜଣା ଯାଏନା । ଖାଲି ଭାବେ—ସେ କେବେ ଆସିବେ । ସୂର୍ଯ୍ୟ ବୁଡ଼ିଗଲା ପରେ ଭାବନା ତାର ବୁଡ଼ିଯାଏ ଦୂର ଗଛ ଗହଳି ସେ ପଟରେ ।

× × × ×

ନିଧିଆ ଫୁଲଗଛ ମୂଳରେ ପାଣି ଦିଏ । ବାଗାନରୁ ଅନାବନା ଗଛ ଉପାଡ଼ି ସଫାସୁତୁରା କରେ । ନୂଆ ନୂଆ ଋତୁ ପାଇଁ ନୂଆ ଫୁଲଗଛ ଲଗାଏ । କାମ କରୁ କରୁ ବେଳେ ବେଳେ ଟିକେ ଅଳସ ମାରିଲେ—ସାହେବ ଆସି ନାଲି ଆଖି ଦେଖାଇ ଗାଳି ଦିଏ । ନିଧିଆ ମନଟା ବିଗିଡ଼ି ଉଠେ ।

ଗାଁରେ ଥିଲାବେଳେ କାହିଁ କୋଉ ଦିନ ତ ତାକୁ ପଦେ କେହି କହନ୍ତି ନାହିଁ । ଆଖି ଆଗରେ ତାର ସେଇ ଗାଁ ଛବି ନାଚିଉଠେ । ନିଧିଆ ଦେଖେ ତାର ଧାନ କ୍ଷେତ ଦୋହଲି ଦୋହଲି ଦକ୍ଷିଣା ପବନରେ ଲହଡ଼ି ଭାଙ୍ଗୁଚି । ସତେ ଯେପରି ତାକୁ ସେଇ ଟ୍ରେଣ୍ଟ ଟ୍ରେଣ୍ଟ ଧାନ କିଆରୀ ଡାକୁଚନ୍ତି । ନିଧିଆ ଭାବେ ଏ ଚାକିରି ଛାଡ଼ି ସେ ଚାଲିଯିବ । କିନ୍ତୁ ପର କ୍ଷଣରେ ଭାବେ ତାର ଭବିଷ୍ୟତ । ବାହାସାହା ହୋଇ ନାହିଁ । ପୁଣି ଦିନେ ତାକୁ ପାଞ୍ଚଜଣଙ୍କ ପରି ଘରସଂସାର କରିବାକୁ ପଡ଼ିବ । ତା ପାଇଁ ପୁଣି କିଛି ପାଣ୍ଠି ତ ଦରକାର । ବାପ ତ ଆସି ବୁଢ଼ା ହେଲଣି । ଜମିରୁ କେତେ ଆମଦାନୀ ହେବ !

ଘରୁ ବାପା ଚଠି ଦେଇଚ—ବାପ ନତ, ମୋର ସୁକଇଲଣ ନେବୁ । ଯଉ ଟଙ୍କା ପନ୍ଦରଟା ଦେଇଥିଲୁ—ସେ ସବୁ ବଲ ବସ୍ତରେ ଶେଷ । ସିତାରାମ ସାହୁର ଦୋକାନ ବାକୀ ସାତ ଟଙ୍କା ହେଲଣି । ଆଉ ବାକୀ ଆଣିବାକୁ ଗଲାବେଲକୁ ଦଉ ନାହିଁ । ବୋଉକୁ ଜର ହେଉଚ । ଆମ ଗାଁ ରଘୁପାଣି ବଇଦ ଆସି ଓଷଦ ଦେଉଚ । ତାର ପାଉଣା ହେଲଣି । ହାତ ଉଧାର ଦ'ସ୍ବରଟଙ୍କା ଅଛ । ଆସନ୍ତା ମାଘରେ ତୋର ବାହାଘର କରିବା ପାଇଁ ଯୋଗାଡ଼ କରୁଚ । ସବୁ ଭାବ ଚନ୍ତ ଟଙ୍କା ପଇସା ହାତରେ ରଖି ମୋ କଥଙ୍କ ପଠେଇବୁ । ବେଶୀ ଖରଚ କରିବୁ ନାହିଁ । ଦେହ ପା ପ୍ରତ ନଘା ରଖିବୁ । ବଦେଶ ଜାଗା—ଆମର ବା ସେଠି କଏ ଅଛ ? ଇମିତ କେତେ କଥା—କେତେ ଅଭାବ ଅଭିଯୋଗ ।

ନଡଆ ଚଠି ପଢ଼େ ଥରେ ନୁହେଁ—ବାର ବାର । ମନ-ଗ୍ଭଇଜରେ ତାର ଭାବନାର ଝିପିର ଝିପିର ମେଘ—କେତେବେଳେ ମେଘ କାଟି ଆଲୁଅ । ସେ ବାହାହେବ ଚଇତାଭାଇ ପର । ଜନକ ପର ତାର ବୋହୂଟିଏ ଆସିବ । ଭବିଷ୍ୟତ ଅନାବନା ସ୍ଵପ୍ନର କୁହେଳିକା ନଡଆ ଭାବନା ଗ୍ଭଇଜରେ ବସା ବାନ୍ଧେ । ସେ ଖାଲି ଭାବେ—ଆଉ ଭାବେ···।

ସଞ୍ଜ ଆସେ । ଆକାଶର ଜହ୍ନ ଆଲୁଅ ତୁନ ତୁନ ଆସି ନଡଆର ବାଗାନରେ ଫୁଲ ଶେଯ ପାରି ଶୋଇ ପଡ଼େ । କେତେ ଜାତିଆ ଫୁଲର ଗନ୍ଧ—ଖୁସିବାସିଆ ଧୀର ପବନ ନଡଆକୁ ଭାରି ଭଲ ଲଗେ । ଭାବେ ଇମିତକା ସୁନ୍ଦର ରାତକ ଚଇତା ଭାଇ ନୂଆବୋଉ ପର ସ୍ତ୍ରୀଟିଏ ପାଖରେ ଥାନ୍ତା କ । ପାଖ କୋଠିରୁ ଠଂ ଠଂ ହେଇ ବାରଟା ବାଜେ—ନଡଆର ଭାବନାର ଖିଅ ଛୁଡ଼ିଯାଏ ।

ଦେଖେ ବଜୁଲବତି ଗୁଡ଼ା କାଁ ଭାଁ ଜଳୁଚ । ନଡଆ ଭାବେ କ ବରକ୍ତକର ଏ ଆଲୁଅ । ବସାକୁ ଫେରି ତାର ସପ ଖଣ୍ଡକ ପାରି ଶୋଇପଡ଼େ । ସପଟା ଡନ ଜାଗା ଛିଣ୍ଡା—ତକିଆ ମଇଳା କୋଚଟ । ନିଆଁ ଲଗାଇଲେ ଜୁଇଁବ ନାହିଁ ।

× × ×

କାଲ ସାମୁଲ କରପୋରସନରେ କୁଲି କାମ କରେ । ରାସ୍ତା ହାଣି ମରାମତ କରେ । ଜୀବନ ମୂର୍ଚ୍ଛା କାମ—କ ଖରା—କ ବରଷା । କେତେ ଖରା, ବରଷା କାଲ ସାମୁଲ ଅଙ୍ଗେ ଲଭେଇଚ । ତାର ହସାବ ନାହିଁ । ସେ ଖାଲି ଖଟିଚ ଜୀବନ ବକଲରେ । ତାର ପିଲ ଦୋଟି ମଣିଷ ହେବେ—ହାତକୁ ଦ'ହାତ ହେବେ । ତା ପରେ କାଲ ସାମୁଲର ଛୁଟି ।

କାଳ ସାମୁଲର କଲକତାରେ ଆସି ତିରିଶ ବରଷ ହେଲଣି । ସେ ଖଟି ଖଟି ନିଜର ରକତ ପାଣି କରି ଦେଇଛି । ମୁଣ୍ଡ ବାଳ ଆସି ଧଳା ହୋଇଗଲଣି । ଅଣ୍ଟା ନଇକି ପଡ଼ିଲଣି ।

କାଳ ସାମୁଲ ଭାବେ, କଲକତାରେ ଏ ଯେଉଁ କୋଠାବାଡ଼ି, ବଡ଼ ବଡ଼ ପିଚଢ଼ଳା ରାସ୍ତା, ବିଜୁଳିବତି, ହାଓଡ଼ାପୋଲ ଏ ସବୁ ତାର ଓ ତାପରି ଆଉ କେତେ ଜଣଙ୍କର ହାତ ତିଆରି । ସବୁଥିରେ ଓଡ଼ିଆଙ୍କର ହାତ ଯଶ ରହିଛି । କିନ୍ତୁ କାହିଁ; ତଥାପି ପେଟ ବିଖଣ୍ଡିକ ପୂରୁ ନାହିଁ—ପିନ୍ଧିବାକୁ କନା ଖଣ୍ଡେ ମିଳୁ ନାହିଁ । ସେଇ ଓଦା ସନ୍ତସନ୍ତିଆ ଘରେ ପୋକ ପରି ପଡ଼ି ରହିବାକୁ ପଡ଼ୁଛି । ଗୋଟିଏ ବସାକୁ ଦଶଜଣ—ଗୋଟିଏ ପାଇଖାନାକୁ ଶହେ ଜଣ, ଆଲୁଅ ନାହିଁ । ଚାରିଆଡ଼େ ମଶାର ମେଘ—ଗୋଳିଆ ନର୍ଦ୍ଦମାର ପାଣି—ନାକଫଟା ଗନ୍ଧ ।

ବଙ୍ଗାଳିମାନେ ଓଡ଼ିଆଙ୍କ ପ୍ରତି ଘୃଣାରେ ନାକ ଟେକନ୍ତି । କାହିଁକି ? କାଳ ସାମୁଲ ଭାବେ, ଏକତାର ଅଭାବ—ସାହାସର ଅଭାବ । ଭାବ ଭାବ ମୁଣ୍ଡଟା ତାର ଘୂରେଇ ଦିଏ ।

ତା' ଜୀବନରେ ଶ୍ରେଷ୍ଠ ବଡ଼ କେତେ ଘଟଣା ଘଟିଛି । କିନ୍ତୁ କାଳ ସାମୁଲ ହଟିଲା-ବାଲା ନୁହେଁ । ମୁହେଁ ମୁହେଁ ଜବାବ ଦେଇଛି । ଇଜ୍ଜତ ତଳେ ପକାଇ ଦେଇ ନାହିଁ କି ଚାକରିକୁ ଡରି ନାହିଁ । ମୂଲିଆ ଲୋକ—ଯୋଉଠି ଖଟିବ ସେଇଠି ଖାଇବ । ଏତେ ଡର କ'ଣ—ଭୟ କାହାକୁ ? କେତେ ବାବୁଙ୍କର ମୁଣ୍ଡ ଏଇ କାଳ ସାମୁଲ ପାଦତଳେ ନୋଇଁଛି—ପୁଣି କ୍ଷମା ମାଗିଛି ।

ଦିନ ଯାଇଛି । କାଳ ସାମୁଲ ଉଷ୍ମ ରକତ ଆଜି ଶୀତଳ ହେଇଛି । ନିଜେ ରୋଜଗାର କରି ଘର କରିଛି—ଜମି ପାଞ୍ଚମାଣ । ଦି' ପୁଅ ପାରିଗଲେଣି । ହାତକୁ ଦି'ହାତ ହେଇ ସାରିଲେଣି । ଏବାର କାଳ ସାମୁଲର ଛୁଟି ।

କାଳ ସାମୁଲ ଚାକରି ଛାଡ଼ି ଗାଁମାଟିକୁ ଫେରି ଆସୁଛି । ଆସିଲାବେଳେ ତାର ସାଙ୍ଗ ସାଥୀଙ୍କି ଛାଡ଼ି ଆସୁଥାଏ ବୋଲି ତା'ପରି ଟାଣୁଆ ହୃଦୟଟା ବି ତରଳିଗଲା । ଏଇ ବସା, ସାଙ୍ଗ-ସାଥୀ ମେଳରେ କେତେ ଦିନର ସ୍ମୃତି ଜଡ଼ିତ—ଅନେଇଲେ ଆଖି ପାଏନା । କାଳ ସାମୁଲକୁ ସମସ୍ତେ ମୁରବି ପରି ମାନିଚନ୍ତି । କାଳ ସାମୁଲ ସମସ୍ତଙ୍କୁ ଭାଇ ପରି ସ୍ନେହଦେଇଛି ।

ଆସିଲାବେଳେ ସମସ୍ତଙ୍କ ଆଖିରେ ଲୁହ । ସମସ୍ତଙ୍କ କଣ୍ଠରେ, କାଳ ଭାଇ ଚାଲି-ଯାଉଛି—ଭୁଲି ଯିବନି—ଚିଠି ଖଣ୍ଡେ ଖଣ୍ଡେ ଦେଉଥିବ । କାଳ ସାମୁଲ ସମସ୍ତଙ୍କୁ

ବୁଝେଇ କହିଲା—ଯାଉଚ ଭାଇ ପୁଣି ଭାଗ୍ୟରେ ଥିଲେ ତମମାନଙ୍କ ସହିତ ଦେଖା । ସ୍ୱଗବଶତଃ କେତେବେଳେ କା ମନରେ ଯଦି କଷ୍ଟ ଦେଇଥାଏ, ସେ ସବୁ ଭୁଲିଯିବ ଭାଇ—କାଲା ସାମୁଲକୁ ପଛରେ ଗାଳି ଦେବ ନାହିଁ । ଏ ଜନମରେ ଆଉ ଦେଖା ହିବ ପର ଲାଗୁନ । ବୁଢ଼ା ହେଲିଣି । କେତେବେଳେ ଆମ ସେଇ ମଶାଣିର ଅପନ୍ତରା ଭୂଇଁର ଡାକରା ଆସିବ ତ ଚାଲିଯିବି । ଥାଅ ଭାଇ, ପୁଣି ପରଜନମରେ ଦେଖା ।

ସମସ୍ତେ ଆଖିରୁ ଲୁହ ପୋଛିଲେ । କାଲା ସାମୁଲ ବିଦାୟ ନେଲା । ନନ୍ଦିଆ, ଚଇତା କାଲା ସାମୁଲକୁ ହାଓଡ଼ା ଷ୍ଟେସନରେ ଛାଡ଼ିଦେଇ ଆସିଲେ । ଆସିଲାବେଳେ କାଲା ସାମୁଲ କେତେ ବୁଝାଇ ଦହିଁକି କହିଲା, ସମସ୍ତିଙ୍କି ଭାଇ ପରି ଭାବିଥିବ—ବାଦ କରିବ ନାହିଁ । ବିଦେଶ ଜାଗା—ସ୍ନେହ କଲେ ପର ବି ଆପଣାର । ନନ୍ଦିଆ, ଚଇତା ଆଖିରୁ ଲୁହ ପୋଛିଲେ ।

ସିଗ୍ନାଲ ଦେଇ ଗାଡ଼ି ଛାଡ଼ିଲା । ଦହେଁ ମୁଣ୍ଡ ନୋଇଁ ଦଣ୍ଡବତ ହେଲେ । ଲୁଚିଗଲା କାଲା ସାମୁଲ ଆଖିର ଆଢୁଆଳରେ । ପଛରେ ପଡ଼ି ରହିଲା କଲିକତା —ଦୀର୍ଘ ତିରିଶ ବର୍ଷର ଅଚ୍ଛେଦ୍ୟ ବନ୍ଧନ ଛିଡ଼ିଗଲା । କାଲା ସାମୁଲ ଆଖିରେ ଲୁହ ଜକ ଜକ କରି ପରକ୍ଷଣରେ ଶୁଖିଗଲା ।



ଆଜି ସକାଳଠାରୁ କାହିଁକି ଚଇତାର ମନ ଟୋଳେଇ ଘାଣ୍ଟି ହେଉଛି । ସାରା ହୃଦୟରେ ବେଦନାର ମ୍ଳାନ ଛାୟା । ଅତୀତର ସ୍ମୃତିଗୁଡ଼ା ଖାଲି ଆଲୁଅ ଲହଡ଼ି ଭାଙ୍ଗୁଛି ଗୋଟିକ ପରେ ଗୋଟିଏ—ବିରାମ ନାହିଁ କି ଅନ୍ତ ନାହିଁ ।

କାହିଁ କେତେ ଦୂରରେ ତାର ସେଇ ଛୋଟିଆ ଗାଁ ଟି । ଗାଁ ଦାଣ୍ଡ—ତାରି ଉପରେ ସେଇ ପୁରୁଣା ସଜନା ଗଛଟିଏ । ମୂଳରେ ତାର ନୂଆଣିଆ ଚାଳଘର ଖଣ୍ଡିକ । ସେଇ ଚାଳିଆ ଭିତରେ ବୋଉ ତାର କ'ଣ କରୁଥିବ ? ହୁଏତ ଘର ଦୁଆର ଓଳେଇ "ବଉଳା" ଖାଇବା ଖବର ବୁଝୁଥିବ । ବଉଳା ଗାଈ ନୁହେଁ—ମଣିଷ । ତା'ରି ସେବା କରିଛି ସେ । ବଉଳା କ'ଣ ସତେ ତାକୁ ଭୁଲି ଯାଇଥିବ । ନାଁ ନାଁ କଦାପି ଭୁଲି ନ ଥିବ । ବିଦେଶରୁ ଫେରି ବଉଳା ବୋଲି ଡାକିଲେ ସେ ନିଶ୍ଚେ ଚିହ୍ନିବ । ହମ୍ବା ହମ୍ବା ରଡ଼ି ଛାଡ଼ି ଦଉଡ଼ି ଆସିବ । ଦେହରେ ଘଷି ହୋଇ କେତେ ସୁଖ-ଦୁଃଖ କାହାଣୀ ସେ କହିବ ।

ତାର ସେଇ ଧାନ କିଆରି ସବୁଜ ଶିରୀ ନେଇ ହସି ଉଠୁଥିବ । ପବନ ଦଉଡ଼ି ଦଉଡ଼ି ଆସି ଶୋଇ ପଡ଼ୁଥିବ—ହାଲିଆ ହୋଇ ପୁଣି ଟିକିଏ ଛାଡ଼ି ପଳାଉଥିବ ଦିଗନ୍ତ ସେପାରିକି । ବାପ ତାର ବିଲ କାମ କରିବାକୁ ଯାଉଥିବ, ଲୁଗା ଖଣ୍ଡିକ ଭିଡ଼ି ଦେଇଥିବ—ଅଣ୍ଟାରେ ଗାମୁଛା । ମନରେ ଦୁଃଖ ନଥିବ—ହସ ହସ ମୁହଁ । ବେଳେ ବେଳେ ଗାଇ ଦେଉଥିବ ଉପଇନ୍ଦ୍ର ଛାନ୍ଦରୁ ପଦେ ଅଧେ ।

ନଈରୁ ଗାଧୋଇ ଆସି ସାରିବଣି କନକ । ଚଉଁରା ମୂଳେ ପାଣି ଦେଇ କେତେ ମନର ବେଦନା ଜଣାଉଥିବ । ଆହା କେଡ଼େ ନିରୀହ ସରଳାଟି ସତେ ! ମୁଁ ନ

ଖାଇଲେ ସେ ଖାଇବ ନାହିଁ । ଟିକିଏ କୁଆଡ଼େ ଗଲେ ତାକୁ ଖାଲି ଚିନ୍ତା—ଦୁନିଆ ଯାକର ଚିନ୍ତା । ରାତିରେ ଶୋଇବାବେଳେ କେତେ ମୋଡ଼ି ଦେବ । କେତେ ଏଣୁ ତେଣୁ କଥା କହିବ । ଶୁଣିଲଣି, ସେଇ ଯୋଡ଼ି ଗାଁ—ବିରୂପା, ବ୍ରାହ୍ମଣୀ ଦିଧାର ହୋଇ ମିଶିଯାଇଚ, ତାରି କୂଳରେ ନାଁଟା ତାର କଣ ଇନ୍ଦୁପୁର । ସେଇଠି ବାଉଣ୍ଡି ଝିଅଟିଏ ମ । ଦେଖିବାକୁ କି ଉଭଲ—ଗୋରା ତକ ତକ ମୁହଁ । ଆଖିରେ କଜଳ । ମୁଣ୍ଡରେ ସିନ୍ଦୁର । ଘଡ଼ିଏ ଦେଖିଲେ ପେଟ ପୂରେନା । ସମସ୍ତେ କୁହନ୍ତି ବାଉରୀ କୂଳରେ ଜନମ ସିନା—କିନ୍ତୁ ବାଉଣ୍ଡି ଝିଅ ସେ ନୁହେଁ, ନାଁଟି ତାର ହୀର । ରୂପାର ହୀର ନୁହେଁ—ସୁନାର ହୀର । ସମସ୍ତେ କହନ୍ତି, ଯା ଘରକୁ ଯିବ, ତା କୂଳ ଉଜ୍ଜ୍ୱଳ କରିବ ।

ଭାଗ୍ୟ ତାର ଖରାପ । ଶେଷରେ ବାପଛେଉଣ୍ଡ ପିଲଟାକୁ ଦାଦ ତାର ଗ୍ଭଳିଶ ବରଷର ବୁଢ଼ାବର ହାତରେ ସମର୍ପି ଦେଲେ । ହୀର କେତେ କାନ୍ଦିଲା । ଚପିଲା କୋହ, ମନର ଅଜଣା ବାସନା ସେ ଖାଲି ଜଣକୁ କହିଥିଲା, ଯିଏ ତାକୁ ପ୍ରାଣ ଦେଇ ଭଲ ପାଇଥିଲା—ସେଇ ଅତି ଆପଣାର ନୂଆବୋଉକୁ । କାନ୍ଦିଲେ କଣ ହେବ ଭଉଣୀ ! ଯା ଭାଗ୍ୟରେ ଥିବ ହେବ । ନୂଆବୋଉ ଯେତେ ବୁଝାଇଲେ ବି ହୀର ବୁଝିଲା ନାହିଁ । ମନ ତାର ଅମାନିଆଁ ହେଇ ଉଠିଲା । ସେ ସେଠି ବାହା ହେବନି— ଜିଦ୍ ଧରିଲା । ଗାଁର ଟୋକାଦଳ ଉଠିଲେ ତା ଦାଦର ଏଇ ଅନ୍ୟାୟ ବିରୁଦ୍ଧରେ । ଦାଦ ତାର ଗର୍ଜି ଉଠିଲା; "ଝିଅ ହେଇ ମୋ ମୁହଁରେ କାଳି ବୋଳିଲୁ । ତୋ ମୁହଁ ମୁଁ ଦେଖିବାକୁ ଗ୍ଭହେଁ ନା—ତୋ ଖୁସିରେ ଯେଉଁଠି ଇଚ୍ଛା ସେଠି ବାହାହ"; ହୀରର କ୍ଷଣିକ ଉତ୍ତେଜନା ପାଣି ଫାଟି ଗଲା ।

ତା' ପରେ ବାହାଘର ବାଜା ବାଜିଲା, ବାଣ ଫୁଟିଲା । ଗାଁ ପିଲା, ଟୋକା, ବୁଢ଼ା ମାଇପେ ଦଉଡ଼ିଲେ ବୁଢ଼ାବର ଦେଖିବାକୁ । ସମସ୍ତେ ନାକ ଟେକିଲେ । ଝିଅ ନାଖି ବର ଇଏ ! ଇମିତ ଝିଅକୁ ବୁଢ଼ାବର ହାତରେ ବାହାଦେବା ଅପେକ୍ଷା ମର୍ଦ୍ଦିନଈରେ ପେଲି ଦେଲନି ଦାଦ ତାର ! ଲୋକଙ୍କ କଥାକୁ କାନ ନ ଦେଇ ବାହାଘର ହେଇଗଲା । ଆହା ବିଚରାର ମନକଥା କେହି ବୁଝିଲେ ନାହିଁ—ଇମିତ ମନେ ମନେ ଫୁଟି ମଉଳିଗଲା ।

କହୁ କହୁ କନକର କଥାର ସୁର ବ୍ୟଥାରେ ନଇଁ ପଡ଼େ । ଇମିତ କେତେ ଗାଁଇଜର କେତେ କଥା ସେ କହେ । ଦିନେ ଦିନେ ରାତି ପାହିଯାଏ—କଥା ତାର ସରେନା, ଅଧା, ଦରପନ୍ତରିଆ ହେଇ ରହେ । ଏହା ଭିତରେ କେତେ ପୁନେଇଁ କେତେ ପରବ ଆସି ବାହୁଡ଼ି ଗଲଣି, କନକକୁ ସବୁ ପିତା ଲାଗୁଥିବ—ସେ ଖାଲି ଅନେଇ ବସିଥିବ ।

ଇମିତ ଭାବନାରେ ଅସ୍ଥିର ହୋଇ ଉଠିଲା ଚଇତାର ମନ । ବାପା, ବୋଉ, କନକ, ଘର, ଦୁଆର ସବୁ ଖାଲି ଆଖି ଆଗରେ ଛଳ ଛଳ ହୋଇ ଦେଖାଗଲା । ଚଇତା ନିଜକୁ ଭୁଲିଗଲା । ଭୁଲିଗଲା ଖାଇବା ପିଇବା—ଆଉ ଭୁଲିଗଲା ସାତ ଦିନର ଖଟଣୀ ପରେ ଆଜି ରବିବାରର ମଉଜ ମଜଲିସର ଓଳମାନ ।

ତା' ପରଦିନ ଚିଠି ପାଇଲା ବୋଉ ତାର ଶକ୍ତ ବେମାର । ଚିଠି ପଢ଼ୁ ପଢ଼ୁ ଚଇତାର ଆଖି ସଜଳ ହୋଇଆସିଲା । ବୋଉର ମଳିନ ମୁହଁ—ଦର ଦର ଲିଭିଲା ଆଖି, ଆଖି ଆଗରେ ନାଚି ଉଠିଲା । ଆଉ କାନ ପାଖରେ ଉଠିଲା ତାର ସେଇ ମଧୁର ଡାକ—ଚଇତା, ଚଇତା ! ପିଲାଟିଦିନୁ ବୋଉର କେତେ ଆଦର—କେତେ ଯତ୍ନ ସବୁ ଖାଲି ମନେ ପଡ଼ିଲା । ଚଇତା ଭାବିଲା—ଆଉ ଭାବିଲା । କଳଘରର ଛୁଟିଥିବା ବଇଁଶୀ ଚିତ୍କାର କରି ଉଠିଲା । ତଥାପି ଭାବନା ତାର ଭାଜିଲା ନାହିଁ ।

ବାବୁ ଛୁଟି, ବୋଉ ମୋର ଶକ୍ତ ବେମାର । କେତେ କେତେ ବ୍ୟାକୁଳ ନିବେଦନ କରି ଚଇତା ଛୁଟି ପାଇଁ ଦରଖାସ୍ତ କଲା । ଛୁଟି ମଞ୍ଜୁର ହେଲାନାହିଁ । ଚଇତାର ସବୁ ଆଶା ଜଳି ପୋଡ଼ି ପାଉଁଶ ହୋଇଗଲା । ଚଇତା ଖାଲି ଭାବିଲା ଆଖିରୁ ଲୁହ ନିଗାଡ଼ି, ବାଉରିଆ ଭାଇ କେତେ ବୁଝାଇଲା—ଚଇତା କିଛି ବୁଝିଲା ନାହିଁ ।

ଦିନେ ଟେଲିଗ୍ରାମ ଆସି ପହଞ୍ଚିଲା, ବୋଉ ତାର ମରିଯାଇଛି । ଟେଲିଗ୍ରାମଟା ପାଇ ଚଇତା ଭେ ଭେ ହୋଇ କାନ୍ଦି ଉଠିଲା । ବାଉରିଆ ଭାଇ, ପଦନ ସୁତାର, କେଳୁ ମାହାନ୍ତି ଚଇତାକୁ କେତେ ବୁଝାଇ ସାନ୍ତ୍ୱନା ଦେଲେ—ଚଇତା, କିଏ କାହାରରେ ! ବୋଉ, ବାପା, ଭାଇ, ଭଉଣୀ, ପଡ଼ିଶା ସବୁ ମିଛ—ଦୁନିଆ ବି ମିଛ, ଖାଲି ଗୋଟାଏ ମାୟା । ଏହି ମାୟା ତୁଟିଲେ ସମସ୍ତେ ପର—କିଏ କାହାର ନୁହେଁ ।

ଚଇତା ଭାବିଲା ଚାକିରି ଛାଡ଼ିଦେବ । ଲୋଡ଼ାନାହିଁ ତାର ଧନ—ଲୋଡ଼ାନାହିଁ ତାର ବଡ଼ ହେବାର ମୋହ । ସେ ତାର ସେଇ ମାଟିକାଦୁଆ ଗାଁକୁ ଲେଉଟିଯିବ । ବାପା ସାଙ୍ଗରେ ମାଟିସହିତ ହସି ଖେଳି ଦିନ କାଟିବ—କନକ ସାଥୀରେ ଘର କରିବ ।

କିନ୍ତୁ ପରକ୍ଷଣରେ ମନଟା ତାର ଦୁର୍ବଳତାରେ ଭରିଯାଏ । ଭାବେ ମହାଜନର ଦେଣା ବଢ଼ୁଛି । ଘର ଖଣ୍ଡିକ ଭାଙ୍ଗି ରୁଜି ଗଲାଣି । ଚାକିରି ଛାଡ଼ିଲେ ଏ ସବୁ ହେବ କିପରି ? ଗାଁରେ ବା କେତେ ରୋଜଗାର ହେବ ! ଇମିତ ଭାବି ଭାବି ଚଇତାର ଦୁର୍ବଳ ମନ ସେଇ କଳଘରେ ପଡ଼ି ରହିବାକୁ ଇଙ୍ଗିତ ଦିଏ ।

ଚଇତା ଘରକୁ ବୋଉର ଶୁଦ୍ଧିକ୍ରିୟା ପାଇଁ ପଚିଶଟା ଟଙ୍କା ପଠାଇ ଦେଲା ଆଉ ବାପା କତିକି ଚିଠିଦେଲା—ବାପା, ମୋଠୁ ବଳି ହତଭାଗା ଏ ଦୁନିଆରେ କେହି-

ନାହିଁ । ମଲାବେଳେ ବୋଉକୁ ଦେଖି ପାରିଲି ନାହିଁ କି ବୋଉର ସେବା କରି ପାରିଲି ନାହିଁ ! ମଲାବେଳେ ପାଣି ମୁନ୍ଦାଏ ବି ଦେଇ ପାରିଲି ନାହିଁ । ମୋ ପରି ପୁଅ ତମର ବଞ୍ଚି ରହି କି ଲାଭ; ବରଂ ଏଇ ବିଦେଶରେ ମରିଯିବା ଭଲ । କେତେ ଚେଷ୍ଟା କରି ଛୁଟି ସାତଛାଦନ ବି ମିଳିଲା ନାହିଁ । ବୁଢ଼ାଦିନେ ତମର ମୁହଁରେ ହସ ଫୁଟାଇବା ପାଇଁ ଏଠି ଖାଲି ଭାଗ୍ୟକୁ ଆଦରି ପଡ଼ି ରହିଲି । ଚାକିରିର ମାୟା ତୁଟାଇ ପାରିଲି ନାହିଁ ।

ଯିଏ ମୋତେ କାଖେଇ କୁଣ୍ଢେଇ ମଣିଷ କରିଥିଲା—ଯିଏ ମୁଁ ନ ଖାଇଲେ ଖାଉ ନଥିଲା—ସେ ଆଜି ଆଖି ବୁଜିଛି । ତା ପାଇଁ ମୁଁ ଆଜି କଣ କରିଛି ? ନିଜ ଜୀବନ ସଳିତାକୁ ଜାଳି ସେ ଯେଉଁ ଆଲୁଅ ଟିକକ ମୋତେ ଦେଇ ଯାଇଥିଲା—ସେ ଟିକକ ଆଜି ଲିଭିଗଲା ପରି ଲାଗୁଛି ।

ଦିନ ଗଡ଼ି ଚାଲିଲା—କିନ୍ତୁ ଚଇତାର ମାତୃହରା କ୍ଷତ ଲିଭିଲା ନାହିଁ ।



ନନ୍ଦଆ ଚିଠି ପାଇଲା । ବାପା ତାର ଲେଖିଛି, ଏଇ ମାଘମାସ ପନ୍ଦରରେ ତୋର ବାହାଘର । ଶୀଘ୍ର ଟଙ୍କା ପଇସା ସଜାଳ କରି ଘରକୁ ବାହୁଡ଼ିଆ । ଡେରି କରିବୁ ନାହିଁ । ମଦନ ଜେନାକୁ ମୁଁ ଜବାବ ଦେଇ ସାରିଛି ନୟନୀକୁ ବୋହୂ କରି ଆଣିବି ବୋଲି । ବୋଉ ତୋର ଭାରି ଖୁସି ।

ନନ୍ଦଆ ଚିଠି ପାଇଲା ବେଳୁ ଗୋଡ଼ ଦି'ଟା ତଳେ ଲାଗୁନାହିଁ । ମନଟା ଯାଇଁ କୋଉ ଦୂରରାଇଜରେ ଉଡ଼ୁଛି । ନୟନୀ ହେବ ତାର ବୋହୂ । ନୟନୀକୁ ନେଇ ସେ ସୁନାର ସଂସାର ଗଢ଼ିବ ଚଇତା ଭାଇ ପରି । ଆଉ ନୟନୀଟି ଦେଖିବାକୁ ଚମ୍ପାଫୁଲ ପରି ଗୋରା ତକତକ ଦେହ । ମୁହଁଟି ଗୋଲ—ଠିକ୍ ପୁନେଇଁ ଜହ୍ନପରି । ସରୁ ସରୁ ଭ୍ରୂଲତା, ଆଖି ଯୋଡ଼ିକ ହରିଣୀ ଆଖିପରି ସବୁବେଳେ ଚଞ୍ଚଳ । ଛବିଟି ପରି ରୂପ । ଗାଁରେ ସବୁ ଝିଅଙ୍କଠୁ ସେ ସୁନ୍ଦରୀ । ସେଇ ହେବ ନନ୍ଦଆର ନନ୍ଦଦନଆ ଭଙ୍ଗାଗଢ଼ା ଜୀବନର ସୁଖ ଦୁଃଖର ସାଥୀ । ନନ୍ଦଆ ଖାଲି ସ୍ୱପ୍ନ ଦେଖିବାକୁ ଲାଗିଲା । କାମରେ ଦାମରେ କୋଉଥିରେ ମନ ଲାଗିଲା ନାହିଁ ।

ଏ ଖୁସି ଖବର ନେଇ ନନ୍ଦଆ ଦଉଡ଼ି ଗଲା ଚଇତା ଭାଇ କତିକି । ଚଇତା ଭାଇ ସବୁ ଶୁଣି କହିଲା, ତୁ ଭାରି ଭାଗ୍ୟବାନ ନନ୍ଦଆ—ନୟନୀ ପରି ବୋହୂ ପାଉଛୁ । ଆଉ ଦୁଃଖ କଣରେ ? ସବୁ ଦୁଃଖ ତାରି ମୁହଁକୁ ଚାହିଁଲେ କ୍ଷଣକରେ ଉଭାଇ ଯିବ । ଚଇତା ଭାଇ କଥା ଶୁଣି ନନ୍ଦଆ ମନଟା କୁଣ୍ଢେ ମୋଟ ହୋଇଗଲା ।

ସାହେବଙ୍କୁ କହି ବୋଲି ନନ୍ଦଆର ମୋଟେ ମାସ ଗୋଟିଏ ଛୁଟି ମିଳିଲା । ନନ୍ଦଆ ନୟନୀ ପାଇଁ ହାତକୁ କାଚ, ବାଜୁ, ଅଣ୍ଟାକୁ ଅଣ୍ଟାସୂତା ଇମିତି କେତେ ରକମର

ଗହଣା; ଲଗେଇବା ପାଇଁ ସ୍ନୋ, ସାବୁନ, ତେଲ, ଅତର, କେତେ ଜିନଷ ସବୁ କିଣିଲା । ଏତେବଡ଼ ବାହାଘରଟା ହେଉଚ—ତେଲ, ଅତର ଟିକେ ନେବ ନାହିଁ ! ଜିନଷ ସଜାଡ଼ି କରି ନଢ଼ଆ ଘରକୁ ଫେରିଲା ।

ବୋଉ ମଲାଦିନୁ ଚଇତାର ଅନ୍ତରରେ ଗୋଟାଏ ବ୍ୟଥାର ଦାଗ କିଏ କାଟି ଦେଇଚ । ସମସ୍ତଙ୍କର ସୁଅରେ ସେ ଦାଗ ଲିଭୁ ନାହିଁ—ଆହୁରି ଜକ ଜକ କରୁଚ ।

ନଢ଼ଆ ଗଲାଦିନୁ ଚଇତାର ଖାଲି ଘର କଥା ମନେ ପଡ଼ୁଚ । ଭାବନା ବାଦଲ ଭିତରୁ ଉଙ୍କି ମାରୁଚ ଅତୀତର କେତେ କଥା, କେତେ ଘଟଣା । ନଯ୍ମନା—ନଯ୍ମନାଙ୍କୁ ନେଇ ସେ ଦିନେ ଗଢ଼ିଥିଲା କଳ୍ପନାର ସୌଖୀନ ମିନାର—ସେ ଆଜି ଭାଙ୍ଗି ଯାଇଚ । ସମସ୍ତଙ୍କର ଦୁଇ କୂଳରେ ଜୀବନର ଲୁଚକାଳି, ମାନ ଅଭିମାନ, ଗେଲ, ପରିହାସ ସବୁ ହଜିଯାଇଚି । ଆଜି ନଯ୍ମନା ନଢ଼ଆର ସ୍ତ୍ରୀ । ମନ ଯେତେବେଳେ ଯା ଖୋଜେ ତା ମିଳେନା ।

ବାହାହେଇ ନଢ଼ଆ ସୁଖରେ ଦିନ କାଟୁଥିବ—ଆଉ ସେ ? ସେ ଏଇ ବିଦେଶରେ କନକ ପରି ସ୍ତ୍ରୀକୁ ଛାଡ଼ି ପଡ଼ି ରହିଚ । ଭାବି ଭାବି ଚଇତାର ମୁଣ୍ଡଟା ଗୋଳମାଳ ହୋଇଯାଏ । କେତେ ରାତି ପର୍ଯ୍ୟନ୍ତ ଚଇତା ଭାବେ ତାକୁ କିଛି ଜଣାଯାଏନା ।

ଶୀତ ଦିନ ରାତି । କୁହୁଡ଼ିଘେରା ଆକାଶରୁ ମଇଳା ଜହ୍ନଆଲୁଅ ଝରି ପଡ଼ୁଚ । ତାରା ଗୁଡ଼ା ଫୁଟି ଉଠିଚ ଅସୁମାରି । ଚଇତା ଭାବେ—ମୋରି ପରି ଯେତେ ବିରହୀ ସବୁ ଅଛନ୍ତି ତାଙ୍କର ବେଦନାର ଅଶ୍ରୁ ରୂପେ ଏଇ ତାରାଗୁଡ଼ା ଫୁଟି ଉଠିଛନ୍ତି—ସତେ ଯେପରି ବ୍ୟଥିତ ହୃଦୟର କରୁଣ ନିବେଦନ ନେଇ ।

ବସନ୍ତ ଆସିଲା ଲୁଖୁରା ଶୀତ ପଛେ ପଛେ । ଦକ୍ଷିଣା ପବନ ଥରି ଥରି ଆସି କାନ ପାଖରେ କହିଗଲା, ବଞ୍ଚିବାରେ ସୁଆଦ ଅଛି । ଜୀବନଟା ଖାଲି ଦୁଃଖ କଷ୍ଟର ଜୀବନ ନୁହେଁ—ଜୀବନରେ ସଉରଭ ବି ଅଛି । ଚଇତା ଭାବିଲା, ଇମିତି ଗୋଟିଏ ବସନ୍ତର କଥା । ତା ଜୀବନରେ ଇମିତି ଗୋଟି ଗୋଟି ହୋଇ ଦୋ'ଟି ବସନ୍ତ ବିତିଗଲାଣି—କିନ୍ତୁ ସେ ବସନ୍ତ ଥିଲା ସବୁଠୁ ଅଲଗା । କନକ ସାଥିରେ ତା'ର ବାହାଘର—ଇମିତି ଗୋଟିଏ ବସନ୍ତର ଶୁଭ ଲଗନରେ, ତା' ପରେ ଦିନଗୁଡ଼ା ଖାଲି ସପନ ପରି ମିଳାଇଗଲା ।

ଚଇତା ପଢ଼ିଲା ବାପା ଚିଠି ଲେଖିଛନ୍ତି—ଚଇତା ତୁ ସେ ଦିନୁ ଗଲୁଣି—ତୋତେ ନ ଦେଖି ମୋତେ ଅନ୍ଧପରି ଲାଗୁଚ । ତୁ ଶୀଘ୍ର ଛୁଟି ନେଇ ଗାଁକୁ ଆ । ବୋହୂଟା ଦେହ ବି ମଝିରେ ମଝିରେ ଭଲ ରହୁନାହିଁ । ତା ଆଗ ରୂପ ନାହିଁ ।

ଶୁଖି କଳାକାଠ ପଡ଼ିଗଲାଣି । କେତେ କାକୁତି ମିନତିରେ ଚଇତାର ମାସଟିଏ ଛୁଟି ମିଳିଲା । ଚଇତା ବାପା ପାଇଁ ଜାମା, ଲୁଗା ଆଉ ଖାଇବା ପାଇଁ କେତେ ଜାତିକା ଫଳ, ଆଉ କନକ ପାଇଁ ପ୍ରତି ମାସରେ ଅଳପ ଅଳପ କରି ସାଇତି ରଖିଥିବା ଟଙ୍କାରେ ଭରିଏ ଓଜନର ଗୋଟିଏ ସୁନାହାର କରି ନେଲା । ଆଉ ପିନ୍ଧିବା ପାଇଁ ଶାଢ଼ୀ, ଲଗେଇବା ପାଇଁ ବାସନା ତେଲ, ସ୍ନୋ, ସାବୁନ ଅଲତା କେତେ ଜିନିଷ କିଣି ଗଣ୍ଠିରେ ବାନ୍ଧିଲା । ଆସିଲାବେଳେ ପଦନ ସୂତାର ହସି ହସି କହିଲା ଚଇତା ମାଇପକୁ ପାଇ ଭୁଲି ଯିବୁନିଟରେ—ଚିଠି ଖଣ୍ଡେ ଦେବୁ । ଚଇତା ହସି ହସି ଉତ୍ତର ଦେଲା, ତୋର ପରି କଣ ହୋଇଛି ପଦନ ଭାଇ, ଶାରଆ ବୋଉକୁ ଦେଖି ସବୁ ଭୁଲିଯିବ ?

ବାଉରଥା ଆସି ଚଇତାକୁ ଗାଡ଼ି ଚଢ଼େଇ ଦେଇଗଲା । ଗାଡ଼ି ଛାଡ଼ିଲାବେଳେ ବାଉରଥା କହିଲା, ଚଇତା ଭୁଲିଯିବୁନି—ମୋ କଥା ପଦେ ଅଧେ କନକକୁ କହିବୁ । ଚଇତା ହସିଲା—ପରିତୃପ୍ତିର ହସ ।

ଗାଡ଼ି ଧୀରେ ଧୀରେ ଷ୍ଟେସନ ଛାଡ଼ିଲା ।

ଗାଁ ମୁଣ୍ଡ ସେଇ ଆମ୍ବତୋଟା ପାଖରେ ପହଞ୍ଚିଲାକ୍ଷଣି ଚଇତାର ହୃଦୟ ଅଜଣା ଆବେଗରେ ନାଚି ଉଠିଲା । ଏହି ଗଛଗୁଡ଼ାକ ତାର ଅନେକ ଦିନରୁ ପରିଚିତ । ଏହାର ଡାଳରେ ପିଲାବେଳେ କେତେ ସେ ଡାଳମାଙ୍କୁଡ଼ି ଖେଳିଚି, ଆଜି ତାର ଇୟତ୍ତା ନାହିଁ । ଗଛଗୁଡ଼ାକ ସେମିତି ଛୁଡ଼ା ହୋଇଚି—କେତେ ଗଛ ବୁଢ଼ା ହୋଇଗଲେଣି । ଚଇତା ଚିକିନିଖି ନିରେଖି ଆଗେଇ ଚାଲିଲା ଗାଁ ଭିତରକୁ ।

ଗାଁ ଦାଣ୍ଡ ସଜନାଗଛ ମୂଳରୁ ତାର ସେଇ ନୂଆଣିଆ ଘରଟି ଦିଶିଲା । ଚଇତା ହସି ହସି ଚଞ୍ଚଳ ଗତିରେ ଘର ପାଖରେ ଆସି ପହଞ୍ଚିଲାବେଳକୁ ବାପା ବସି ଘର ଦାଣ୍ଡରେ ବଉଳାକୁ ଆଉଁସି ଦେଉଛନ୍ତି ।

ଚଇତାକୁ ଦେଖି ବୁଧି ପଧାନ ଉଠି ଆସିଲା । ମୁହଁରେ ହସ—ଆଖିରେ ଆବେଗ । ଚଇତା ବାପାଙ୍କୁ ଦଣ୍ଡବତ ହେଲା । ତା ପରେ ଘର ଭିତରେ ଯାଇଁ ବସି ପଡ଼ିଲା । ବାପା ସାଙ୍ଗରେ ଘଡ଼ିଏ କାଳ କେତେ ସୁଖ ଦୁଃଖ ହେଲା । ଗାଁର କେତେ ଚିକିନିଖି ପିଲା ସବୁ ଆସି ରୁଣ୍ଡ ହେଇଗଲେ—ସତେ ଯେପରି ଅପୂର୍ବ ଦରବ ପାଇଲା ପରି । ଚଇତା ଗଣ୍ଠିଲି ଭିତରୁ ଖଜୁରି କୋଳି ବାହାର କରି ସମସ୍ତଙ୍କୁ ଖାଇବାକୁ ଦେଲା । ପିଲାମାନେ ବଦାସ୍ତ ନେଲେ ।

ଆର ଘରେ କନକ ଥାଏ । ଲାଜ ଲାଜ ହେଉଥାଏ ଚଇତା ଆଗକୁ ଆସିବାକୁ । ମନ ତାର ଆନନ୍ଦରେ ପୂରି ଉଠିଥାଏ—ଆଷାଢ଼ର ଭରା ନଈ ପରି । ଏତେଦିନ

ପରେ ଦେବତା ତାର ଡାକ ଶୁଣିଚନ୍ତି । ସପନ କଥା ସତ ହେଇଚ । ସ୍ୱାମୀ ତାର ଫେର ଆସିଚନ୍ତି ।

ଟିକଏ ପରେ ଚଇତା ଘର ଭିତରକୁ ପଶି ଆସିଲା । କନକ ମୁଣ୍ଡ ଲଗାଇଲା ଚଇତା ଗୋଡ଼ ତଳେ । ଓଠରେ ଥର ଉଠୁଚ ସଞ୍ଚିତ ବ୍ୟଥା—ଆଖିରେ ଜକ୍ ଜକ୍ କରୁଚ ଲୁହ । ଚଇତା କନକକୁ କୋଲକୁ ଟାଣିନେଲା । ଆଖିରୁ ଲୁହ ପୋଚ୍ଛିଦେଲା । କନକ ଆଡ଼ ଆଡ଼ ହେଲା । କନ୍ତୁ ଚଇତାର ସ୍ନେହ ବନ୍ଧନ ସେ କାଟି ପାରଲା ନାହିଁ । ତା କୋଲରେ କି ଆବେଗ ଥିଲା କେଜାଣି ନିଜକୁ ସେ ଭୁଲିଗଲା । ତା ପରେ ଚଇତାର ଟାଣୁଆ ହାତର ତାଧଲ ପରଶ କନକର ଗ୍ରୀବାରେ ବାଜିଲା— ମୁହଁଟା ନଇଁ ପଡ଼ିଲା କନକର ମୁହଁକୁ ଲଗି । ଦୁଇଟି ପିପାସିତ ପ୍ରାଣ ଏକ ହୋଇଗଲା ।

ତା ପରେ କନକର ଅଶ୍ରୁମଉଳା ମୁହଁରେ ବ୍ୟଥାର ମେଘ କାଟି ହସର ଆଲୁଅ ଲହଡ଼ି ଖେଳିଲା । ଓଠରେ ଦୀପ୍ତି—ହୃଦୟରେ ସ୍ପନ୍ଦନ । କନକ ଭାବିଲା, ଜୀବନ-ଫୁଲକୁ ତାର ଶତ ସଉରଭ ଫେର ଆସିଚ ।

ତା ଆରଦିନ ବାଟମଝିରେ ନନ୍ଦିଆ ସାଙ୍ଗରେ ଚଇତାର ଦେଖା ହେଲା । ନନ୍ଦିଆ ପଚାରିଲା, ଆରେ ଚଇତା ଭାଇ, କେବେ ଆସିଲ ମ ? ଆଉ ସବୁ କଲିକତା ଖବର କଣ । ଆମ ଗାଁ ସପନ ସାହୁ ପୁଅ ରଘବାଟା କଲିକତା ଯାଇଚ—ଦେଖା ହେଇଥିଲା କି ? ଚଇତା ଏତେଗୁଡ଼ା ପ୍ରଶ୍ନର ଉତ୍ତର ଦେଇ କହିଲା, ସବୁ ଭଲ ନନ୍ଦିଆ—ରଘବା ସାଙ୍ଗରେ ମୋର ଦେଖା ହୋଇନାହିଁ···ଆଉ କେବେ କଲିକତା ଯିବୁରେ ? ମାସକୁ ପର୍ବ ଛୁଟି ଆଣିଥିଲୁ···ମାସେ କଣ ପୂରିନାହିଁ ? ନନ୍ଦିଆ ହସିଲା । କହିଲା, ଯିବ ବୋଲି ବସିଥିଲି ଯେ ନସ୍ତୁମୀ କାନ୍ଦିଲା । ସତେ ଚଇତା ଭାଇ, ତାକୁ ଛାଡ଼ି କାହିଁକି ବିଦେଶ ଯିବାକୁ ମୋର ଟିକେ ପାଦ ଚଳିଲା ନାହିଁ । ଆଉ ଯୋଉ ଭୂକଣ୍ଡ ତ, ଦିନଯାକ ଖଟିବା ଖାଲି ସାର···ଟିକଏ ଆରାମ ନେଲେ ସାହେବର ଯୋଉ ନାଲିଆଖି—କେତେ କୁତ୍ସିତ ବଙ୍କା ବଙ୍କା ଗାଳି । ଆଉ ଭଲ ଲଗିଲା ନାହିଁ । ଭାବିଲି ଏଇ ଗାଁ ମାଟି ମୋର ବଡ଼ । ଏଇଠ ପଡ଼ି ଯେତେ ଖଟିବି ସେଇଥିରେ ମୋର ଶାନ୍ତି । କେହି ପଦେ କହିବାକୁ ନାହିଁ । ଖୁସି ହେଲା ଖଟିଲି—ନ ହେଲା ନାହିଁ ।

ଚଇତା କହିଲା, ସତରେ ନନ୍ଦିଆ ତୁ ଠିକ୍ କରିଚୁ । ମୁଁ କନ୍ତୁ କଲିକତା ଛାଡ଼ି ପାରିଲି ନାହିଁ । ମହାଜନର ଦେଣା—ଘର ଖଣ୍ଡିକ ଭାଙ୍ଗି ରୁଜି ଗଲାଣି । ଏଇ ସବୁକୁ ଅନାଇଲେ ସେହି କୁଲିବସ୍ତିର ମଶା ଜଙ୍ଗଲ ଭିତରେ ପଡ଼ି ରହିବାକୁ ଇଚ୍ଛା

ହୁଏ । ଇମିତି କେତେ କଥା ବାବୁଙ୍କର ପଡ଼ିଲା । କଥା ଶେଷରେ ଚଇତା ପଚାରିଲା—ନାଥଆ, ନସ୍ମ୍ମା କେମିତି ଅଛିରେ ? ମୋ କଥା ପଦେ ଅଧେ ପଚାରେ ତ ? ନାଥଆ ହସି ହସି କହିଲା, ନସ୍ମ୍ମା ପରା ଭୁଲିଯିବ ଚଇତା ଭାଇର ଭାଇ ପାଷାଣ ହୃଦୟ—ସେ ବାବୁ ଗଲେଣି—ଗାଁକୁ ଆସୁ ନାହାନ୍ତି । ନୂଆବୋଉ ବିଚରା ଝୁରି ଝୁରି କଣ୍ଠା ହେଇଗଲାଣି । ସବୁଦିନେ ପଚାରେ, ଚଇତା ଭାଇ କେବେ ଆସିବେ ? ଏତିକି କହି ନାଥଆ କହିଲା, ଯାଉଚି ଭାଇ ଟିକେ ବଲଆଡ଼େ । ନାଥଆ ଚାଲିଗଲା । ଚଇତା ଫେରି ଆସିଲା ଘରକୁ ।

ଗାଁରେ ଚଇତାର ଦିନଗୁଡ଼ା ସ୍ୱପ୍ନ ପରି କଟିବାକୁ ଲାଗିଲା । କିନ୍ତୁ ବେଳେ ବେଳେ ତାର ବୋଉ କଥା ମନେ ପଡ଼ିଲେ ସେ କାନ୍ଦଉଠେ ପିଲାଙ୍କ ପରି ।

କନକ ସ୍ୱାମୀଙ୍କୁ ପାଇଲା ଦିନୁ ନିଜକୁ ତାଙ୍କର ସେବାରେ ଉତ୍ସର୍ଗ କରି ଦେଇଚି । ତାର ରାତି ନାହିଁ—ଦିନ ନାହିଁ । ସବୁବେଳେ ସ୍ୱାମୀ କିପରି ଭଲ ଖାଇବେ, ପିଇବେ ଏଇ ଚିନ୍ତା । ଏଣିକି କନକ ଭଲ ଲୁଗା ଖଣ୍ଡେ ପିନ୍ଧେ । ଭଲ କରି ମୁଣ୍ଡ କୁଣ୍ଡାଏ । ଚଇତା ମୁହଁକୁ ଚାହିଁଲେ ଆଡ଼ ଆଡ଼ ହେଇ କନକ ହସେ—ଚଇତା ବି ନ ହସି ରହି ପାରେନା । ହସର ଢେଉ ତଳେ ତଳେ ଉଙ୍କି ମାରେ ଜୀବନର ଭଲ ପାଇବାର କେତେ କଥା—କେତେ ବାସନା ।

ଚଇତା ଆସିଲା ପରେ ନିଧି ପଧାନ ସେଇ ପୁରୁଣା ଘରଟା ଭାଙ୍ଗି ଦେଇଚି । କାଠ ବାଉଁଶ ଆଣି ଜମା କଲାଣି ନୂଆ ଘର କରିବ । ତା' ଜୀବନର ଶେଷ ପହରରେ ସେ ଟିକେ ସୁଖର ସ୍ୱପ୍ନ ଦେଖି ମରିବ । ସେ ଘର କରିଚି—ପିଲାକବିଲାଙ୍କୁ ମଣିଷ କରିଚି । ଧାନ ଯା ଅମଳ ହେଇଚି ବରଷକ ଖୋରାକ ଯାଇ ଆହୁରି ବଳିବ । ଧାନତକ ବିକି, ସେଇ ଟଙ୍କାରେ ସେ ଆଉ ଏ ବରଷ ମହାଜନ ଦେଣା ଦେବ ନାହିଁ । ଆଗେ ଘର କରିବ—ତା'ପରେ ମହାଜନ କଥା । ଚଇତା ବି ମାସକୁ ମାସ ଟଙ୍କା ପଠାଇବ । ନିଧି ପଧାନ ଭାବେ ଆଉ ତାର ଅସୁବିଧା କିଛି ହେବ ନାହିଁ ।

ଦିନଗୁଡ଼ା ଗଡ଼ି ଚାଲେ । ଚଇତାର ଛୁଟି ପୂରିଆସେ—କନକର ଆଖିରେ ଲୁହ । ସତେ ତମେ ପୁଣି କେବେ ଆସିବ ? ପ୍ରଶ୍ନବାଚକ ହଜିଯାଏ କାହିଁ କେତେ ଦୂରରେ । ଚଇତା କିଛି ଉତ୍ତର ଦେଇ ପାରେନା । ସେ ଆଗେଇ ଚାଲେ ।

ଦୂର ଦିଗ୍‌ବଳୟଆଡ଼କୁ ଚାହିଁ ଚାହିଁ କନକ ଭାବେ, ସେ ଆସିବେ—ପୁଣି ଆସିବେ । ଇମିତି ଆଖିରୁ ଗଡ଼ି ଆସୁଥିବା ଲୁହର ସ୍ରୋତକୁ ସେ ଅଟକାଇ ପାରେନା—ଖାଲି କାନ୍ଦେ । ପୁଣି କେବେ ସେ ଆସିବେ ? ଆଖି ଆଗରେ ବିରାଟ ପ୍ରଶ୍ନବାଚକ ।



ଚଇତା ପୁଣି ତାର ସେଇ ସୂତାକଳ କୁଳିବସ୍ତିକୁ ଫେରି ଆସିଲା । ବସାରେ ପଦନ ସୂତାର ନାହିଁ—ଯାଇଚି ଘରକୁ । କାଉରିଆ ଭାଇ ଦେହଟା ଖରାପ—ମଝିରେ ମଝିରେ ଜର ହେଉଚି ।

ଚଇତା ଆସିବା ଖବର ଶୁଣି ଗାଁ ପାଖ ଯୋଗୀ ବିଶ୍ୱାଳ ଆସି ଦିନେ ସଞ୍ଜବେଳେ ପହଞ୍ଚିଲେ—ଚଇତା ବସାରେ । ଚଇତା ବସିବାକୁ ସପଟା ପାରିଦେଲା । ଯୋଗୀ ବିଶ୍ୱାଳେ ବସିପଡ଼ି ବଟୁଆଟା ବାହାର କରି ପାନ ଖଣ୍ଡେ ଭାଙ୍ଗୁ ଭାଙ୍ଗୁ ପଚାରିଲେ—ଚଇତା ଗାଁ ଖବର ସବୁ ଭଲତ ? ଧାନ ବାଡ଼ାବାଡ଼ି ହେଲାଣି ? ଆମର ସେ କାଳିଗାଈଟା ଦୁଧ ଦଉଚି ନା ଆଜିଯାଏ ? ଆମ କୋଠିଆ ଭଗିଆର ଦିହଟା ଭଲ ନ ଥିଲା, କମିତି ଅଛିରେ ? ଚଇତା ଠିକେ ଠିକେ ସବୁ ଉତ୍ତର ଦେଲା ।

ଗାଁଠୁ ଚାରି ମାଇଲ ଛଡ଼ା ସାଧୁ ବେହେରାର ଘର । ସେ ବି ଆସି ପହଞ୍ଚିଲା । ପଚାରିଲା—ବାପା, ମୋ ପିଲାପିଲି ଦିହପା ଖବର କଣ କହିଲୁ । ଝିଅର ପୁନେଇ ଭାର ପଠେଇଚନ୍ତି ନା ? କାଇପଡ଼ା ରଘୁ ସାହୁ ହାତରେ ଚିଠି ଆଉ ଦଶଟା ଟଙ୍କା ଦେଇଥିଲି—ଝିଅବୋଉ ପାଇଚନ୍ତି ? ଚଇତା କହିଲା, ନାଁ ମଉସା, ତମ ଗାଁଆଡ଼େ ଯାଇ ନାହିଁ । ସାଧୁ ବେହେରା ମୁହଁଟା ପିତା ପିତା କରି ଚାଲିଗଲା ।

ସାଧୁ ବେହେରା ମାଲୀ କାମ କରେ—ଫୁଲ ମୁଣ୍ଡେଇ କଲିକତା ରାସ୍ତା କନ୍ଧ-ବକନ୍ଧରେ ଫେରି କରେ । ଦି'ପଇସା ବେଶ୍ ରୋଜଗାର କରେ । ସାଧୁ ବେହେରା ନିଜ ଜାତିର ଭାର ଟାଣ ଦେଖାଏ । ଗାଁରେ କେତେ ଫୁଟାଣି କହେ । ଚଇତା ସବୁ ଜାଣେ । ଇମିତି କେତେ ଲୋକ ଗାଁକୁ ଗଲେ କେତେ ବଡ଼ଲୋକର

ଷ୍ଟଲ ଦେଖାନ୍ତି । କିନ୍ତୁ ବିଦେଶରେ କୋଉଠି କାର ଝୁଡ଼ି ମୁଣ୍ଡାନ୍ତି—କାର ଅଇଁଠା ବାସନ ମାଜନ୍ତି । ଗାଁକୁ ଗଲେ ଏଇ ବାବୁମାନଙ୍କର ରୂପ ବଦଳିଯାଏ । ପରିଧାନ ବାସୀକରା ଧୋବ ଧୋତି—ଗୋଡ଼ରେ ଯୋତା, ଦେହରେ କୁରୁତା । କଥା କଥାରେ ମୁହଁରୁ ଖଣ୍ଡି ଖଣ୍ଡିଆ ବଙ୍ଗଳା କଥା । ଏଇମାନଙ୍କୁ ଦେଖିଲେ ଚଇତା ଭାରି ବିଗିଡ଼େ । ଭାବେ ଏଇମାନେ ଜାତିର ଗଳଗ୍ରହ । ନିଜ ଦେଶରେ ଅଇଁଠା ପତର ନ ଚାଟି ପରଦେଶର ଅଇଁଠା ଚାଟି ଜାତିର ସମ୍ମାନରେ ଆଘାତ ଆଣନ୍ତି ।

ପୁଣି ଚଇତାର ଧରାବନ୍ଧା ଜୀବନ ଗଡ଼ି ଚାଲିଲା । କାମ କରୁ କରୁ ବେଳେବେଳେ ମନ ଗଗନରେ ତାର ଭାବନା ବାଦଲ ଛୁଟି ଚାଲେ । ଝିପିରି ଝିପିରି ବେଦନାର ମେଘ ଝରେ । ଚଇତାର ସାରା ଶରୀର ଭିଜିଯାଏ କରୁଣତାରେ । ପୁଣି ପରକ୍ଷଣରେ ଭାବନାର ମେଘକାଟି ଆଶା ଉଚ୍ଛ୍ୱାସର ଆଲୁଅ ଆସେ । ଚଇତା ଭାବେ—ଅଳୀକ ଏ ଭାବନା, ଅସାର ।

ବାଉରିଆ ଭାଇର ଦେହ ଦିନକୁ ଦିନ ଖରାପ ହେଲା । ଚଇତା ତାର କେତେ ସେବା କରେ । ଭାବେ, ବାଉରିଆ ଭାଇ ତାର କେତେ ଉପକାର କରିଚି । ସେ ପର ନୁହେଁ—ଆପଣାର । ବିପଦବେଳେ ଆଜି ସେ ଯଦି ତାର ଉପକାର ନ କରେ—ତେବେ ବାଉରିଆ ଭାଇ ହୁଏତ ଭାବିବ—ଏଡ଼େ କୃତଘ୍ନ ଏ ଚଇତା । ଏଇଆ ଭାବି ଚଇତା କାମରୁ ଫେରି ସବୁବେଳେ ବାଉରିଆ ଭାଇର ସେବା କରେ । ଡାକ୍ତର କଢକ ଦଉଡ଼ିଯାଏ । ଔଷଧ ଆଣି ଜଗି ରହି ବାଉରିଆକୁ ଖୁଆଏ ।

କିନ୍ତୁ ଯେତେ ଚେଷ୍ଟା ସତ୍ତ୍ୱେ ବାଉରିଆର ଦେହ ଭଲ ହେଲା ନାହିଁ । କ୍ରମାଗତ ଜରରେ ସେ ଭାଙ୍ଗି ପଡ଼ିଲା । ବାଉରିଆ ଖାଲି କାନ୍ଦେ । ଆଉ ପାଗଳ ପରି ଚଇତା ଆଗରେ ବକେ—ଚଇତା ଆଉ ବଞ୍ଚିବି ନାହିଁ । ଘରେ ପିଲାପିଲି କିମିତି ଚଳିବେ । ଜମି ବୋଲି କିଛିତ ନାହିଁ । ମୁଁ ମଲେ ସେ ଅନାଥ ହେବେରେ ଚଇତା, ଭିକ ମାଗି ଖାଇବେ । ବାଉରିଆ କଥା ଶୁଣି ଚଇତା ଆଖିରେ ଲୁହ ଆସେ । ପ୍ରବୋଧ ଦେଇ କହେ—ଛି ଭାଇ ଇମିତିକା ଅମଙ୍ଗଳ କଥା କହନ୍ତି । କଣ ହୋଇଚକି ତୋର—ଇମିତି ହେଉଚୁ । ତୁ ନିଶ୍ଚୟ ଭଲ ହୋଇଯିବୁ । ବାଉରିଆ ହସେ—ସେ ହସରେ ତାର ବେଦନର ମ୍ଳାନ ଛାଇ । ଚଇତା ଦେଖେ, ଯେପରି ବାଉରିଆ ଭାଇର ଏ ହସଟା ସବୁଦିନିଆ ହସ ପରି ନୁହେଁ—ମଣିଷ ନିରାଶାରେ ଯେମିତି ଶେଷ ହସ ହସେ—ସେହିପରି ଏ ହସଟା ।

ବାଉରିଆର ବେଦନାମଳିନ ମୁହଁଟାକୁ ଚାହିଁ ଚଇତା ସେଦିନ ରାତରେ ଚମକି ଉଠିଲା । ସତେ କି ବିକୃତ ମୁହଁଟାଏ ! ବାଉରିଆ ଖିନ ଖିନ ହୋଇ କହିଲା—ଚଇତା

ଭାଇ, ଆଉ ପିଲାପିଲାଙ୍କ ଟିକେ ଦେଖି ପାରିବ ନାହିଁ ? ମଲାବେଳେ ତାଙ୍କ ମୁହଁ ଚାହିଁ ମରିଥିଲେ, ହୁଏତ ଟିକେ ଶାନ୍ତିରେ ମରିଥାନ୍ତି—କିନ୍ତୁ ଏ ମୋ ଭାଗ୍ୟରେ ନାହିଁ । ଆଖିରୁ ତାର ଧାର ଧାର ହୋଇ ଲୁହ ଗଡ଼ି ପଡ଼ିଲା । ଚଇତା, କେଳୁ ମାହାନ୍ତି କେତେ ବୁଝାଇଲେ, ବାଉରିଆ କିଛିହେଲେ ବୁଝିଲା ନାହିଁ । ଖାଲି କାନ୍ଦିଲା—ଆଉ କହିଲା, ମୋ ପିଲାପିଲି କିମିତି ଚଳିବେ ? ହଠାତ୍ ରାତି ଦଶଟା ବେଳକୁ ବାଉରିଆ ଅଚେତ ହୋଇପଡ଼ିଲା । ପାଟି ବନ୍ଦ ହୋଇଗଲା । ଚଇତା ଦଉଡ଼ିଲା ଡାକ୍ତର କତିକି । ଡାକ୍ତର ଆସି ଦେଖିଲାବେଳକୁ ବାଉରିଆ ଚାଲିଯାଇଛି ସେ ପୁରକୁ । ଚଇତା କାନ୍ଦିଲା । କେଳୁ ମାହାନ୍ତି କାନ୍ଦିଲା । କୁଲିବସ୍ତିରୁ ଲୋକ ସବୁ ଆସି ଜମା ହୋଇଗଲେ ।

ସକାଳର କଅଁଳ ଆଲୁଅ ଧରିତ୍ରୀକୁ ଛୁଇଁବା ଆଗରୁ ବାଉରିଆର ମଡ଼ା ଦେହଟାକୁ ଚଇତା, କେଳୁ ମାହାନ୍ତି ଓ ବସ୍ତିରୁ ଆଉ ଦୁ'ଜଣ ମାଟିଆବୁରୁଜର ସେଇ ମଶାଣିରେ ଜାଳି ପାଉଁଶ କରିଦେଲେ । ଆଉ ସେ ଦିନ ଡାକରେ ଚିଠି ଦେଲେ ତା ବାପା କତିକି—ବାଉରିଆ ଗଲା ରାତିରେ ମରି ଯାଇଛି ।

ବାଉରିଆ ମଲାଦିନରୁ ଚଇତା ବସାକୁ ଆସିଲେ ମାଡ଼ି ମାଡ଼ି ପଡ଼େ । ତାକୁ କିଛି ଭଲ ଲାଗେ ନା । ଖାଲି ଭାବେ, ଆହା ବିଚରା ଗାଁରେ ଭଲା ମରିଥାନ୍ତା ! ଏଠି କିଏ ତାର ଭଲକରି ଯତ୍ନ ନେଇଛି । ଇମିତି ଅକାଳରେ ଜୀବନଟା ତାର ନଷ୍ଟ ହୋଇଗଲା ସିନା ! ବାପା, ଭାଇ ସ୍ତ୍ରୀ ତାର ଏ ଖବର ପାଇ କଣ ନ ହେଉଥିବେ ଗରିବ ବିଚରା—କିମିତି ଚଳିବେ ? ଚଇତା ଭାବୁ ଭାବୁ କାନ୍ଦ ପକାଏ ।

ବେଳେବେଳେ ଭାବେ ପରବାସୀ ଜୀବନଟା କଣ ଏଇଆ ଇମିତି ବିଦେଶରେ ତ କେତେ ପରବାସୀ ମରି ଯାଉଥିବେ—ଆଉ କିଏ କୋଉ ମଶାଣିରେ ପୋଡ଼ି ପାଉଁଶ ହୋଇ ଯାଉଥିବ । ଶେଷ ଜୀବନରେ ଆପଣାର ସ୍ତ୍ରୀ ପିଲାଙ୍କୁ ଟିକେ ଦେଖି ପାରୁ ନ ଥିବ । କାହିଁ କେତେ ଦୂରରେ ଗ୍ରେଟିଆ ମଫସଲରେ ଯେତେବେଳେ ଯାଇ ଖବର ପହଞ୍ଚୁଥିବ ସେ ମରିଯାଇଛି—ଆହା, ସେତେବେଳେ ତାର ସ୍ତ୍ରୀ, ପିଲାପିଲି ବାପ, ମା ବନ୍ଧୁବାନ୍ଧବ କଣ ନ ହେଉଥିବେ ! ଚଇତା ଭାବୁ ଭାବୁ ବେଦନାରେ ମନଟା ତାର ଭାରି ହୋଇଉଠେ । ବାଉରିଆ ମଲା ଦିନୁ ଚଇତା ବସାକୁ ଆସିଲେ କି କୁଆଡ଼କୁ ବୁଲି ଗଲେ ଭଲ ଲାଗେନା । ସବୁବେଳେ ସେ ଯେପରି କାହାର ଅଭାବ ଅନୁଭବ କରେ । କେଳୁ ମାହାନ୍ତି ଚଇତାର ଶୁଖିଲା ମୁହଁ ଦେଖିଲେ ଭାରି ଚିଡ଼େ । କୁହେ, କରେ ଚଇତା ସେ ମଲା ଗଲା । କୋଉଁ ଆପଣାର ହୋଇଛି, ତା ପାଇଁ ତୋର ପୁଣି ଏତେ ଭାବନା—ଏତେ ଦୁଃଖ ? ଚଇତା କିଛି ଉତ୍ତର ଦିଏ ନା ।

ସୁଖ ଦୁଃଖର ଧକ୍କା ଖାଇ ଦିନ ଗଡ଼ି ଚାଲେ ।



ଏବେ ସଞ୍ଜ ହୋଇଗଲାଣି । ରାସ୍ତାରେ କାଁ ଭାଁ ବିଜୁଳିବତୀ ଜଳି ଉଠିଲାଣି । ବସ୍ତି ଭିତର ରାନ୍ଧଣା ଘରୁ ଧୂଆଁ ସବୁ ଉଠୁଚି ଆକାଶକୁ । ମାଟିଆ ବୁରୁଜର ରାସ୍ତାରେ ସ୍ଥାନେ ସ୍ଥାନେ ଲୋକ ଗହଳି ଲାଗିଥାଏ । ବସ୍‌ଗୁଡ଼ା ହର୍ଣ୍ଣ ଦେଇ ସେପଟରୁ ଆସୁଥାଏ—ଏ ପଟରୁ ଯାଉଥାଏ । ଆକାଶରେ ଜହ୍ନ ହସୁଥାଏ । ତାରାଗୁଡ଼ା ସରଗ ରାଇଜଯାକ ବିଛୁଡ଼ି ହୋଇ ପଡ଼ିଥାନ୍ତି ।

ଚଇତା ବସାରେ ବସି କଣ ଗୋଟାଏ ଗପ ବହି ପଢ଼ୁଚି । କେଳୁ ମାହାନ୍ତି କୁଆଡ଼େ ଥିଲା ଆସି ପହଞ୍ଚିଲା । କହିଲା—ଚଇତା, ଚାଲ ଟିକେ ବଜାରଆଡ଼େ ବୁଲି ଆସିବା । ଚଇତାକୁ ବି ସଞ୍ଜବେଳଟାରେ ବସାରେ ଭଲ ଲାଗୁ ନ ଥିଲା—ସେ ଉଠିଲା । ଦୁହେଁ ବଜାରଆଡ଼େ ବୁଲି ବାହାରିଲେ ।

ସେତେବେଳକୁ ରାସ୍ତାକଡ଼ ଦୋକାନରେ ଭିଡ଼ ଜମି ଆସିଲାଣି । ମାଂସ ଦୋକାନରେ ଗରାଖ ଗହଳି—ଅତ୍ୟଧିକ ଭିଡ଼ । କେଳୁ ମାହାନ୍ତି ଚାଲିଥାଏ ଆଗରେ—ଚଇତା ପଛେ ପଛେ । ବଜାର ଅତିକ୍ରମ କରି କେଳୁ ମାହାନ୍ତି ଗୋଟାଏ ସ୍ଳେଟ ଗଳି ଭିତରେ ପଶିଲା । ଚଇତା ପଚାରିଲା, କୁଆଡ଼େ ଯିବ କେଳୁଭାଇ ? କେଳୁ ମାହାନ୍ତି କହିଲା, ଆଜି ଗୋଟାଏ ନୂଆଜାଗାକୁ ତୋତେ ନେଇଯିବି ଚଇତା, ଦେଖିବୁ ସେ ଜାଗା ତୋତେ ଭଲ ଲାଗୁଚି କି ନାହିଁ । କେଳୁ ମାହାନ୍ତିର କଥା ଶୁଣି ଚଇତା ଆଶ୍ଚର୍ଯ୍ୟ ହେଲା । ଭାବିଲା କୁଆଡ଼େ ସେ ଯାଉଚି ?

ସେହି ଗଳିରେ ଅଧ ମାଇଲ୍ ବାଟ ଆସିବା ପରେ କେଳୁ ମାହାନ୍ତି ଗୋଟାଏ ଏକ-ତାଲା ପୁରୁଣା କୋଠା ଭିତରକୁ ପଶିଲା । ଚଇତା ତା ପଛେ ପଛେ ସେ ଘରକୁ

ଗଲା । କେଲୁ ମାହାନ୍ତଙ୍କୁ ଦେଖିଲାକ୍ଷଣି ସେ ଘରୁ ଗୋଟିଏ ସୁନ୍ଦରୀ ଯୁବତୀ ବାହାରି ଆସିଲା । ହସି ହସି କହିଲା, କୁଆଡ଼େ ଥିଲ ଏତେ ଦିନଯାକେ—ଆସୁ ନଥିଲ । କେଲୁ ମାହାନ୍ତ ହସି ହସି କହିଲା, ଦେହ ଭଲ ନ ଥିଲା—ଆସିପାରି ନାହିଁ । ଆଜି ଗୋଟାଏ ନୂଆ ସାଙ୍ଗକୁ ନେଇ ଆସିଛି । ଯୁବତୀଟି ଚଇତା ଆଡ଼େ ମୁଗ୍ଧ ଦୃଷ୍ଟିରେ ଅନାଇଲା । ଚଇତା ଅନ୍ୟ ଆଡ଼କୁ ଚାହିଁବା ମାତ୍ରେ ଯୁବତୀଟି ମୁରୁକି ହସା ହସି ତା ଆଡ଼େ ମୁହଁ ବୁଲାଇ କହିଲା, ଘର ଭିତରକୁ ଚାଲନ୍ତୁ । କେଲୁ ମାହାନ୍ତ, ଚଇତା ଦୁହେଁ ଘର ଭିତରେ ପଡ଼ିଥିବା ଖଟ ଉପରେ ଯାଇ ବସିଲେ । ଚଇତା ଆଶ୍ଚର୍ଯ୍ୟ ହୋଇ ପଚାରିଲା, ଏ କିଏ କେଲୁ ଭାଇ ?

ବଳେ ବୁଝିବୁ ଯେ ।

ଚଇତା ତା କଥାର ଅର୍ଥ କିଛି ବୁଝିପାରିଲା ନାହିଁ । ଖାଲି ବଲବଲ କରି ଚାହିଁଲା । ଯୁବତୀଟି ହସି ହସି ଥାଳିରେ ପାନ ନେଇ ଆସିଲା । କେଲୁ ମାହାନ୍ତ ମୁରୁକିହସା ଦେଇ କହିଲା, ଅନେକ ଦିନ ପରେ ମାଧବୀ ଆଜି ତମ ହାତର ପାନ ଖଣ୍ଡେ ପାଉଛି । ମାଧବୀ କହିଲା, ମୋର ସୌଭାଗ୍ୟ । ମୁହଁରେ ତାର ହସ ଝଟକିଲା ।

ମାଧବୀ ଅନୁରୋଧ କଲା ଚଇତାକୁ ପାନ ଖାଇବାକୁ । ଚଇତା ପାନ ଖାଏନା— କିନ୍ତୁ ଆଜି ସେ ମାଧବୀର ଅନୁରୋଧ ଭାଙ୍ଗିପାରିଲା ନାହିଁ । ତାର ଆଡ଼କୁ ଅନେଇଲା ବେଳକୁ ଛପି ଛପି ହସିଲା ମନ ଭିତରର ପରଦା ଅନ୍ତରାଳରେ କନକର ହସ ହସ ମୁହଁ । ମାଧବୀ ଦେଖିବାକୁ ସୁନ୍ଦରୀ—ରୂପବତୀ । ଫୁଲଟି ପରି ଅବିକଳ ତଳ ତଳ । ମନରେ ତାର ଅଜଣା ବାସନା ଚେଇଁ ଉଠିଲା ।

କେଲୁ ମାହାନ୍ତ ଉଠିପଡ଼ି କହିଲା, ଚଇତା ତୁ ଏଇଠି ବସିଥା—ମୁଁ ଆସୁଛି । ଏତକି କହି କେଲୁ ମାହାନ୍ତ ମାଧବୀକି ନେଇ ଅନ୍ୟ ଘର ଆଡ଼େ ଚାଲିଗଲା । ଚଇତା ସେଇଠି ବସି ବସି ତାଙ୍କର ଗନ୍ତବ୍ୟପଥକୁ ଚାହିଁ ରହିଲା । ମନରେ ତାର ଏଣୁ ତେଣୁ ଭାବନା । ହୃଦୟରେ ସନ୍ଦେହ···ଏ ପୁଣି କିଏ ? କେଲୁ ଭାଇ ସହିତ ମାଧବୀର ସମ୍ପର୍କ କଣ ? ଅନେକ ଲୋକଙ୍କଠାରୁ ଶୁଣିଛି କେଲୁ ଭାଇ ବଙ୍ଗାଳୁଣୀ ବେଶ୍ୟା ଘରକୁ ଯାଏ, ତେବେ ମାଧବୀ କଣ ସେଇ ? ନାଁ ନାଁ ମାଧବୀ ବେଶ୍ୟା ନୁହେଁ— ବେଶ୍ୟା କଣ ଏଡ଼େ ସୁନ୍ଦର !

ଅଧଘଣ୍ଟା ପରେ ମାଧବୀ ହସି ହସି ଚଇତା କତିକି ଏକେଲା ଫେରି ଆସିଲା । କତିରେ ବସିପଡ଼ି ଚଇତାକୁ କହିଲା, ତମ ପରି ସୁନ୍ଦର ଲୋକ ମୁଁ କମ୍ ଦେଖିଛି ।

ଚଇତା ମୁରୁକି ହସିଲା—କିଛି କହିବାକୁ ତାର ସାହସ ହେଲା ନାହିଁ……ନିଜକୁ ସଙ୍କୁଚିତ କରି ନେଲା ଲାଜରେ । ମାଧବୀ କହିଲା—ଏଠି ଭୟ କରିବାର କିଛି ନାହିଁ । ଏତେ ଭାବୁଚ କଣ ? କେଳୁ ଭାଇ ତମର ଚାଲିଗଲେଣି । ଏତିକି କହି ମାଧବୀ ଚଇତା କୋଳ ଉପରକୁ ଆଉଜି ପଡ଼ିଲା । ମାଧବୀର ସୁନ୍ଦର ତନୁ-ଲତାର ସ୍ନିଗ୍ଧ ପରଶରେ ଚଇତାର ସାରା ଶରୀର ଜଳି ଉଠିଲା ଏକ ଅପୂର୍ବ ମାଦକତାରେ । ଚଇତା ନିଜର ବ୍ୟକ୍ତିତ୍ୱକୁ ଭୁଲିଗଲା । ସେ ମାଧବୀକୁ ନିଜ କୋଳକୁ ଟାଣି ଆଣି ବାହୁ ବନ୍ଧନରେ ଭିଡ଼ି ଧରି ବାରମ୍ବାର ଚୁମ୍ବନ କରିବାକୁ ଲାଗିଲା । ସେତିକିରେ ମାଧବୀ ସନ୍ତୁଷ୍ଟ ହେଲା ନାହିଁ । ଚଇତାକୁ ଆହୁରି ନିକଟକୁ ଟାଣିନେଲା । ଚଇତାର ପାଗଳମନ ବାଟକୁ ଫେରି ବି ଫେରିଲା ନାହିଁ…ଦଉଡ଼ିଲା ମରୀଚିକା ପଛେ ପଛେ । ଦୁହେଁ ଦୁହିଁଙ୍କୁ ଆହୁରି ନିବିଡ଼ କରି ପାଇବାକୁ ବ୍ୟାକୁଳ ହୋଇ ଉଠିଲେ । ଚଇତା ମାଧବୀକି କୋଳରେ ଧରି ତାର ଅଳସ କେଶବାସ ସଜାଡ଼ି ସଜାଡ଼ି କହିଲା, ମାଧବୀ, ତମେ କେଡ଼େ ସୁନ୍ଦର  ମାଧବୀ ମୃଦୁ ମୃଦୁ ହସିଲା ।

ଚଇତା ଦେଖିଲା କାନ୍ଥ ଘଣ୍ଟାରେ ଦଶଟା ବାଜିବାକୁ ପାଞ୍ଚମିନିଟ ବାକି ଅଛି । ଧଡ଼ପଡ଼ ହୋଇ ଉଠିପଡ଼ିଲା । କହିଲା, ମାଧବୀ ବହୁତ ରାତି ହେଲଣି—ଯାଉଚି । ମାଧବୀ ହସି ହସି ବିଦାୟ ଦେଲା । ଆଉ ବାର ବାର କରି ଚଇତାର ହାତ ଧରି କହିଲା, କାଲି ଆସିବେ—ମୋ ରାଣ । ଚଇତା କହିଲା, ନିଶ୍ଚୟ ଆସିବି—ତମେ ଅପେକ୍ଷା କରିଥିବ ।

ବସାକୁ ଫେରିଆସି ଦେଖିଲା ବେଳକୁ କେଳୁଭାଇ ବସି ବେଦମ ଗଞ୍ଜେଇ ଟାଣୁଚି । ଧୂଆଁରେ ଘର ଭିତରଟା ଭରିଯାଇଚି । ଚଇତାକୁ ଦେଖି କେଳୁ ମାହାନ୍ତି ହସି ହସି ପଚାରିଲା, ଚଇତା ଏତେବେଳଯାଏ କୁଆଡ଼େ ଥିଲୁମ ? ଚଇତା ହସିଲା, କହିଲା, କେଳୁଭାଇ ତମେ ଇମିତିକା ଲୋକ । ମୋତେ ଏକଲା ଛାଡ଼ି ଆଗେ ଆଗେ ଚାଲି ଆସିଲ । କେଳୁ ମାହାନ୍ତି ହସି ହସି କହିଲା, ବଣ ଜଙ୍ଗଲରେ ତ ଛାଡ଼ିଦେଇ ଆସି ନଥିଲି । ଛାଡ଼ ସେ କଥା । ତା ପରେ ମାଧବୀ ସାଙ୍ଗରେ ତୋର ଆଳାପ ହେଲାତ ? ଚଇତା ହସିଲା—ଉତ୍ତର ଦେବାକୁ ପାଟିରୁ କଥା ବାହାରିଲା ନାହିଁ । କେଳୁ ମାହାନ୍ତି ଗଞ୍ଜେଇ ଦି' ଢୋକ ଟାଣୁ ଟାଣୁ କହିଲା—ମାଧବୀ କେମିତି ଲାଗିଲାରେ ଚଇତା—ଖଟା ନା ମିଠା ? ଚଇତାକୁ ଲାଜ ମାଡ଼ିଲା । ସେ କଥା ବାଆଁରେଇ କହିଲା, ଭାରି ନିଦ ମାଡ଼ିଲାଣି କେଳୁଭାଇ, ବତୀ ଲିଭାଇ ଦେଉଚି । ଏତିକି କହି ଚଇତା ବତୀଟା ଲିଭାଇ ଦେଲା । କେଳୁ ମାହାନ୍ତି ଗଞ୍ଜେଇ ନିଶାରେ ଢଳି ପଡ଼ିଲା ।

ଚଇତା ଶୋଇ ଶୋଇ ଭାବିଲା ମାଧବୀ କଥା । ମାଧବୀ କେଡ଼େ ସୁନ୍ଦରୀ ! କି ମଧୁର କଥା ତାର—କାଲି ଆସିବେ, ମୋ ରାଣୀ···ଭାବୁ ଭାବୁ ନିଦରେ ଶୋଇ ପଡ଼ିଲା ।

ସପନରେ ଦେଖିଲା ମାଧବୀ ତା କୋଳରେ ଶୋଇଛି । ଚଟ୍ କରି ଚଇତାର ନିଦଟା ଭାଙ୍ଗିଗଲା । ଦେଖିଲା ଖାଲି ଅନ୍ଧାର । ସାଇଁ ସାଇଁ ନିଶା ଗର୍ଜୁଛି । ନୀରବତାର ବୁକୁ ଚିରି କେତେବେଳେ କମିତି ଗୋଟାଏ ଶବ୍ଦ କାନ ପାଖରେ ବାଜି ଉଠୁଛି । ପୁଣି ଚଇତା ଆଖି ବୁଜିଲା ।



ବାପା ଚିଠିଦେଇଛନ୍ତି—ଚଇତା, ଘରକାମ ଅଧାଅଧି ହୋଇଯାଇଚି । ମୋ କଡରେ ଯା ପଇସା ଥିଲା ସବୁ ଶେଷ । ଚିଠି ପାଇ ଶୀଘ୍ର ଟଙ୍କା ପଠାଇବୁ । ମୂଲିଆଙ୍କର କେତେ ପଇସା ଦିଆହୋଇ ନାହିଁ । କନ୍ଧିଆ ବଢ଼େଇର ଛ' ଦିନର ମଜୁରି ବାକି । ଆଗରେ ପୁନେଇଁ—ପାଣି ଘରକୁ ଧାର ଯିବ । ଚନ୍ଦ୍ରେଇ ସାହୁ ମହାଜନ ବାହାଘର ଦେଣାଟଙ୍କା ମାଗୁଥିଲା । ତାକୁ କହୁଚି, ଏ ଘରକାମ ସରିଲେ ଟଙ୍କା ଦେବାକୁ । ଇମିତି କେତେ ଅଭାବ ଅଭିଯୋଗ । ଚଇତା ଚିଠି ପଢ଼ି ବିରକ୍ତିରେ ଚିରି ଫୋପାଡ଼ି ଦେଲା । ଖାଲି ସବୁବେଳେ ଟଙ୍କା ଟଙ୍କା ଟଙ୍କା । ଟଙ୍କା ଯେମିତି ଖଣି ପଡ଼ିଚି ଏଠି ।

କଲଘର କାମ କଲାବେଳେ ଚଇତା ମନରେ ମାଧବୀର ରୂପ ନାଚି ଉଠୁଥାଏ । ତାର ହସ ହସ କଅଁଳ ବଚନ କାନ କଡରେ ବାଜିଉଠେ । ତାର ସୁନ୍ଦର ତନୁଲତାକୁ କୋଳରେ ପୂରାଇ ଚିବୁକ ସ୍ପର୍ଶ କଲାବେଳେ କି ଆନନ୍ଦ—ଅଭିନବ ସେ—ଚିରନ୍ତନ ପୁଲକଭରା । ଚଇତା ଭାବେ, କେତେବେଳେ ସଞ୍ଜ ହେବ ।

ସୂର୍ଯ୍ୟର ଶେଷ ହସଟିକ ଫିକା ପଡ଼ି ଆସିଲା·····ଦିବସ ହଜିଗଲା—ନଗରୀର ଦୂର କୋଠା ଗହଳି ସେପଟରେ । ସଞ୍ଜ ଆସିଲା—ଶ୍ରମିକ ଜୀବନରେ ଖୁସିହାସିଆ ଶାନ୍ତିର ମହକ ନେଇ ।

ଚଇତା ମନଟା ବସାରେ ଆଉ ଲାଗିଲା ନାହିଁ । ଦଉଡ଼ିଲା ମାଟିଆବୁରୁଜର ସେଇ ଘେଞ୍ଚିଆ ଗଳି ଭିତରକୁ । ମାଧବୀ ଚଇତାକୁ ଦେଖି ହସି ହସି ଘର ଭିତରକୁ

ନେଇଗଲା । କାଲିର ପରିଚୟରେ ଭୟ ସଙ୍କୋଚ କଟି ଯାଇଥିଲା । ଆଜି ଦୁହିଁଙ୍କ ଭିତରେ କେତେ ଆଡ଼ର ଗପ ପଡ଼ିଲା । ତା ପରେ ମାଧବୀ ଚଇତା କୋଳକୁ ଢଳିପଡ଼ିଲା । ଚଇତା ମାଧବୀକୁ ପାଇ ସ୍ୱର୍ଗ ସୁଖ ଅନୁଭବ କଲାପରି ଭାବିଲା ।

ଚଇତା ମାଧବୀର ପରିଚୟ ପାଇଛି । ମାଧବୀ ବେଶ୍ୟା । ତା ମା ମଧ୍ୟ ବେଶ୍ୟା ଥିଲା । ତା ମା' ସହିତ କେଉଁ ମାହାନ୍ତିର ଅନେକ ଦିନରୁ ପ୍ରେମର ସମ୍ପର୍କ । କିନ୍ତୁ ଦିନ ଗଡ଼ିଯାଇଛି । ମା'ର ବୟସ ନଇଁ ପଡ଼ିଛି—ଭଙ୍ଗା ଜୀବନର ପାଚେରୀ ସେପଟରେ । ଯୌବନର ରୂପ ତାର ମଉଳି ଯାଇଛି, ଝରାଫୁଲର କରୁଣ ହସ ପରି । ମା'ର ରୂପ ମରିଯାଇଛି ସତ, କିନ୍ତୁ ଅସ୍ତିତ୍ୱ ହଜି ନାହିଁ । ଜୀବନ ଦୀପ ଧୁକୁ ଧୁକୁ ହୋଇ ଜଳୁଛି । ମା' ପରି ମାଧବୀ ଜୀବନରେ ଯେତେବେଳେ ଯଉବନ ମଳୟର ପହିଲି ପରଶ ଚହଟିଗଲା—ସେତେବେଳେ ସେ ନିଜକୁ ବଞ୍ଚାଇ ପାରିଲା ନାହିଁ । ସେ ନିଜକୁ ଆହୁତି ଦେଲା, ମା' ପରି ହେଲା ବେଶ୍ୟା । ସେଇଥିରୁ ମୋଟା ଉପାର୍ଜନ କରି ପେଟ ପୋଷେ । ସେ ପଡ଼ାରେ ଏଣେ ତେଣେ କେତେ ବେଶ୍ୟା ଅଛନ୍ତି—କିନ୍ତୁ ମାଧବୀ ସବୁଠୁ ସୁନ୍ଦରୀ ।

ମାଧବୀର ପରିଚୟ ପାଇ ଚଇତାର ମନରେ ଟିକେ ହେଲେ ଘୃଣା ଆସିଲା ନାହିଁ । ମାଧବୀର ରୂପର ମହକ ତଳେ ଚଇତାର ମନ ଓ ଅନ୍ତର ବୁଡ଼ି ଯାଇଥିଲା । କନକର ସ୍ମୃତି ଅଲୋଡ଼ା ଦରବ ପରି କାହିଁ କେତେ ଦୂରରେ···ବିସ୍ମୃତିର ଅଳିଆ ଭିତରେ ପଡ଼ି ରହିଲା । ଚଇତା ମାଧବୀକି ନେଇ ପାଗଳ ହେଲା । ଭାବିଲା—ମାଧବୀ ତା ଜୀବନର ସୁଖ ଶାନ୍ତିର ଉତ୍ସ-ବିଳାସର ଶ୍ରେଷ୍ଠ ସାମଗ୍ରୀ । ସେ ମାଧବୀକୁ କ୍ଷଣେ ମାତ୍ର ଛାଡ଼ି ପାରିବ ନାହିଁ । ଅବୁଝା ମନଟା ତାର ଦଉଡ଼ିଲା ମାୟା ମରୀଚିକା ପଛେ ପଛେ·········

ନିତି ସଞ୍ଜ ଆସେ । ଅନ୍ଧାର ଚିରି ଆକାଶରେ ଶତତାରା ଦୀପାଳୀ ଜଳିଉଠେ । ବଉଦ ପଣତ ତଳେ ତଳେ ଅନ୍ଧାର କ୍ଷୀଣ ଛୁଇ ଖାଲି ଲାଗିରହେ । ଥିରି ଥିରି ପବନ ଆସେ । ଚଇତା ଭାବେ, ଆହା କି ଶାନ୍ତି !

ପାଗଳ ପରି ଦଉଡ଼ି ଯାଏ ମାଧବୀ କତିକି । ମାଧବୀ ଚଇତାର ଆସିବା ପଥକୁ ଚାହିଁ ରହିଥାଏ । ଚଇତାକୁ ଦେଖିଲେ ମାଧବୀର ରଙ୍ଗିଣୀ ଓଠରେ ସରୁ ହସ ଫୁଟେ । କେତେ ଆଦରବୋଳା କଥା କହି ତାକୁ ନିଜର କରିନିଏ । ଚଇତା ଭାବେ, ମାଧବୀ ପର ନୁହେଁ—ନିଜର । ବିବାହ ପରେ କନକ ସହିତ କେତେ ଦିନ, କେତେ ରାତି ବିତିଯାଇଛି—କିନ୍ତୁ କାହିଁ ମାଧବୀ ପରି କନକ ତ ମୋର ଅନ୍ତର

ମନକୁ ଜାଣି ପାର ନାହିଁ । ମାଧବୀ ମୋର ସବୁ, ମାଧବୀକ ନେଇ ବିଦେଶୀ ଜୀବନ ବେଶ୍ ସୁଖରେ କାଟିବ ।

ନିତ ନିତ ମାଧବୀ ପାଇଁ ଚଇତା କେତେ ପଇସା ଖରଚ କରେ । କେତେ ଉପହାର—କେତେ ସୌଖିନ ଜିନିଷ କିଣିନିଏ । ଆଜି ତେଲ, ସାବୁନ—କାଲି ସ୍ନୋ, ପାଉଡର । ମାଧବୀ ଖୁସି ହୁଏ ସତ, କିନ୍ତୁ ସେଥିକରେ ସନ୍ତୁଷ୍ଟ ହୁଏନା । ନାଇଥି ସେ ଚଇତା କୋଳରେ ଶୋଇ ଶୋଇ କେତେ ଜିନିଷ ଅଳି କରେ । ଚଇତା ତାର ଚିକ୍‌କଣ ଗୋଲାପି ଗାଲରେ ଥିର ଥିର ହାତ ବୁଲାଇ କୁହେ, ଏହି ତମର ସାମାନ୍ୟ ଅଳି ମୁଁ ନିଶ୍ଚୟ ପୂରଣ କରିବ । ତମ ପାଇଁ ମୁଁ ସବୁ ଦେଇପାରେ । ଦରକାର ହେଲେ ଜୀବନକୁ ମଧ୍ୟ ତମ ପାଇଁ ବଳି ଦେଇପାରେ । ମାଧବୀ ହସି ହସି ଚଇତା କୋଳକୁ ଆହୁରି ଜାକି ହେଇଆସେ । ଚଇତାର ଆବେଗ ଉତ୍ତେଜନା ମିଶି ଏକ ହୋଇଯାଏ ।

ତା'ପରେ ପ୍ରଣୟ କାହାଣୀରେ କମା ଦେଇ ଚଇତା କୁହେ, ବେଶୀ ରାତି ହେଲାଣି —ଯାଉଚ ମାଧବୀ । ମାଧବୀ ମୁହଁରେ ଅଭିମାନର ଛାଇ । ବିଦାୟ ଦେବାକୁ ସତେ ଯେପରି ସେ ଅନିଚ୍ଛୁକ । ଚଇତା ହସି ହସି ମାଧବୀର ମସୃଣ ଗଣ୍ଡରେ ସ୍ନେହର ଚୁମ୍ବନ ଦେଇଦିଏ—ତା ପରେ ବିଦାୟ ।

ଚଇତା ମାଧବୀକ ପାଇ ଭୁଲିଗଲା ତାର ଗାଁ—ତାର ସେଇ ଜନ୍ମ ମାଟି—ଯେଉଁ ପାଣି ପବନରେ ସେ ମଣିଷ ହେଇଚି । ଭୁଲିଗଲା ତାର ବାପ, ଭଉଣୀ, ସାଙ୍ଗ-ସାଥୀ ଆଉ ଅତି ଆପଣାର ଲୋକ ଜନଙ୍କୁ । ମାସ ମାସ ଧରି ଖଟଣି ପରେ ଯୋଉ ପଇସାତକ ପାଇଲା ସବୁ ମାଧବୀ ଲାଗି ଖର୍ଚ୍ଚ କରିଦେଲା । ଦରମା ପାଇ ତଥାପି ଚଇତାକୁ ମାସ ଶେଷକୁ ନିଅଣ୍ଟ ପଡ଼େ । ଆଠୁ ତାଠୁ ଧାର କରି ମାଧବୀର ମନ ନିଏ । କେଲୁ ମାହାନ୍ତି ଦିନେ ଦିନେ କୁହେ, କରେ ଚଇତା, କୋଉ ଘାଟରେ ବୁଡ଼ ପାଣି ପିଉଚୁ କରେ ? ଚଇତା କଥା ନ ଶୁଣିଲା ପରି ଚାଲିଯାଏ । କେଲୁ ମାହାନ୍ତିର ସାରଟା ଭିତରେ ଭିତରେ ଜଳି ଉଠେ । ଭାବେ, କେଇଦିନ ଏ ମୋ ଦରବକୁ ମାଡ଼ିବସି ରହିବ—ଦେଖିବ ।

ଘରୁ ମାସକୁ ମାସ ସାତ ଆଠ ଖଣ୍ଡ ଚିଠି ଆସେ—କେତେ ଅଭାବ ଅଭିଯୋଗର ରୂପଧରି । ଚଇତା ଚିଠି ପଢ଼େନା—ବିରକ୍ତିରେ ଚିରି ଫୋପାଡ଼ି ଦିଏ । ମନକୁ ମନ କହେ, ଜୀବନରେ ସୁଖ ସୁଆଦ କଣ ନାହିଁ ! ଖାଲି ଟଙ୍କା କମେଇବ— ଘର-ସଂସାର ପାଇଁ—ବାପା, ମା, ଭାଇ ଭଉଣୀର ସୁଖ ପାଇଁ । ନିଜେ ଖଟିବ ହାଡ଼ ମାଉଁସକୁ ଚୂନା କରି—ଅଥଚ ନିଜେ ଟିକେ ଶାନ୍ତିରେ ନିଶ୍ୱାସ ମାରିବ

ନାହିଁ ! ଚଇତା ଏଣିକି ଘରକୁ ଚିଠିପତ୍ର ଖଣ୍ଡେ ବି ଦିଏ ନାହିଁ। ଥାଉ, ନିଜେ ସୁଖରେ ଅଛି ତ ଭଲ। ଆଉ ଯେତେ ମଲେ ଗଲେ କିଏ କାହାର—ଖାଲି ମାୟା, ବାହାନା ।

ଚଇତା ମାଧବୀ କଥାକୁ ବଗିବର ଯାଏ ବୋଲି କେଲୁ ମାହାନ୍ତି ଗାଁଆଡ଼େ ହଲ୍ଲା କରିଦେଇଛି। ଆସ୍ତେ ଆସ୍ତେ କଥାଟା କୁଲିବସ୍ତି ଭିତରେ ଖେଳି ସବୁ କାନକୁ ଆସିଲାଣି। ସମସ୍ତେ କହନ୍ତି, ଚଇତାଟା ଘିଡ଼ୁଆ—ଗଣ୍ଡି ରଖିଛି । କିଏ କିଏ ଚଇତାକୁ ଦେଖିଲେ ନାକ ଟେକନ୍ତି। କିଏ କିଏ ଆଦର କରି କେତେ ମିଠା କଥା ପଚାରନ୍ତି—ଚଇତା ଭାଇ, ମାଧବୀ କିମିତି ଅଛି ମ ? ଶୁଣୁଚୁ ସେ କୁଆଡ଼େ ଦେଖିବାକୁ ଭାରି ସୁନ୍ଦର—ସରଗର ଅପସରୀ ପରି। ମାଧବୀର ରୂପର ଗାନ ଶୁଣି ଚଇତାର ହୃଦୟ ଗର୍ବରେ ଫୁଲି ଉଠେ। କୋଉ କୋଉ ବୟସରେ ମୁରବି ପରି ଲୋକ ଚଇତାକୁ ଦେଖିଲେ ଥଟ୍ଟା କରି କହନ୍ତି, ଆରେ ତୁ ପୁଣି ଗୋଟାଏ ଲୋକ—ଗଣ୍ଡି ରଖିଚୁ ? ଚଇତା ମନଟା ରାଗରେ କୁହୁଳି ଉଠେ। ନ ଜାଣୁଣୁ ପୁଣି ଲାଜେଇଯାଏ । କାହାରିକୁ କିଛି କହି ପାରେନା ।

ମାଧବୀକୁ ନେଇ ଚଇତାର ମଧୁର ସ୍ୱପ୍ନବିଭୋର ଦିନଗୁଡ଼ା ଗଡ଼ିଗଲେ।



ଛ'ମାସ କଟିଗଲା । ଅନେଇ ଅନେଇ ନିଧି ପଧାନ ଆଖିରୁ ପାଣି ମଲା । ଚଇତା ପାଖରୁ ଖଣ୍ଡେ ଚିଠି କି ଟଙ୍କା କିଛି ପାଇଲା ନାହିଁ । ଘର କାମ ଅଧା ହୋଇ ପଡ଼ି ରହିଚି, ଆଉ ଟଙ୍କା ନାହିଁ—ନିଧି ପଧାନ ଆଁ କରି ଅନେଇଚି ପୁଅ ହାତକୁ । ପୁଅ ତାର ଟଙ୍କା ପଠେଇବ—ସେ ଘର କରିବ—ଜୀବନର ଶେଷ ସୀମାରେ ସେ ଟିକେ ସାର୍ଥକତାର ହସ ହସି ମରିବ ।

କିନ୍ତୁ ସବୁ ସ୍ୱପ୍ନ ତାର ହଜିଗଲା—ଯେଉଁଦିନ ଭୋଲା ସାମୁଲର ଚିଠି ଖଣ୍ଡିକ ପାଇଲା । ଭୋଲା ସାମୁଲ ଲେଖିଚି, ନିଧିଭାଇ ତମ ଚିଠି ପାଇ ଚଇତା କତିକି ଯାଇଥିଲି । ଘର କଥା ସବୁ କହିଲି । ତମେ କିମିତି ଦୁଃଖରେ ଅଛ—ଘର କାମ ଅଧା ହୋଇ ପଡ଼ିଚି—ଚନ୍ଦ୍ରେଇ ସାହୁ ମହାଜନର ଦେଣା ବଢ଼ୁଚି । ସବୁ କହିଲି, ସେ ଶୁଣିଲା ନାହିଁ । ମୁହଁ ବୁଲେଇ ଚାଲିଗଲା । କହିଲା, ମୋ କତିରେ ଟଙ୍କା ପଇସା ନାହିଁ । ଘର କରିବାକୁ କିଏ ମୁଁ କହିଥିଲି ? ମହାଜନ ଦେଣା ଆଣିବାକୁ କିଏ ମୁଁ ଯାଇଥିଲି ? ବାପା ସବୁ କରିଚନ୍ତି—ସେ ବୁଝିବେ । ମୁଁ ଅଧଲାଟାଏ ଦେଇ ପାରିବି ନାହିଁ ।

ସେ ବସ୍ତିରେ ଅନେକ ଲୋକଙ୍କ କତିରୁ ଶୁଣିଲି ଚଇତା ମାଇକିନା ରଖିଚି—ସବୁ ପଇସା ତାରି ପିଛେ ଖର୍ଚ୍ଚ କରୁଚି । ସେ ଆଗ ଚଇତା ହୋଇ ନାହିଁ । ତାର ଆଗ କଥା—ଆଗ ରୂପ ସବୁ ବଦଳି ଯାଇଚି, ମୋତେ ପ୍ରଥମେ ଦେଖି ନ ଚିହ୍ନିଲା ପରି ହେଲା । ଏଇଥିରୁ ସବୁ ବୁଝିବ ।

ଭୋଲା ସାମୁଲର ଚିଠି ଖଣ୍ଡିକ ପାଇ ନିଧି ପଧାନକୁ ଚାରିଆଡ଼ ଅନ୍ଧାର ଦିଶିଲା । ସେ ମୁଣ୍ଡରେ ହାତ ଦେଇ ଖାଲି ଭାବିଲା, ଏ ପୁଣି ମୋର କିଏ ହେଲା ! ମହାଜନ

ଦେଖା କମିତ ଶୁଝିବ । ଘର ଖର୍ଚ୍ଚିକ କମିତ ହେବ । ବୋହୂଟି ଅନ୍ତସତ୍ତ୍ୱା, ଆଉ କେଇଟା ଦିନ ଗଲେ ପୁଣି ପିଲ ପିଲି ହେବ । ତା ପାଇଁ ପୁଣି ଖରଚ । ବାର ଲୋକଙ୍କର ହାତ ଉଧାର, ସେ ସବୁ ପୁଣି କମିତ ଶୁଝା ହେବ ସବୁ ଭାଗ୍ୟ । କପାଳ ଯେତେବେଳେ ପଡ଼େ ସେତେବେଳେ ରାଜା ବି ଘୋଡ଼ା ପାଇଁ ଘାସ କାଟେ । ନଇଲେ ଚଇତା ପରି ପୁଅ ମୋର ଇମିତ ହୁଅନ୍ତା ଭାବି ଭାବି ନିଧି ପଧାନ କାନ୍ଧ ପକାଇଲା ।

ମନକୁ ମନ କହିହେଲା, ଚଇତା ତୋ ମନରେ ଏଇଆ ଥିଲା ! ବୋହୂ ଆଣି ନ ଥିଲ ଯେ—ସମସ୍ତେ କହୁଥିଲେ ନିଧି ପଧାନ ଆଣିଚ ଘରର ଲକ୍ଷ୍ମୀ । ଲକ୍ଷ୍ମୀ ପରି ବୋହୂକୁ ତୁ ଆଜି ପର କରି ଦେଇ ପାରିଲୁ ତୋର ପାଇଁ ଯାହାର ଭଲ ଭଲ ଦିନ ସରୁନି—ତୋର ମୁହଁକୁ ଚାହିଁ ସିଏ ସବୁ ଦୁଃଖ କଷ୍ଟ ଭୁଲି ଯିବାକୁ ବସିଚ—ତାକୁ ତୁ ଛାଡ଼ି ବେଶ୍ୟା ରଖିଲୁ ମୋ ବୁଢ଼ାଆଦର ଇଜ୍ଜତରେ କାଳି ବୋଳିଲୁ !! ନିଧି ପଧାନର ସପ୍ତପୁରୁଷ ଉଦ୍ଧାର କଲୁ !!!

ସେଇଦିନଠୁ ନିଧି ପଧାନ ସବୁବେଳେ ଖାଲି ବସି ବସି ଭାବେ । କନକ ବେଳେ-ବେଳେ ଆସି କୁହେ "ବାପା, ତମର କଣ ହେଇଚ ଏତେ ଭାବୁଚ କଣ ?" ନିଧି ପଧାନ ଶୁଖିଲା ମୁହଁରେ ହସ ଫୁଟାଇ କହେ, "ନାଁ ମା ହେବ କଣ ?" କନକ କୁହେ, "ବାପା ତମେ ମୋତେ ଲୁଚଉଚ—ସତ କୁହ, ତମର କଣ ହେଇଚ ।" ନିଧି ପଧାନ ବ୍ୟାଥାରେ ନଇଁ ପଡ଼ିଲା ସ୍ୱରରେ କହେ, "ମା ଚଇତା ଆମକୁ ଭୁଲିଗଲା···ବୁଢ଼ା ଦିନେ ତାର କଥା ଭାବି ଭାବି ଦିନ ମୋର ତଥାପି ସରୁନି । ମରିଗଲେ ଛୁଟି ମା ! ତୋ ଶୁଖିଲା ମୁହଁକୁ ମୁଁ ଆଉ ଦେଖି ପାରିବି ନାହିଁ ।" କନକ ଆଖିରୁ ଝର ପଡ଼େ ଲୁହ । କୁହେ, "ବାପା ସିମିତକା କଥା କହିବ ନାହିଁ ।"

ସେ ଦିନ ସଞ୍ଜ ହେଇନାହିଁ । ଚନ୍ଦ୍ରେଇ ସାହୁ ମହାଜନ ଆସି ଡାକିଲା, "ପଧାନ ପୁଅ ଘରେ ଅଛ ?" ନିଧି ପଧାନ ଘରୁ ବାହାରି ଆସି ଦେଖେ, ମହାଜନ ବୁଢ଼ା ! ପଧାନ ଦଉଡ଼ି ଯାଇ ଘର ଭିତରୁ ମସିଣାଟା ଆଣି ପିଣ୍ଡାରେ ପକେଇ କହିଲା, "ମହାଜନେ, ବସ !" ଚନ୍ଦ୍ରେଇ ସାହୁ କହିଲା, "ନାଁ ପଧାନ ମୁଁ ବସିବାକୁ ଆସି ନାହିଁ କି ମିଠା କଥା ଶୁଣିବାକୁ ଆସି ନାହିଁ, ମୋ ଟଙ୍କା କେବେ ଦେବ କହିଲ ? ଏ ମାସରେ ଦେବି—ଆରମାସରେ ଦେବି କହୁଚ ଖୁବ୍ ଧପେଇଲଣି । ମୋର ଟଙ୍କାର ଜରୁରି ଦରକାର । ଦରକାର ହେଲେ ତମେ ଇମିତ ଧପେଇବ—ମୁଁ ଏହା ଭାବି ନ ଥିଲି । ଏଇମାସ ପନ୍ଦର ତାରିଖ ଭିତରେ ଯଦି ଟଙ୍କା ମୋ ଗୋଡ଼

ପାଖରେ ଦେଇ ନ ଆସ, ତେବେ ମୋର ଯା କରିବାର କଥା କରିବ । ଏହି ମୋର ଶେଷ କଥା ପଧାନେ, ଶୁଣିଥା ।''

କଡ଼ା କଡ଼ା ଦି' ପଦ କହି ଚନ୍ଦ୍ରେଇ ସାହୁ ବାଟ ଧରିଲା । ନିଧି ପଧାନ ତାର ଗତପଥକୁ ଚାହିଁ ଭାବିଲା—ପନ୍ଦର ଦିନ ଭିତରେ ଏତେ ଟଙ୍କା କୋଉଠୁ ଆସିବ ? ମୁଣ୍ଡଟା ତାର ବୁଲାଇ ଦେଲା—ଚାରିଆଡ଼ ଦିଶିଲା ଅନ୍ଧାର । ସେଇ ଅନ୍ଧାର ଭିତରେ ସେ ଦେଖିବାକୁ ପାଇଲା ତାର ସର୍ବସ୍ୱ ଯାଇଛି—ସେ ପଥର କାଙ୍ଗାଳ । ଚଇତା ତାର ଜୀବନ୍ତ ସମାଧି ଦେଖିବାକୁ ସୁଦୂର ବିଦେଶରୁ ଧାଇଁ ଧାଇଁ ଆସୁଚି । ଆଉ ଅନେଇ ପାରିଲା ନାହିଁ ।

ଗାଁରେ ବାଷ୍ଟି ହେଇଗଲାଣି ଚଇତା ଦାଣ୍ଡ ରଖିଚି—ଖୁସିରେ ଅଛି । ଏଠି ସମସ୍ତେ ମଲେ ଗଲେ ତାର କିଛି ଯାଏ ଆସେ ନାହିଁ । ଯିଏ ଶୁଣୁଚି—ସିଏ ଛି ଛି କରି କହୁଛି । ଇମିତ ପୁଅ ବଞ୍ଚିଲେ କେତେ ମଲେ କେତେ ?

ଯୋଉଦିନ ଗାଧୁଆ ତୁଠରେ କନକକୁ ନୟନୀ କହିଲା, ନୂଆବୋଉ ଶୁଣିଲଣି, ଚଇତା ଭାଇ ତମକୁ ଛାଡ଼ି ଆଉ ଗୋଟାଏ ମାଇପ କଲାଣି, କନକ ନୟନୀର କଥାର ମରମ କିଛି ବୁଝି ପାରିଲା ନାହିଁ । ଖାଲି ବଲ ବଲ କରି ଅନାଇ ରହିଲା । ନୟନୀ ଗୋଟି ଗୋଟି ହେଇ ସବୁ କଥା କନକ ଆଗରେ ବଖାଣିଲା । ସେଇ ଗାଧୁଆ ତୁଠରେ କନକ କାନ୍ଦି ଉଠିଲା । କହିଲା—ନୟନୀ ଆଉ ଏ ଅଭାଗୀ ଜୀବନ ଧରି କି ଲାଭ ଲୋ—ମରିଗଲେ ଯାଏ । ନୟନୀ ଆଖିରୁ ଲୁହ ଝରି ପଡ଼ିଲା । କହିଲା—ଛି ନୂଆବୋଉ, ଇମିତିକା ଅମଙ୍ଗଳ କଥା କହିବ ନାହିଁ । ଗର୍ଭରେ ତମର ସନ୍ତାନ—ତାରି ମୁହଁକୁ ଚାହିଁ ଦିନ କାଟ । ଦିନ ଆସିବ, ପୁଣି ଚଇତାଭାଇ ତମରି କତିକି ଫେରି ଆସିବେ । କନକ କହିଲା ସେ ଭାଗ୍ୟ ମୋର ନାହିଁଲୋ ନୟନୀ । ଦେଖିବୁ ସେ ଆସିଲାବେଳକୁ ମୁଁ ଏ ପୁରରେ ନ ଥିବ । ପୋଡ଼ିଗଲା ତଅଣରେ ଆଉ ସୁଆଦ ନଥାଏ ଲୋ—ଥାଏ ଗରଳ । ନୟନୀ କହିଲା, ନୂଆବୋଉ ସବୁ ଭାଗ୍ୟ । ଭାଗ୍ୟ ତେଜ ଥିଲେ ପାଷାଣ ଦେହରେ ବି ଫୁଲ ଫୁଟେ । ଏଇ ମାଟିକୁ ଛୁଇଁଲେ ସୁନା ପାଲଟେ । ଠାକୁରେ ବଡ଼ଲୋକ—ତାଙ୍କୁଇ ଡାକ । ସେ ତୋ ଡାକ ଶୁଣିବେ, ସେଇ ଡାହାଣୀ କବଳରୁ ଚଇତା ଭାଇ ମୋର ଫେରି ଆସିବେ । କନକ ହସିଲା—ମଳିନ ବେଦନାତୁର ହସ । ସେ ହସରେ ଯେପରି ଜୀବନ ନଥିଲା । ଦିହେଁ ଗାଧୋଇସାରି ଘରମୁହାଁ ଧରିଲେ ।

ଦିନ ଦିନ ପରେ ଦିନେ ରାତି ପାହାନ୍ତା ପହରକୁ କନକ କୋଳରେ କୁଆଁ କୁଆଁ ହୋଇ କାନ୍ଦି ଉଠିଲା ଗୁଲୁଗୁଲିଆ ଟିକି ପୁଅଟିଏ । ଗୋରା ତକତକ ଦେହ, ପୂରିଲା ପୂରିଲା ଗୋଲ ମୁହଁଟି ତାର କେଡ଼େ ସୁନ୍ଦର ଦିଶୁଥାଏ କଣ୍ଢେଇଟି ପରି ।

ଦୁର୍ଦ୍ଦିନ ଝଡ଼ ବତାସରେ ଭ୍ରାନ୍ତ ପଥିକ ବିଜୁଳିର କ୍ଷୀଣ ଆଲୋକ ଦେଖିଲେ ଯେମିତି ପଥ ପାଏ—ସେମିତି ନିଧି ପଧାନ ଏତେ ଦୁଃଖରେ ବି ନାତି ମୁହଁ ଦେଖି ଅକୂଳରେ କୂଳ ପାଇଲା । ଆନନ୍ଦର ଆତିଶଯ୍ୟରେ ସେ ସାର୍ଥକତାର ହସ ଟିକେ ହସିଦେଲା । ସକାଳ ହେଲେ କଅଁଳ ଆଲୁଅ ଶିଶିରଧୁଆ ଦୂବ ଘାସ ଉପରେ ପଡ଼ି ଚିକ୍ ଚିକ୍ କଲାବେଳେ ଯେମିତି ସୁନ୍ଦର ଦିଶେ—ସେମିତି ଦିଶିଲା ଟିକି ପୁଅଟିର ମୁହଁ । କନକ ପୁଅଟିକୁ ଦେଖି ହସିବ କଣ—ଆଖିରୁ ତାର ଝରି ପଡ଼ିଲା ଲୁହ । ଦୁର୍ବଳ ଦେହଟା ତାର ଥରି ଉଠିଲା । ଭାବିଲା, ଆଜି ପରା ଦିନରେ ତାର ବାପ ଥାଇ ସେ ଅନାଥ ।

ନିଧି ପଧାନ ନାତିକି ପାଇ ଭାରି ଖୁସି । ଭାବିଲା, ଚଇତା କଟକକୁ ସେ ଚିଠି ଖଣ୍ଡେ ଦେବ । ଏତେ ବଡ଼ ଖୁସି ଖବର, ପୁଅ ତାର ହେଇଚି ସେ ନ ଲେଖି କେମିତି ରହିବ । କିନ୍ତୁ ଦୁଆତ କଲମ ଆଣି ଲେଖିଲାବେଳକୁ ହାତ ତାର ଚଳିଲା ନାହିଁ । ନିଧି ପଧାନ ଆଖିରୁ ଝରି ପଡ଼ିଲା ଲୁହ । କେତେ କଷ୍ଟରେ ସେ ଲେଖିଲା—ବାପା ଚଇତା, ମୋର ଶୁଭକଲ୍ୟାଣ ନେବୁ । କାଲି ରାତିରେ ତୋର ପୁଅଟିଏ ହେଇଚି—ତାର ଏକୋଇଶା ଆଗରେ । ତୁ ଥରଟିଏ ହେଲେ ଆସିବୁ—ଟିକି ପୁଅଟିକି ତୋର ଟିକେ ଦେଖିଯିବୁ । ବୁଢ଼ାଦିନେ ମୋ ଆଖିରୁ ଲୁହ ଝରାଇ ତୋତେ କଣ ସୁଖ ଲାଗୁଚି ।

ବାପାଟା ପରା—ବୁଢ଼ା ବାପର ଏଇ ଶେଷ ଅନୁରୋଧ ରଖିବୁ । ତୋତେ ଦେଖିଲେ ମୁଁ ସବୁ ଦୁଃଖ କଷ୍ଟ ଭୁଲିଯିବି । ଲୋଡ଼ା ନାହିଁ ମୋର ଧନ ଦଉଲତ—ଚାହେଁନାହିଁ ମୁଁ ସ୍ୱର୍ଗ ସୁଖ । ଏଇ ଗାଁ ମାଟି ମୋର ସବୁଠୁ ବଡ଼ । ଆମର କେତେ ପୁରୁଷର ମାଟି ଇଏ । ସମସ୍ତେ ଆସିଚନ୍ତି—ପୁଣି ଯାଇଚନ୍ତି ମଣିଷ ହେଇ—ପଧାନ ବଂଶର ନାଁ ରଖି । ବିଦେଶ କେହି ଜାଣି ନ ଥିଲେ । ଏଇଗାଁରେ ସେମାନେ ଘରସଂସାର କରି—ଟଙ୍କା କମେଇ—ପିଲାପିଲିଙ୍କି ମଣିଷ କରିସାରି ବାହୁଡ଼ି ଯାଇଥିଲେ ସେପୁରକୁ । ଧନଟା ପରା ଫେରିଆ । ତୋର ଆସିବା ପଥକୁ ଚାହିଁ ରହିଲି । ଚିଠିଟି ଡାକରେ ପକାଇ ନିଧି ପଧାନ ଟିକେ ଶାନ୍ତିର ନିଶ୍ୱାସ ମାରିଲା ।

ଅନେଇ ଅନେଇ ନିଧି ପଧାନର ଆଖିରୁ ଲୁହ ଶୁଖିଗଲା—ହୃଦୟଟା ତାର ପାଷାଣ ପରି ଶକ୍ତ ହୋଇଗଲା । ନଆସୁ ଚଇତା, କୁଳାଙ୍ଗାର ଇମିତି ପୁଅ ମରିଯିବା ଭଲ ।

ଆଗରେ ନାତିର ଏକୋଇଶା, ପାଖରେ ଏକ ପଇସା ନାହିଁ । ପଧାନ ବଂଶ କୁଳର ପ୍ରଦୀପ—ତା ପାଇଁ କିଛି ହେବନାହିଁ । ନା ନା, ନିଧି ପଧାନ ବଞ୍ଚି ଥାଉ

ଆଉ ସ୍ବା ହେବ ନାହିଁ । କୁଆଡ଼ର ଭାବନା ପଶିଲା ମୁଣ୍ଡରେ । ଭାବିଲା, ଜମି ମାଣେ ବିକିଦେବ । ସେଇ ଟଙ୍କାରେ ସେ ଚନ୍ଦ୍ରେଇ ସାହୁ ମହାଜନର ଦେଣା ଶୁଝିବ—ଘରକାମ ମୁଣ୍ଡି ମାରିବ ଆଉ ନାତିର ଏକୋଇଶା ଉତ୍ସବ କରିବ । ତାକୁ ମଣିଷ କରିବ । ତା ପରେ ନିଧି ପଧାନର ଛୁଟି ।

କେତେ କଷ୍ଟରେ ପଡ଼ି ନିଧି ପଧାନ ପିତୃ ଅର୍ଜିତ ସୁନାଆଳ ଜମି ମାଣକ ଯୋଉ ଦିନ ସାତ ଶହ ଟଙ୍କାରେ ବିକି ଘରକୁ ଫେରି ଆସିଲା—ଆଖିରୁ ତାର ଧାର ଧାର ହୋଇ ଲୁହ ଛୁଟିଲା । ଭାବିଲା, ଏ ପୁଣି ତାର କଣ ହେଲା ! ଜୀବନଭରି ଖଟି ଖଟି ଜମି ବିକଟେ ବୋଲି କରି ପାରିଲାନି ନାହିଁ—ଓଲଟି ପିତୃପୁରୁଷ ଜମିତକ ପରକୁ ବିକିଲା । ସବୁ ଭାଗ୍ୟ । ଲକ୍ଷ୍ମୀ ଗୁଡ଼ିଲେ ସବୁ ଅମଙ୍ଗଳ କଥା ଆପେ ଆପେ ଆସେ । ମନକୁ ପ୍ରବୋଧ ଦେଇ ପଧାନ ଆଖିରୁ ଲୁହ ପୋଛିଲା ।

ନିଧି ପଧାନ ଚନ୍ଦ୍ରେଇ ସାହୁର ସବୁ ଦେଣାତକ ପରିଶୋଧ କରିଦେଲା । ନାତିର ଏକୋଇଶାରେ ଗାଁର ସବୁ ଲୋକଙ୍କୁ ଭଲ କରି ଗଣ୍ଡେ ଖାଇବାକୁ ଦେଲା । ସମସ୍ତେ କହିଲେ, ପଧାନ ଘର—ନଇଲେ ଇମିତି ଖାଇବା କିଏ ଦେବରେ । ନିଧି ପଧାନ ଅତି ଆଦରରେ ନାତିର ନାଁ ଦେଲା—ମଧୁଆ ।

ଘର କାମ ଯା ବାକି ପଡ଼ିଥିଲା—ନିଧି ପଧାନ ମାସକ ଭିତରେ ସବୁ ଶେଷ କରିଦେଲା । ଦିନେ ବସି ବସି ଭାବିଲା, କାହିଁକି ଏ ଘର କଲା—ସେଇ ପୁରୁଣା ଘରେ କଣ ଦିନ ସରି ନ ଥାନ୍ତା ! ଘରଚ ହେଲା—କିନ୍ତୁ ଘରକୁ ମଣିଷ ନାହିଁ ! ବୁଢ଼ା ତ ହେଲା ; ଆଉ କେଇଟା ଦିନ ବଞ୍ଚିବ । ଏତିକିବେଳେ କନକ ପୁଅକୁ ଆଣି ବୁଢ଼ା କୋଳରେ ଛାଡ଼ିଦିଏ । ନିଧି ପଧାନ ନାତିର ହସ ହସ ମୁହଁ ଦେଖିଲେ ସବୁ ଭୁଲିଯାଏ । ତାରି ସାଙ୍ଗରେ କେତେ ଖେଳ ଖେଳେ ।

କନକ ଟିକିଏ ଅବସର ପାଇଲେ ଭାବେ ତା ସ୍ଵାମୀଙ୍କ କଥା । ଏଡ଼େ ନିଷ୍ଠୁର ସେ, ନିଜର ପୁଅଟିକୁ ଟିକେ ଦେଖିବାକୁ ଆସିଲେ ନାହିଁ । ଘଡ଼ିଏ ନ ଦେଖିଲେ ଯିଏ ପାଗଳ ହୋଇ ଯାଉଥିଲେ—ସେ ପୁଣି ଆଜକୁ ବରଷେ ହେଲା ଭୁଲରେ ଥରେ ବି ମନେ ପକାଉ ନାହାନ୍ତି ! ଭାବି ଭାବି କନକ ଆଖିରୁ ଲୁହ ଝରେ । ବଳେ ବଳେ ଆଖିରୁ ଲୁହ ପୋଛି ପୁଣି ଘର କାମରେ ଲାଗେ । ରାତିରେ ଦିନେ ଦିନେ ସପନ ଦେଖେ ସ୍ଵାମୀ ତାର ଫେରି ଆସିଚନ୍ତି ଆଉ ହସି ହସି କହୁଛନ୍ତି, କନକ, ଏ ନୂଆ

ଦରବଜି କେଉଁଠୁ ପାଇଲ ? ସେ ଲାଜ ଲାଜ ହୋଇ ପୁଅଟିକୁ ତାଙ୍କ କୋଳକୁ ବଢ଼ାଇ ଦେଉଚ ।

ଛାଟ କରି କନକର ନିଦ ଭାଙ୍ଗିଯାଏ । ଦେଖେ କେହି ନାହିଁ । ସବୁ ମିଛ—ସପନ କଥା କି କେବେ ସତ ହୁଏ ! ଆଉ ନିଦ ହୁଏନା । ଅତୀତ ସ୍ମୃତିରେ ମନଟା ଘାରିହୁଏ । ବିବାହ ପର ଦିନଠାରୁ ଯେତେ କଥା, ଯେତେ ଗ୍ରୋଟ ଗ୍ରୋଟ କରୁଣ ମଧୁର ଘଟଣା ସବୁ ମନେପଡ଼େ । ଛଟପଟ ହୋଇ କନକର ସେ ଦିନ ରାତି ପାହେ—ଆଖିରେ ପିଚ୍ଛୁଡ଼ା ପଡ଼େନା ।



କଲଘରୁ ଫେରିଲାବେଳକୁ ଚଇତାକୁ ଦିନେ କୁଆଡ଼ର ଜର ଆସିଲା । ରାତସାରା ଝାଳ ବାହାର କଲା । ଜର ଚାଡ଼ିଗଲା । ସେଇ ବସାରେ ପଡ଼ି ସେ ପାଗଳ ପରି ହେଲା । ରାତି ପାହିଲାବେଳକୁ ଜର ମନକୁମନ କମି ଆସିଲା । ସେ ବିଛଣାରୁ ଉଠିଲା । ଖୁବ୍ ଦୁର୍ବଳ ବୋଧକଲା । ଭାବିଲା, ଆଜି ଆଉ କାମକୁ ଯିବନାହିଁ ।

ସେଇ ଦିନଠୁ ଚଇତାକୁ ଦିନେ ଛାଡ଼ି ଦିନେ ରୋଜ ସଞ୍ଜବେଳକୁ ଜର ଆସିଲା । କେତେ ଔଷଧ ଖାଇଲା, କିଛି ଫଳ ହେଲାନାହିଁ । ବାଇଶି ଦିନ ବିତିଗଲା । ଦେହ ତାର ରୋଗରେ ଭାଙ୍ଗି ପଡ଼ିଲା । ପାଖରେ ପଇସାଟିଏ ନାହିଁ—କି ସେବା କରିବାକୁ ବସାରେ କେହି ନାହାନ୍ତି । କେଳୁ ମାହାନ୍ତି ବେଳେ ବେଳେ ଉପର ମନରେ ଟିକିଏ ପଚାରି ନଇଲେ ନାହିଁ ।

ଚଇତା ଭାବିଲା, ମାଧବୀ କତିକି ସେ ଚାଲିଯିବ—ସେଇଠି ରହିବ । ମାଧବୀ ଲାଗି ସବୁ ପଇସା ସେ ଉଡ଼ାଇ ଦେଇଚି—ଏ ବିପଦ ବେଳେ ସେ କଣ ତାକୁ ପର ବୋଲି ଭାବିବ । ନାଁ କଦାପି ନୁହେଁ ।

ଭାବି ଭାବି ଚଇତା ନିଜର ଦୁର୍ବଳ ଶରୀର ନେଇ ମାଧବୀ ଘରେ ଦିନେ ଦି' ପହରେ ଆସି ହାଜର ହେଲା । ଦେଖିଲା, ମାଧବୀ ଗୋଟିଏ ଯୁବକ ସାଙ୍ଗରେ ବସି ପ୍ରେମାଳାପ କରୁଚି । ଚଇତାକୁ ଦେଖି ମାଧବୀ ଚମକି ପଡ଼ିଲା । ଉଠିଆସି ପଚାରିଲା, କୁଆଡ଼େ ଥିଲ ଏତେ ଦିନଯାଏଁ—ଏମିତି କାହିଁକି ହେଇ ଯାଇଚ ? ଚଇତା କହିଲା, ମାଧବୀ ଆଜିକି ବାଇଶି ଦିନ ହେଲା ମୋତେ ଜର । ଯେତେ

ଔଷଧ ଖାଇଲଣି ଭଲ ହେଉନାହିଁ । ଆଉ ମୋ କତିରେ ପଇସାଟିଏ ନାହିଁ । ମୋର ସେବା କରିବାକୁ ବସାରେ ବି କେହି ନାହାନ୍ତି । ତୋର କତିକି ଆଜି ଚଳି ଆସିଲି, ତୁ ମୋତେ ଏ ବିପଦରେ ସାହା ନ ହେଲେ ଆଉ ବା ମୋର ଆପଣାର ହେଇ କିଏ ଅଛି ? ମାଧବୀ ହସିଲା । ସେ ହସରେ ନଥିଲା ତାର ଆନ୍ତରିକତା—ଥିଲା ବିଦ୍ରୂପ ଭରି । କହିଲା, ଏଠି ତମ ସେବା କିଏ କରିବ—କେଳ କାହିଁ ? ଚଇତା କହିଲା, ମାଧବୀ ତମପାଇଁ ମୁଁ ମୋର ଯା କିଛି ସବୁ ହସି ହସି ଅମ୍ଳାନ ବଦନରେ ଅଜାଡ଼ି ଦେଇଚି—ତମେ ମୋର ପର ନୁହଁ—ସବୁଦିନେ ଭାବି ଆସିଚି ନିଜର । ଏ ବିପଦବେଳେ ମୁଁ କୁଆଡ଼େ ଯିବି ? ମାଧବୀ ରୁକ୍ଷ ସ୍ୱରରେ କହିଲା ତମେ ମୋ ପାଇଁ ଯା କରିଚ—ବଦଳରେ କଣ କିଛି ପାଇନାହଁ । ପୁଣି କାହିଁକି ଅଯଥା ମୂଲ୍ୟହୀନ ଦାବୀ ନେଇ ଦଉଡ଼ି ଆସିଛ । ଆମେ କାହାରି ନୋହୁଁ—କିନ୍ତୁ ପଇସା ଲାଳସାରେ ପର ଆଖିକି ଦେଖାଉଁ ଆମେ ସମସ୍ତଙ୍କର । ତମେ ବଡ଼ ନିର୍ବୋଧ—ଫେରିଯାଅ ।

ଚଇତା କରୁଣ ସ୍ୱରରେ କହିଲା, ମାଧବୀ, ତମେ ବଡ଼ ଦାରୁଣ—ହୃଦୟହୀନା । ମୁଣ୍ଡଟା ତାର ବୁଲାଇ ଦେଲା—ଦୁର୍ବଳ ଶରୀର ଥରି ଉଠିଲା । ସେ ସେଇଠି ବସିପଡ଼ି ବାନ୍ତି କରି ପକାଇଲା । ମାଧବୀ ବିରକ୍ତିରେ କହିଲା, ତମେ ଏଠୁ ଶୀଘ୍ର ଯାଅ । ମରିବାକୁ କଣ କେଉଁଠି ଯାଗା ମିଳିଲା ନାହିଁ । ଆସିଲ ମୋରି ଦୁଆରକୁ । ଚଇତା ସେଇଠି ବସି ରହିଲା । ମାଧବୀ ତା ହାତ ଧରି ଟାଣି ଟାଣି ପଦାରେ ଛାଡ଼ିଦେଇ କହିଲା, ନିଜ ଘର ପରି ଏଇଠିକି ଦଉଡ଼ି ଆସିଚ । କାହିଁକି ତମର କଣ ଘର ଦୁଆର ପିଲା ମାଇପ ନାହିଁ । ଯାଉନା ସେଇଠିକି—ମାଇପ ତମର ଦିନ ରାତି ବସି ସେବା କରିବ । ଏଠିକି କାହିଁକି ଦଉଡ଼ି ଆସୁଚ ? ଭର୍ତ୍ସନା କରି ମାଧବୀ ବିରକ୍ତିରେ ଦାଣ୍ଡ ଦରଜା ବନ୍ଦ କରିଦେଲା ।

ଚଇତା ସେଇ ରାସ୍ତା ମଝିରେ ଥକା ହୋଇ ବସି ପଡ଼ିଲା । ଭାବିଲା, ମାଧବୀ ଏତେ ତାକୁ ସ୍ନେହ କରିଥିଲା ସେ କଣ ସବୁ ବୃଥା, ଛଳନା । ଆଉ କିଛି ଭାବି ପାରିଲା ନାହିଁ ।

ଆଖି ଆଗରେ ଭାସି ଉଠିଲା, କନକର ଦରମଉଳା ମୁହଁ—ବାପର ଭଙ୍ଗା ଶରୀର । କନକର ସ୍ନେହ, ସେବା, ଆଦର ସୁହାଗ ସବୁ ଗୋଟି ଗୋଟି ହୋଇ ମନେ ପଡ଼ିଲା । ଘର ଦୁଆର ସତେ ଯେପରି ତାକୁ ଡାକିଲା, ଚଇତା ଫେରିଆ । ମରୀଚିକା ପଛରେ ଦଉଡ଼ି ପାଇଲୁ କଣ ? ପାଇଲୁ ଚିରଦିନ ପାଇଁ ଗୋଟିଏ ଅବଶୋଷର ଧକ୍କା । ପ୍ରକୃତ ଜଳର ସନ୍ଧାନ କର । ଏବେବି ସମୟ ଅଛି ଚଇତା···ଫେରିଆ । କନକ

ମୁହଁରୁ ଲୁହ ପୋଛି ଦେ—ବୁଢ଼ା ବାପାକୁ ଶେଷ ଜୀବନରେ ଟିକିଏ ଶାନ୍ତିର ନିଶ୍ୱାସ ମାରିବାକୁ ଅବସର ଦେ । ଫେରିଆ ଚଇତା······ଫେରିଆ । ଚଇତାର ଦୁର୍ବଳ ମନ ଆଉ ସମ୍ଭାଳି ହୋଇ ପାରିଲା ନାହିଁ । ଆଖିରୁ ତାର ଧାର ଧାର ହୋଇ ଲୁହ ଛୁଟିଲା ।

ଧୀରେ ଧୀରେ ସେ ବ୍ୟଥାର ଗୁରୁଭାର ନେଇ ବଡ଼ ରାସ୍ତା ଉପରକୁ ଆସିଲା । ବସାକୁ ଫେରିବାକୁ ଗୋଡ଼ ଚଳିଲା ନାହିଁ । ଭାବିଲା, କଣ କରିବ—କୁଆଡ଼େ ଯିବ । ଇମିତି ହନ୍ତସନ୍ତ ହୋଇ ମୁଁ କଣ ମରିଯିବି ବାଉରିଆ ଭଳି ପରି ?

ବାଉରିଆର ମଲାବେଳର କରୁଣ ଛବି ଆଖି ଆଗରେ ତାର ନାଚି ଉଠିଲା । ଦେହ ତାର ଥରି ଉଠିଲା ଅଜଣା ଭୟରେ । ସେ ଭାବିଲା, ଏଠି ଆଉ ଆପଣାର ବୋଲି କିଏ ଅଛି—କା ବସାକୁ ଯିବ । ହଠାତ୍ ତାର ମନେ ପଡ଼ିଲା ଭୋଳି ସାମୁଲ କଥା । ଭାବିଲା, ଭୋଳି ସାମୁଲ କଣ ଏ ବିପଦବେଳେ ମୋର ଭରସା ହେବ ନାହିଁ ? ନିଶ୍ଚୟ ହେବ; କିନ୍ତୁ ସେ ଦିନ ତାକୁ ମୁଁ ଯେଉଁ ଅପମାନ ଦେଇଥିଲି— ସେ କଣ ଆଜି ତାର ପ୍ରତିଶୋଧ ମୋ ଉପରେ ନେବ ? ବସାରେ ଟିକେ ମୁଣ୍ଡ ଗୁଞ୍ଜିବାକୁ ଜାଗା ଦେବ ନାହିଁ ? ମୋ ଦେହ ପାଇଁ କିଛି ଖର୍ଚ୍ଚ କରିବ ନାହିଁ ? ନକଲେ ତାରି ଗୋଡ଼ତଳେ ପଡ଼ି କ୍ଷମା ମାଗିବି । କହିବି, ଭୋଳି ଦାଦା ଅତୀତର ମାନ ଅପମାନ ସବୁ ଭୁଲିଯାଇ ମୋତେ ବଞ୍ଚାଅ । ସେ କଣ ତଥାପି ମୋତେ ଦୂରକୁ ଠେଲି ଦେବେ । ନାଁ ନାଁ ଭୋଳି ଦାଦା ସେମିତି କରିବେ ନାହିଁ । ବାପା ତାକୁ ମୋର ମଣିଷ କରିଛି । ସେ କଣ ଅତୀତକୁ ପାସୋରି ପକାଇବେ । ନାଁ ନାଁ କଦାପି ନୁହେଁ—ଭୋଳି ଦାଦା ସେପରି ଲୋକ ନୁହେଁ । ମୁଁ ଯିବି—ତାରି କତିକି ଯିବି ।

× × ×

ରସୁଲପୁର ଗାଁରେ ଆଜିକୁ ଘରଦିନ ହେବ ଲାଗିଛି ହଇଜା । କଣ୍ଡରା ସାହିରୁ ଦୁ’ ଜଣ—ତେଲି ସାହିରୁ ଦଶଜଣ ଗଲେଣି । ଏକାଦିନେ କାହ୍ନୁ ସାହୁର ସଂସାର ଶେଷ—ଘର ଖାଲି । ଆଗେ ତାର ଘରଣୀ—ତା ଦୁ’ଘଣ୍ଟାପରେ ଷୋଳ ବରଷର ବାହାହେଲା ଝିଅ—ତା ଘଣ୍ଟାକ ପରେ କାହ୍ନୁ ସାହୁ ନିଜେ । ସମସ୍ତେ ତାକ ହାକ ଆଖି ବୁଜିଲେ । ରସୁଲପୁର ଗାଁରେ ଚହଲି ପଡ଼ିଗଲାଣି । ଗାଁ ଲୋକେ ମେଳହୋଇ ଠାକୁରାଣୀ ଚଣ୍ଡୀ ଦେବୀଙ୍କ ନିକଟରେ କେତେ ଅର୍ଚ୍ଚନା କଲେଣି— ତଥାପି ହଇଜା ବନ୍ଦ ହେଉ ନାହିଁ—ଗ୍ଲାଲିଛି ।

ସଞ୍ଜ ଆସିବା ମାତ୍ରେ ଅନ୍ଧାର ଆଗରୁ ଗ୍ରାମପୁର ଗାଁରେ ଭାଙ୍ଗି ଜିବାଟ ପଡ଼ିଯାଏ । କେହିହି ଡର ପଦାକୁ ବାହାରନ୍ତି ନାହିଁ । ଆସ୍ତେ ଆସ୍ତେ ହଇଜା ଖଣ୍ଡେଇତ ସାହିକୁ ବ୍ୟାପିଗଲା । ନନ୍ଦ ଜେନାର ଭେଣ୍ଡିଆ ପୁଅଟା କାଲି ରାତିରେ ମରିଯାଇଛି ।

ନିଧି ପଧାନ ଏସବୁ ଦେଖି ତାର ଦୁର୍ବଳ ଦେହଟା ଅଜଣା ଭୟରେ ଥରି ଉଠେ । ଜମି ବିକାଳ ଦିନଠାରୁ ତାକୁ ସବୁବେଳେ ଭାବନା ଜର । ଚଇତା କଥା ଭାବି ଭାବି ଦେହଟା ବି ତାର ଝଡ଼ିଗଲାଣି । ଦିନ-ରାତି ସବୁବେଳେ ଚିନ୍ତା । ଆଗ ଚେହେରା ନାହିଁ । ତାର ଆଖିଗୁଡ଼ାକ ଭିତରକୁ ପଶିଗଲାଣି—ଶୁଖିଲା ମୁହଁ; ଯେପରି ଜୀବନ ନାହିଁ । ଯିଏ ଦେଖେ ସେ କୁହେ, ପୁଅକୁ ଝୁରି ଝୁରି ନିଧିଆ ମରିଯିବ ।

ଖଣ୍ଡେଇତ ସାହିରୁ ନଇତି ଗୋଟାଏ ଦୁଇଟା ମଣିଷ ହଇଜାରେ ମଲେ । ଚାରିଆଡ଼େ ଖାଲି କାନ୍ଦବୋବାଳି—ହାହାକାର । ନିଧି ପଧାନ ଦିନେ ବୋହୂକୁ ତାର ଡାକି କହିଲା, ଚାଲ ମା, ତୋତେ ଆଉ ମଧୁଆକୁ ତୋ ବାପଘରେ ଛାଡ଼ିଦେଇ ଆସିବି । ଆଉ ଏ ଯମପୁରୀରେ ତତେ ରଖାଇ ଦେବି ନାହିଁ । କନକ ମନାକଲା । କହିଲା, ନାଁ ବାପା, ତମକୁ ଛାଡ଼ି ମୁଁ କୁଆଡ଼େ ଯିବିନାହିଁ । ନିଧି ପଧାନ ହସିଲା—କରୁଣ ବ୍ୟର୍ଥତାର ହସ । କହିଲା, ପାଗଳୀ, ବୁଢ଼ା ହେଲିଣି, ମୋ ପରି ଗୋଟାଏ ଅଲୋଡ଼ା ଜୀବନକୁ ଛାଡ଼ିଯିବାକୁ ତତେ ଏତେ ଡର ! ବାପା ତୋର ତ ଦିନେ ମରିବ । କନକ ଆଖିରୁ ଝରି ପଡ଼ିଲା ଲୁହ । ନିଧି ପଧାନ ଚମକି ପଡ଼ି କହିଲା, ପାଗଳୀ କାନ୍ଦୁଚୁ । ଯାକୁ ମଣିଷ କରିଥିଲି ଖୋଇ ପେଇ ନିଜର ସ୍ନେହ ଦେଇ —ସେ ତ ମୋ ପାଇଁ ଟିକିଏ କାନ୍ଦିଲା ନାହିଁ । ଆଉ ତୁ ପର ଝିଅଟା—ତୁ ମୋ ପାଇଁ କାନ୍ଦୁଚୁ—କାନ୍ଦ । କିନ୍ତୁ ମା, ମୁଁ ଆଉ ବେଶିଦିନ ନୁହେଁ । ଯିବି —ଖୁବ୍ ଚଞ୍ଚଳ ମୁଁ ଏ ପୁରରୁ ବିଦା ହେବି ।

ଠିକ୍ ତା ଦିନକ ପରେ ଦିଇଟା ବେଳକୁ ନିଧି ପଧାନକୁ ହଇଜା ଧରିଲା । କନକ ଖାଲି ଭେ ଭେ ହୋଇ କାନ୍ଦିଲା । ନିଧି ପଧାନ ବ୍ୟଥାମିଶା ନରମ ଗଳାରେ କହିଲା, ବେଳକାଳ ମୋର ସରିଆସିଲା ମା—ଆଉ କାନ୍ଦି ଲାଭ କ'ଣ ? ପୁଅର ମୁହଁ ଆଉ ଦେଖି ପାରିଲି ନାହିଁ । ଉମିବୋଉ ଗଲା—ଚଇତା ମୋତେ ଭୁଲିଗଲା । ସାତ ପୁରୁଷର ଜମି ବିକିଲି ପେଟ ପାଇଁ, ଇଜ୍ଜତ ପାଇଁ ମା—କିନ୍ତୁ ତୋତେ ବୋହୂକରି ଆଣି ନଥିଲେଯେ ଆଣିଥିଲି ଲକ୍ଷ୍ମୀ ସୁନ୍ଦର ପ୍ରତିମା । ସେଇ ମୋର ଶାନ୍ତି ମା— ସେଇ ମୋର ଶାନ୍ତି । ତୋତେ ଦେଖି ମୁଁ ମରୁଛି—ମୋ ଘରର ଲକ୍ଷ୍ମୀକି ମୁଁ ଦେଖି

ମରିଚ, ଏହାଠୁ ବଳି ଭାଗ୍ୟ ମୋର କଣ ଅଛି ?  କନକ ଖାଲି କାନ୍ଦୁଥାଏ । ଦୁ' ଘଣ୍ଟା ପରେ ନିଧି ପଧାନର ପାଟି ପଡ଼ିଗଲା—ଗୋଡ଼ ହାତ ଅଚଳ ହୋଇଗଲା । ତା'ପରେ ସବୁ ଶେଷ—ଖାଲି ଅନ୍ଧକାର ।

ରାମ୍ପୁରର ସେଇ ମଶାଣି ଭୂଇଁରେ ଚିତା ନିଆଁ ହୁ ହୁ ହୋଇ ଜଳି ଉଠିଲା । ମଶାଣିର କଆଁବୁଦା କଡ଼ରୁ ଶୁଭିଲା ବିଲୁଆଙ୍କର କଲିଜା ଥରା ଚିତ୍କାର ହୁକେ······ ହୁଆ···ହୁଆ···



ଚଇତାକୁ ଦେଖି ଭୋଳ ସାମୁଲ ଚିହ୍ନି ପାରିଲା ନାହିଁ । ଏ କ'ଣ ସେଇ ଚଇତା—ନାଁ ତାର ଅଶରୀର ! ଚଇତା ଭୋଳ ସାମୁଲ କୋଡରେ ଭୋ ଭୋ ହୋଇ କାନ୍ଦି ଉଠିଲା । ତାର ହାତ ଧରି କହିଲା, ଭୋଳ ଦାଦା ମୋତେ ବଞ୍ଚାଅ । ତମେ ନ ଦେଖିଲେ ମୋର ବା କିଏ ଆପଣାର ଅଛୁ ! ଚଇତା ଆଖିରେ ଲୁହ ଦେଖି ଭୋଳ ସାମୁଲ ହୃଦୟଟା ତରଳିଗଲା । ଭାବିଲା, ଚଇତା ବାଟକୁ ଫେରିଛି—ସେ ଆଜି ତାର ପାପର ପ୍ରାୟଶ୍ଚିତ୍ତ ପାଇଁ ଦଉଡ଼ି ଆସିଛି । ଭୋଳ ସାମୁଲର ଅତୀତର ସ୍ମୃତି ମନେ ପଡ଼ିଲା । ଦିନେ ତା ପାଇଁ ଚଇତାର ବାପ ନିଧି ପଧାନ କ'ଣ ନ କରିଛି । ଆଜି ତା ପୁଅର ବିପଦବେଳେ ତାକୁ ଟିକେ ସାହା ଭରସା ହେବ ନାହିଁ ? ନାଁ ନାଁ ଭୋଳ ସାମୁଲ ଘୃଣା କରିବ ନାହିଁ—ଲୋକେ କଣ କହିବେ ? କହିବେ ଏହି ଭୋଳ ସାମୁଲଟା ଏଡ଼େ ସ୍ୱାର୍ଥପର, କୃତଘ୍ନ । ନିଧି ଭାଇ କଣ କହିବ । ଆରେ ସାମୁଲ ପୁଅ, ଘରେ ତୋର ଖାଇବାକୁ ନଥିଲାବେଳେ ତୋ ମୁହଁରେ ଆହାର ଦେଇ ମୁଁ ମଣିଷ କରିଛି—ତୋତେ ବଞ୍ଚାଇଛି । ଆଜି ତୁ ମୋ ପୁଅ ମୁହଁକୁ ଟିକେ ଅନେଇଲୁ ନାହିଁ ?

ଭୋଳ ସାମୁଲ ଖୁବଚନ୍ତ ଚଇତାକୁ ତାର ବସାରେ ସ୍ଥାନ ଦେଲା । ତା ପାଇଁ ପଇସା ଖର୍ଚ୍ଚ କରି ଡାକ୍ତର ଆଣି ଦେଖାଇଲା । ଆପଣାର ପରି ତାର କେତେ ସେବା କଲା ।

ଦିନବୁଡ଼ା ଗଡ଼ି ଚାଲିଲା—କେତେ ହସିଲା ସ୍ମୃତିମିଶା ବିରହ ବିଷାଦର ସୁଅରେ ଭାସି ଭାସି ।

ଚଇତା ଭଲ ହୋଇ ଆସିଲା । ଦିନେ ଚଇତା କହିଲା—ଭୋଲା ଦାଦା, ଏଥର ମୁଁ ଘରକୁ ଯିବି । ବାପାଙ୍କୁ ଅନେକ ଦିନ ହେଲା ନ ଦେଖି ମନଟା ମୋର ଅସ୍ଥିର ହେଉଚି । ଅତୀତରେ ବାପାଙ୍କ ମନରେ ମୁଁ ଯେଉଁ ଦୁଃଖ ଦେଇଚି—ତାର ପ୍ରତିଫଳ ଯଥେଷ୍ଟ ଭୋଗିଲିଣି । ଏଥର ମୋତେ ବିଦାୟ ଦିଅ । ଭୋଲା ସାମୁଲ ହସିଲା । କହିଲା, ଚଇତା କୁଆଡ଼େ ଥିଲା ତୋର ସେଦିନ ପିତୃସ୍ନେହ ! ଯୋଉଦିନ ତୋର ବୁଢ଼ା ବାପାର ଚିଠି ପାଇ ମୁଁ ତୋର କତିକି ଦଉଡ଼ି ଯାଇଥିଲି । ଆଜି ମନେ ପଡୁଚି —ବର୍ଷକ ପରେ । ସେମାନେ ମଲେଣି କି ଗଲେଣି କିଏ ଜାଣେ ? ମୁଁ ତ ପନ୍ଦର ଦିନ ହେଲା ଶୁଣିଲିଣି ଗାଁରେ ଭାରି ହଇଜା ଲାଗିଚି । ନିତି ଗାଁରୁ ଲୋକ ଘୋଷାରୁଚି —ଚାରିଆଡ଼େ କାନ୍ଦବୋବାଳି ।

ଚଇତା ଭିତରେ ଚମକି ପଡ଼ିଲା । କହିଲା, ସତେ କଣ ଦାଦା ଗାଁରେ ହଇଜା ଲାଗିଚି ? ଭୋଲା ସାମୁଲ କହିଲା, ହଁରେ ଚଇତା, ପଗ୍ରଣ ଷାଠିଏ ଲୋକ ମଲେଣି । ଚଇତା ଆଖି ଆଗରେ ଯେପରି ତାର ବାପା, ସ୍ତ୍ରୀର ମୁହଁ ଛଳ ଛଳ ହୋଇ ଦିଶିଲା । ସେମାନେ କାନ୍ଦୁଚନ୍ତି—ଆଉ କହୁଚନ୍ତି ଏଥର ଆମର ଛୁଟି । ରଣ୍ଡ ରଖ—ମଉଜ କର । ଗାଁ ମାଟି ନ ମାଡ଼ିଲେ ଆମର ଯାଏ କେତେ, ଆସେ କେତେ । ଚଇତା ଆଖିରେ ଲୁହ ଜକେଇ ଆସିଲା । କହିଲା, ଭୋଲା ଦାଦା ମୁଁ ଆଜି ଘରକୁ ଯିବି । ଭୋଲା ସାମୁଲ କହିଲା, ତୁ ପାଗଳ ହୋଇଗଲୁଣି କିରେ ଚଇତା । ଗାଁରେ ହଇଜା—ଯିବୁ କିପରି ? ଚଇତା କହିଲା, ହଁ ଦାଦା ମୁଁ ପାଗଳ ହୋଇଗଲିଣି—ଆମ ଗାଁ ମଶାଣି ଭୂଇଁ ମୋତେ ଡାକିଲାଣି । ମୁଁ ଯିବି—ଆଉ ମତେ ତମେ ବାଧା ଦେଇ ପାରିବ ନାହିଁ । ଚଇତା ଭୋ ଭୋ ହୋଇ କାନ୍ଦି ଉଠିଲା ।

ଭୋଲା ସାମୁଲ ଯେତେ ବୁଝାଇଲେ ଚଇତା ବୁଝିଲା ନାହିଁ । ସେଇଦିନ ଚଇତା ହାତରେ ଚାଳିଶ ଟଙ୍କା ଦେଇ ଘରକୁ ବିଦା କରିଦେଲା ।

ବନ୍ଧ ଉପରୁ ଗଡ଼ିଲେ ଗାଁ ଗୋହିରି । ଦି'କରରେ କିଆବୁଦାର ପାଚେରି—ତା' ପରେ ଆମ୍ବତୋଟା । ଚଇତା ଆମ୍ବତୋଟା ଗଛ ଗହଳି ପାରି ହୋଇ ଗାଁ ମୁଣ୍ଡରେ ଆସି ପହଞ୍ଚିଲା । ଗାଁ ମୁଣ୍ଡ ବାଉଁଶ ବୁଦା ଭିତରୁ ଗୋଟାଏ ଶିଆଳଟାଏ ବାହାରି ଆସି ଚଇତା ଆଗେ ଆଗେ ଦଉଡ଼ି ପଳାଇଲା । ଚଇତା ଚମକି ପଡ଼ିଲା । ଗାଁ ଭିତରେ ପଶିଲା ବେଳକୁ ତାକୁ ଯେପରି ମାଡ଼ି ମାଡ଼ି ପଡୁଥିଲା । କେହି ଗୋଟାଏ ଲୋକ ଦିଶୁନାହିଁ—ଖାଲି ଖାଁ ଖାଁ ଗୋଡଉଚି ।

କିଛି ବାଟ ଆସିଲା ପରେ କୁସୁନ ମଲିକ ସଙ୍ଗରେ ଚଇତାର ଭେଟ ହେଲା । କୁସୁନ ମଲିକ—ଜାତିରେ କଣ୍ଡରା ହେଲେ କଣ ହେଲା—ଭାରି ଭଲ ଲୋକ । ଗାଁରେ

ସମସ୍ତେ ତାକୁ ଆଦର କରନ୍ତି । କହନ୍ତି କୁସୁନଆ ପରି ଲୋକଟାଏ ମିଳିବ ନାହିଁ ।
ଚଇତାର ଭଙ୍ଗା ଦୁର୍ବଳ ଶରୀରକୁ ଦେଖି କୁସୁନଆ ଦୋ ଦୋ ଚହ୍ଲା ହେଲା । ଟିକିଏ ପରେ କହିଲା, ଆରେ ଚଇତା ଭାଇକି ମୁଁ ଚହ୍ନି ପାରୁନାହିଁ । ଓଲିକ ସାଆଁତେ !
ଚଇତା କୁସୁନଆକୁ ଦେଖି ପଚାରିଲା, କୁସୁନଆଁ, ଗାଁ ଖବର ସବୁ ଭଲ ତ ? ମୋ ବାପା କେମିତି ଅଛି ? କୁସୁନଆ ଚଇତା କଥା ଶୁଣି କହିଲା, ଗାଁ ଖବର ଆଉ କଣ ପଚାରୁଚ ଚଇତା ଭାଇ—ହଇଜାରେ ଅଧେ ଲୋକ ମରି ଯାଇଚନ୍ତି—ଗାଁ ଖାଲି ।
ତମେତ ଆସିଲ ନାହିଁ । କୁଆଡ଼େ ରହିଲ--ଘର ଦୁଆର ଏ ଗାଁ ମାଟିକୁ ଭୁଲି ବସି ସାଆନ୍ତେ ବି ତମକୁ ଝୁରି ଝୁରି ମରଣକୁ ସଦାଦିନେ ଡାକୁଥିଲେ । ସେ ବି ହଇଜାରେ ଆମ ସେଇ ମଶାଣି ଭୂଇଁରେ ଶୋଇଲେଣି ଆଜକୁ ପଚିଶଦିନ ହେବ--ନଘୋଡ଼ ନଦରେ ।

କୁସୁନଆ କଥା ଶୁଣି ଚଇତା ହାତରୁ ଗଣ୍ଠିର ଖସି ପଡ଼ିଲା । ତଳେ ବସି ପଡ଼ି ଭେ ଭେ ହୋଇ କାନ୍ଦି ଉଠିଲା । କହିଲା, କୁସୁନଆ ସତେ କଣ ମୁଁ ଆଉ ବାପାଙ୍କୁ ପାଇବି ନାହିଁ । ଚଇତା ଅଥୟ ହୋଇ କାନ୍ଦି କାନ୍ଦି ତଳେ ଲୋଟିଲା । ଚଇତାର ଦୁଃଖ ଦେଖି କୁସୁନଆ ଆଖିରୁ ଝରିଲା ଲୁହ ।

ଚଇତାର କାନ୍ଦଣା ଶୁଣି ଗାଁ ଲୋକ ଦଉଡ଼ି ଆସି ସବୁ ଜମା ହେଇଗଲେ ।
ସମସ୍ତେ କହିଲେ, ଆଉ ଟିକିଏ ଆଗରୁ ଆସିଲୁ ନାହିଁରେ ଚଇତା—ଟିକିଏ ବାପାକୁ ହେଲେ ପାଣି ଦେଇଥାନ୍ତୁ । ଚଇତାର ବେଦନାରେ ଗଛଲତା, ପଶୁପକ୍ଷୀ, ପାଣି, ପବନ, ମାଟି, ମଣିଷ ଭାରାକ୍ରାନ୍ତ ହେଇପଡ଼ିଲେ । ଚାରିଆଡ଼େ ଅଶ୍ରୁ ମଉଳା ଜୀବନରେ ଖାଲି ଗୋଟାଏ କରୁଣ ହାହାକାର ଖେଳି ବୁଲିଲା ।

ଖବର ପାଇ ନନ୍ଦିଆ ଦଉଡ଼ି ଆସିଲା । ନନ୍ଦିଆକୁ ଦେଖି ଚଇତା କୁଣ୍ଢେଇ ପକେଇ ଆହୁରି କାନ୍ଦିଲା । ନନ୍ଦିଆ କେତେ ବୁଝାଇ ଚଇତାକୁ ଶାନ୍ତ କଲା । ଚଇତା ପଚାରିଲା, ନନ୍ଦିଆ କନକ କୋଉଠି ଅଛିରେ ? ନନ୍ଦିଆ କହିଲା, ତୋ ବାପା ମଲାପରେ—ତାଙ୍କ ବାପଘର ଲୋକ ଆସି ନେଇ ଯାଇଚନ୍ତି--ତୋ ପୁଅ ସେଇଠି ଅଛି । କନକର ପୁଅ ହେଇଚି—ହଠାତ୍ ଚଇତା ଚମକି ପଡ଼ିଲା--ଜଳି ଉଠିଲା ଅନ୍ତରର ପାପୋର ସ୍ତୁପ । ଦିନେ ବାପା ଚିଠିରେ ଲେଖିଥିଲେ, ଚଇତା ତୋର ପୁଅ ହୋଇଚି । ଆଗରେ ଏକୋଇଶା--ନଷ୍ଟେ ଅରୁଟିଏ ହେଲେ ଆସିବୁ । ମାଧବୀ ସ୍ୱପ୍ନରେ ବିଭୋର ଥାଇ ସେ ଦିନ ବାପାଙ୍କ ଚିଠିକୁ ଭାବିଥିଲା ଭୁଲ--ମିଥ୍ୟା । ମୋତେ ଘରକୁ ନେବାକୁ ବୃଥା ଛଳନା । ଚିଠିକୁ ହସି ହସି ଚିରି ଟିକି ଟିକି କରି ଉଡ଼େଇ ଦେଇଥିଲା ।

ଆଜି ନତଆ କଥା ଶୁଣି ଭାବିଲା, ବାପା ତାର ମିଥ୍ୟା ନୁହେଁ—ଧ୍ରୁବ ପରି ସତ୍ୟ । ଭ୍ରାନ୍ତ ସେ ନିଜେ--ମରଣ ପରି ଅସ୍ପଷ୍ଟ । ଜୀବନ ଉପରେ ତାର ଚେତନାର ସ୍ପନ୍ଦନ ଖେଳିଗଲା ।

କିଣ ଭାବୁଚ ଚଇତା ଭାଇ, ଘରକୁ ଚାଲ । ଚଇତା ହସିଲା, ମଳିନ ଅଶ୍ରୁ ଧୂଆ ହସ । କହିଲା, କୁଆଡ଼େ ଯିବରେ ନତଆ--ସେଇ ଖାଲିଘର ଦେଖିବାକୁ ! ନାଁ ନାଁ ମୁଁ ସେଠିକି ଯିବିନାହିଁ । ଯାଉଚି କନକ କତିକି । ତାକୁ ନ ଦେଖିଲେ ମୁଁ ଆଉ ବଞ୍ଚି ପାରିବି ନାହିଁ । ନତଆ ଯେତେ ବୁଝାଇଲା--ଚଇତାଭାଇ, ଆଜିକି ଆମ ଘରେ ରୁହ, ଟିକିଏ ଦମ୍ ନେଇ କାଲି ପଛେ ନୂଆବୋଉଙ୍କ କତିକି ଯିବ--ମଧୁଆକୁ ଦେଖିବ । ଚଇତା ବୁଝିଲା ନାହିଁ । ସେ ଏଇକ୍ଷଣି ଯିବ--ଏକ ଜିଦ୍ ।

ଚଇତା ଉଠିଲା । ଆଗରେ ତାର ପଥ--କନକ ଡାକୁଚି । ସେ ଚାଲିଲା ତାର ଶ୍ୱଶୁର ଘର ପାଟପୁର ଗାଁ ଆଡ଼େ । ନତଆ ପଛରୁ କହିଲା, ନୂଆବୋଉଙ୍କୁ ନେଇ ଏଇ ଗାଁ ଭୂଇଁକି ଚଞ୍ଚଳ ଫେରି ଆସିବ ଚଇତା ଭାଇ—ଡେରି କରିବ ନାହିଁ ।

× × ×

ଦଧି ପଧାନ ମଲାପରେ କନକକୁ ତାର ବାପା ନେଇ ଆସିଥିଲା--ଝିଅ ତାର ସୁଖରେ ରହିବ । ଝୁରି ଝୁରି କ୍ଷୀଣ ହୋଇ ଯାଇଥିବା ଶୁଖିଲା ଦେହରେ ତାର ଜୀବନ ପଶିବ । ଦିର ମଉଳା ମୁହଁରେ ତାର ହସ ଫୁଟିଉଠିବ । କିନ୍ତୁ ବରଜୁ ରାଉତର ସେ ସ୍ୱପ୍ନ ଗୁଡ଼ାଇ ପରି ମିଳେଇଗଲା—ଗୋଟାଏ ଦୁଃଖମିଶା ଖଇଫୁଟା ଖରାର ଶୁଖିଲା ପରଶରେ ।

କନକ ଖାଲି ତାର ସ୍ୱାମୀ, ଶାଶୁ ଶ୍ୱଶୁରଙ୍କୁ ଝୁରି ଝୁରି ଦିନକୁ ଦିନ ପୋଡ଼ାକାଠ ପରି ଦିଶିଲା । ବାପ, ମା ଯେତେ ବୁଝାଇଲେ—କନ, ସବୁଦିନ କଣ ସମାନ ଥାଏ ? ଅନ୍ଧାର ପରେ ଆଲୁଅ ଆସେ—ସିମିତ ଦୁଃଖ ପରେ ସୁଖ ଆସିବ । ଆଖିରୁ ଲୁହ ପୋଛି ଦେ । ଦେଖ, ଜୀବନର ଅଶ୍ରୁତଳେ ବିଗତ ଦିନର ସବୁ ଦୁଃଖ ଯାଇଚି ଲିଭି । କନକ କିଛି ବୁଝେନା—ଖାଲି କାନ୍ଦେ ।

ଭାବି ଭାବି ଜରରେ ପଡ଼ିଲା । ବରଜୁ ରାଉତ ଜୀବନର ସବୁ ସୁଖ ସୁଆଦ ପଛରେ ପକେଇ ଝିଅ ପାଇଁ କେତେ ଯତ୍ନ କଲା । ସେ ଭଲ ହେବ—ଘର କରିବ । କିନ୍ତୁ ସବୁ ଚେଷ୍ଟା, ସବୁ ଯତ୍ନକୁ ବ୍ୟର୍ଥ କରି କନକ ଆଉ ରୋଗ କବଳରୁ ଉଠିଲା ନାହିଁ ।

ସେଦିନ ରାତି ଘଡ଼ିଏ ବେଳକୁ ଚଇତା ପହଞ୍ଚିଲା । ଚଇତାକୁ ଦେଖି ଶାଶୁ ଶ୍ୱଶୁର ତାର ଭୋ ଭୋ ହୋଇ କାନ୍ଦି ଉଠିଲେ । କନକ ସେତେବେଳକୁ ମରଣର ଦ୍ୱାର

ନିକଟରେ । ଚଇତା ଦଉଡ଼ିଗଲା । କନକକୁ ଜାବୁଡ଼ି ଧରି କହିଲା—କନ, ମୁଁ ଫେରି ଆସିଚି ! କନକ ଖାଲି ବ୍ୟର୍ଥତାର କରୁଣ ଆଖିରେ ଅନାଇ ଶେଷହସ ଟିକିଏ ହସି ଅସ୍ପଷ୍ଟ ସ୍ୱରରେ କହିଲା, ବ—ଡ଼—ଡେ—ରି—ରେ । ଆଉ କିଛି କହିପାରିଲା ନାହିଁ । ବେକଟା ତାର ମୋଡ଼ି ହୋଇ ତକିଆ ତଳକୁ ଗଡ଼ି ପଡ଼ିଲା । ସବୁ ଶେଷ । ଚଇତା ଭେଁ ଭେଁ ହୋଇ ରଡ଼ି ଛାଡ଼ିଲା ।

ପାଟପୁର ଗାଁ ମଶାଣିରେ କନକକୁ ଚିରଦିନ ପାଇଁ ଶୋଇ ଦେଇ ଆସିଲେ । ଚଇତା ପାଗଳ ପରି ସେଇ ମଶାଣି ଆଡ଼କୁ ଛୁଟିଲା—ଡାକି ଡାକି—କନକ ! କନକ ! ଗାଁ ଲୋକ ପଛରେ ତାର ଦଉଡ଼ିଲେ ତାକୁ ଫେରାଇ ଆଣିବାକୁ ।

ଯେ ଯାଏ ଦାଗଦିଆ ସେଇ ନିବୁଜ ରାଇଜକୁ, ସେ ଆଉ ପୁଣିଥରେ ଫେରେ ନାଁରେ ଚଇତା—ସେ ଆଉ ପୁଣି ଥରେ ଫେରେନା !



ଦିନ ଆସି ଘଡ଼ିଏ ହେଲାଣି । ଦୂରଆଡ଼େ ବଗୁଲିଆ ହେଇ ପଡ଼ିଲାଣି କଅଁଳ ଆଲୁଅ । ନଡ଼ିଆ ଗଛ ପତର ଉପରେ ସୂର୍ଯ୍ୟ କିରଣ ପଡ଼ି ଚକ୍ ଚକ୍ କରୁଚି । କାଉଟା କା କା କରି ଘର ମଥାନ ଉପରେ ରାବ ଛାଡ଼ୁଚି ।

ନିତଆ ବେଳଏ ପଖାଳ ନେଇ ଖାଇ ବସିଚି । ନଯ୍ୟମା କଡରେ ବସିଛି । ମଝିରେ ମଝିରେ କେତେ ସୁଖ ଦୁଃଖର କଥା ଚାଲିଚି । ହଠାତ୍ ଚଇତା ଯାଇଁ ଘର ଭିତରେ ପହଞ୍ଚିଲା । କୋଳରେ ତାର ଶିଶୁ । ଚଇତାକୁ ଦେଖି ନିତଆ ନଯ୍ୟମା ଦୁହେଁ ଛିଡ଼ା ହେଲେ । ନଯ୍ୟମା ଟିକେ ଲାଜକରି ଆଡ଼ ଆଡ଼ ହେଲା । ନିତଆ ମୁହଁଟା ଧୋଇ ପଚାରିଲା—ଚଇତା ଭାଇ, ତମେ ଏକଲା—ନୂଆବୋଉ କାହିଁ ?

ଚଇତା ଆଖିରେ ଲୁହର ଝର ଝର ମେଘ । ନଯ୍ୟମା କହିଲା, ଚଇତା ଭାଇ ତମେ କାନ୍ଦୁଚ ?

ଚଇତା କହିଲା—ହଁ ନଯ୍ୟମା ମୁଁ କାନ୍ଦୁଚି । ବାପା ଯାଇଚି—କନକ ବି ମରି ଯାଇଚି—ଆଉ ରହିଲା ଏଇ ହତଭାଗା ମା ଛେଉଣ୍ଡ ସନ୍ତାନ । ନିତଆ ନଯ୍ୟମା ଦୁହେଁ ଚମକି ପଡ଼ିଲେ । ନୂଆବୋଉ ମରି ଯାଇଚି—ଆଖିରୁ ତାଙ୍କର ଝରି ପଡ଼ିଲା ଲୁହ । ଚଇତା କହିଲା—ନଯ୍ୟମା, ଏ ହତଭାଗା ମା ଛେଉଣ୍ଡକୁ ତୁ ରଖ । ଆଳୁ ମଣିଷ କର । ତୁ ଆଳୁ ପାରିବୁ ନଯ୍ୟମା—ଏ ବିଶ୍ୱାସ ମୋର ଅଛି । ବୋଉ ଯାଇଚି—ବାପା ଯାଇଚି, କନକ ବି ଗଲା—ଏଥର ଏ ହତଭାଗାକୁ ତୋ ହାତରେ ଦେଲେ ମୋର ଛୁଟି—ମୁଁ ବି ଯିବି । ନିତଆ ପଚାରିଲା—କୁଆଡ଼େ ଯିବ ଚଇତା ଭାଇ ? ଯୁଆଡ଼େ ଇଚ୍ଛା ସେଆଡ଼େ ଚାଲିଯିବି । ଆଉ ଏ ନିର୍ଲଜ ଜୀବନକୁ ନେଇ ଏଠିକି ଫେରି

ଆସିବ ନାହିଁ । ଆକୁ କୋଳରେ ରଖ ନୟନ୍ନା । ନୟନ୍ନା ମଧୂଆକୁ କୋଳକୁ ନେଲା ।

ନଡଆ କହିଲା—ଚଇତା ଭାଇ, ଏଇ ଗାଁ ମାଟିରେ ତମେ ମଣିଷ ହେଇଚ । ଏଇ ଗାଁ ମାଟିରେ ତମର ପୂର୍ବପୁରୁଷ ଆସିଚନ୍ତି—ପୁଣି ଯାଇଚନ୍ତି । ସେଇ ମାଟି ପଡ଼ିଚ । ସେଇ ମାଟିରେ ତମର ବାପା ତମକୁ ମଣିଷ କରି ଆଖି ବୁଜିଛନ୍ତି, ତମେ ମଣିଷ ହେଇଚ । ବାପାଙ୍କର ନାଁ ରଖିବ—ଘର କରିବ । କିନ୍ତୁ ତମେ ଆଜି ଯିବ କୁଆଡ଼େ ? ତମ ବାପାଙ୍କର ଇଚ୍ଛା ପୂରି ନାହିଁ । ମଲାବେଳେ ସେ ମନ ଖୋଲି ହସି ହସି ମରି ପାରି ନାହାନ୍ତି । ତମେ ଆଜି ପୁଣି ନୂଆ କରି ଘର କଲେ—ସେ ସ୍ୱର୍ଗରେ ଥାଇ ବି କେତେ ଖୁସି ହେବେ ।

ଚଇତା କହିଲା, ମୁଁ ଦୁର୍ବଳ ନଡଆ । ଆଉ ମୋର ଦୁନିଆରେ ଅଛି କିଏ ? ମିଛରେ କାହିଁକି ଭୁଛା ଅହମିକାରେ ପଡ଼ି ରହିବ ? ନଡଆ କହିଲା, କିଏ ନାହିଁ ? ଅଛି ତୋର ପୁଅ ମଧୂଆ—ଯାକୁ ଲୋକେ କେତେ ପୁଣ୍ୟ କରି ଲୋଡ଼ିଲେ ବି ପାଉ ନାହାନ୍ତି । ଅଛି ତୋର ଘର ଦୁଆର—ପିତୃ ପୁରୁଷର ମାଟି—ଆଉ ସୁନା ପରି ଜମି ମାଣେ । ଏହି ଦେଖ ଚଇତା, ତୋର ସେଇ ଶ୍ରେଷ୍ଠ ଶ୍ରେଷ୍ଠ ଧାନ କିଆରି କିମିତି ଏତେ ଦିନ ପରେ ତୋତେ ଦେଖି ହସି ଉଠୁଚନ୍ତି—ଆଉ ତୋତେ ହାତ ଠାରି ଡାକୁଚନ୍ତି । ତୁ ମାଟିର ଡାକ ଏଡ଼ି ଦେଇ ପାରିବୁ ? ଚଇତା ଆଖି ଆଗରେ ଭାସି ଉଠିଲା—ସକାଳର ସୂରୁଯ ଉଠୁଚି—ଗହଳିଆ ଝଙ୍କା ବରଗଛ ମଥାନରୁ । କେତେ ଜାଠକା ଚଢ଼େଇ ଉଡ଼ି ବୁଲୁଚନ୍ତି । ସେ ମାଟି ସାଙ୍ଗରେ ମିଶି ଖଟୁଚି । ଧାନ ଗଛ ଉପରେ ପବନ ପହଁରି ପହଁରି ଖେଳୁଚି । ମାଟିରେ ତାର ସୁନା ଫଳଚି । ବିଦେଶର ସେଇ କଳଘରଠାରୁ କି ଆରାମ ଲାଗୁଚି ଏଇ ଗାଁ ମାଟି ! ନାହିଁ ଏଠି ମାଲିକର ନାଲି ଆଖି —କଟୁ ବଚନ । ଆସୁ ନାହିଁ ଭାସି ପବନ ସାଥିରେ ମାଟିଆ ବୁରୁଜର ସେଇ କୁଳିବସ୍ତିରୁ ପଚା ଗନ୍ଧ । ନାହିଁ ଏଠି ମଶାର ଜଙ୍ଗଲ । ସେ ଖଟୁଚି—ଖାଉଚି—ବେଶ୍ ସୁଖରେ ଅଛି । ମଧୂଆ ତାର ମଣିଷ ହେଉଚି । ବାପା ତାର ହସି ହସି କହୁଚି— ଚଇତା ମୋର ଫେରି ଆସିଚି ଏଇ ଗାଁ ଭୂଇଁକୁ—ପଧାନ ବଂଶର ଦୀପ ଲିଭି ନାହିଁ— ଜଳୁଚି । ମଧୂଆର ଦାନୁ ଦାନୁ ଖେଳ ଦେଖି କନକ ଦୂରରେ ହସୁଚି । କହୁଚି—ତମେ ମୋତେ ଭୁଲି ଯାଇ ନାହଁ ସ୍ୱାମୀ……ମରିଗଲା ପରେ ବି ତମେ ମୋତେ ସ୍ମୃତିର ଦେଉଳ ତୋଳି ବସାଇ ରଖିଛ । ସେଇ ମୋର ସ୍ୱର୍ଗ, ସେଇ ମୋର ଶାନ୍ତି ।

ଚଇତା ନଡଆକୁ ଆବେଗରେ କୁଣ୍ଢାଇ ପକାଇ କହିଲା, ମୁଁ ରହିବିରେ ନଡଆ— ରହିବ । ଆରେ ଏଇ ଗାଁ ମାଟିର ଡାକ ନ ଶୁଣି ମୁଁ ଯିବି କୁଆଡ଼େ । ବାପା, ବୋଉ

କନକର ସ୍ମୃତି ଏଇ ଗାଁ ମାଟି ସାଙ୍ଗରେ ମିଶି ରହିଛି । ଏଇ ଗାଁରେ ବାପା ମୋତେ ବଡ଼ କରିଛି । ଦରକାର ନାହିଁ ମୋର ଦୂର ପରବାସ — ଦରକାର ନାହିଁ ମୋର ଧନ ଦଉଲତ । ମୁଁ ଏଇଠି ରହିବି — ପଧାନ ବଂଶର ନାଁ ରଖିବି । ମୁଁ ରହିବି ନିତିଆ, ରହିବ — କୁଆଡ଼େ ଯାଇ ପାରିବ ନାହିଁ । ନିତିଆ, ନୟନା ଆଖିରୁ ଧାର ଧାର ଆନନ୍ଦର ଅଶ୍ରୁ ଝରି ପଡ଼ିଲା ।

ଚଇତା ଦେଖିଲା, ଅତୀତର ସବୁ ଦୁଃଖ ଅନ୍ଧକାର କାଟି ସୁଖର ନୂଆ ସୂର୍ଯ୍ୟ ଦୀପ ଜଳି ଉଠୁଛି । ଆଲୁଅର ଶୀତଳ ଅମୃତ ପରଶ ଜୀବନକୁ କରୁଛି ସ୍ନିଗ୍ଧ — ସରସ — ସୁନ୍ଦର ।

କବିତାଭବନ, କଟକ-୩

ରଚନାକାଳ—୧୯୫୧ ମସିହା

ଏଇ ଝଡ଼ ଆସେ
ସାଙ୍କେତିକ ଚିହ୍ନ ସମ ପ୍ରଚ୍ଛନ୍ନ ଆକାଶେ
ବିଦ୍ୟୁତର କୁଟିଳ ସ୍ୱାକ୍ଷର
ସେ କି ବିନ୍ଦୁ ବିପ୍ଳବର ଆଦ୍ୟ ସ୍ୱୟମ୍ବର—
ଅଗ୍ନି ବରମାଲ୍ୟ, ଆଜି ପ୍ରାନ୍ତରେ ପ୍ରାନ୍ତରେ
ଧୂଳିର ଅଞ୍ଜଳି ଭରି ପୃଥିବୀକି
ଦିଏ ଲାଜାଞ୍ଜଳୀ, ଏ ଝଡ଼ରେ
ବ୍ରଜର ବଂଶୀ ବାଜଇ ଆକାଶ କୁଞ୍ଜିମେ
ଧ୍ୱଂସ ଚିହ୍ନ ଚୁମେ ।

ଏଇ ଝଡ଼ ଗଲେ
ଶାଖାଚ୍ଛିନ୍ନ ଫୁଲ ଭାସି ଚଳେ
ପୂର୍ବାପରସ୍ଥାନ ଏକ ଇତିହାସ ତାର
ହଜି ଅଛି, ଶୁଭେ ଖାଲି ଝଡ଼ର ଚିତ୍କାର ।
ଏ ଲଗ୍ନରେ ନାହିଁ ଆଜି
ନୀଡ଼ାଶ୍ରୟୀ ପକ୍ଷୀର କାକଳୀ
ଭ୍ରମର ଫେରିଚି ଦୂରେ, କାନ୍ଦେ ବନସ୍ଥଳୀ
ଝରିଫୁଲ (ଛିନ୍ନ ଆୟୁ ତାର)
କେଉଁ ବିସ୍ମୃତିର ଗର୍ଭେ
ରଚେ ଏଇ ଝଡ଼େ ଅଭିସାର !

ବିନୋଦଚନ୍ଦ୍ର ନାୟକ, ଏମ୍. ଏ.

●

ଆକାଶରେ ଫୁଟି ଉଠିଛ ଅସୁମାରି ତାରା । ଗ୍ରହ ହସୁଚ । ଘଡ଼ିକ ପରେ ପୁଣି ହଜି ଯାଉଚ—ଦିଗ ଦିଗନ୍ତରରେ ଝଡ଼ର ସୂଚନା । ପବନ ବେଗି ବେଗି ପିଟୁଚ । ଘର ଦୁଆର ମଣିଷ ସଭିଙ୍କ ଧରଣୀକୁ ରସାତଳକୁ ଠେଲି ଦେବ । ଅନ୍ୟାୟ, ଅତ୍ୟାଚାର, ଭଲ ପାଇବାର ପ୍ରତିଦାନରେ ବିଷ । ଜୀବନଟା ହୁ ହୁ ହୋଇ ଜଳି ଉଠୁଚ । ଜଳି ବି ପୋଡ଼ୁନାହିଁ—ଲିଭି ଯାଉଚ । ପୁଣି ଶୀତଳ । ଚାରିଆଡ଼େ ଜୋତ୍ସ୍ନାର ବିକାଶ—ଧରଣୀ ସୁନ୍ଦର ।

ମଣିଷ ଭୁଲୁଚ । ଖସଡ଼ା ପଥ—ଭେଳିକି ଦୁନିଆ । ସେମିତି ଅତି ଆଦରରେ ଗଢ଼ା ମୋର "ପୁନି"ର ଜୀବନରେ ଆସିଚ ଭେଳିକି, ତା'ପରେ ପ୍ରବଳ ଝଡ଼ । ଝରାଫୁଲ ପରି ସେ ଝୁରି ଝୁରି ଚାଲିଚ ତା' ଯାତ୍ରାର ଅମଡ଼ା ଛନ୍ଦହୀନ ପଥରେ । ମରଣର ଦ୍ୱାର ନିକଟରେ ପହଞ୍ଚି ବି ଜୀବନର ମାୟା ତୁଟେ ନାହିଁ । କିଏ ଜାଣେ ତା' ଯାତ୍ରାର ଶେଷ କେଉଁଠି ?

●



ସାଢ କଣରେ କଣେ ଅଛ ।

ସେ ଦନ ପାହାନ୍ତା ପହରୁ ବୋଉ ମୋତେ ଉଠାଇ ଦେଲା । କହିଲା, ପୁନଲୋ ଉଠ୍, ଉଠ୍, ଆଜ ପରା ମହାଜନ ଘର ପାଇଟିକୁ ଯିବାକୁ ହେବ । ଆଉ କେଇଟା ଦନ ଗଲେ ଦଶ'ରା । ମହାଜନଘର ପରବ । କେତେ ଲୋକ ଆସିବେ ଯିବେ । ଘର ଖାଲ ଆନନ୍ଦରେ ଉଚ୍ଛୁଳ ଉଠିବ । ଦ ଦ'ଟା ଖଞ୍ଜା—ଲିପାପୋଛା କେତେ ପାଇଟି । ମୁଁ ଏକଲା ଆଉ ପାରୁନ—ବଳ ବୟସ ଗଲଣି । ବୁଢ଼ୀ ହେଲାଠୁ କଥା ସରଲା, ଭରବରକ ବାସି ପାଇଟି ସାର ଗୁଲ ।

ନଦ ମଲ ମଲ ଆଖିରେ ଉଠିଲ । ଆଉ ଟିକିଏ ଘାଲ ପାର ଶୋଇବାକୁ ମନ ହେଉଥାଏ । କନ୍ତୁ ବୋଉର ଡାକ ଶୁଣି ଅଳସମାର ଉଠି ବାହାରକୁ ଆସିଲ । ସେତେବେଳକୁ ରଜନୀରାଣୀର ନଦ ଭଲ କର ଭାଙ୍ଗ ନଥାଏ । କାଲୁଆ ଶୀତ ପବନଟା ବହ ଆସୁଥାଏ । ଦେହ ମୁଣ୍ଡରେ ଲୁଗା ସଜାଡ଼ ଦାନ୍ତଟା ଓଲାଇ ବସିଲ । ଛେରା ପାଣି ପକାଇ ଗଲ ବାସନ ମାଜବାକୁ । ବାସନ ଦ'ଖଣ୍ଡ ମାଜ ଦେଇ ଘରଭିତରୁ ବାହାର ଯାଏ ସବୁ କାମ ଘଡ଼କରେ ସାରଦେଲ ।

ସେତେବେଳକୁ ବାସୀ ଭଗ୍‌ଫୁଲ ମଉଳ ଝଡ଼ ପଡ଼ଲଣି । ସକାଳ ସୂରୁଯର କଅଁଳ ଆଲୁଅ ଆମ ଘର ମଥାନ ଛୁଇଁ ଓଳାତଳେ ବଗ୍ରାଡ଼ ହୋଇ ପଡ଼ଲଣି । ନଡ଼ିଆ ଗଛ ଉପରେ କାଉଗୁଡ଼ା ବସି କା, କା, ରାବ ଗୁଡ଼ୁଥାନ୍ତି । ବୋଉ କହିଲା, ପୁନଲୋ ଆସୁ ଆସୁ ଯାଇଁ କେତେବେଳ ହେବ, ଦଟା ପଖାଳ ଖାଇ ଯିବା । ଲଗେଇ

ଖାଇବାକୁ କିଛି ନଥାଏ ବୋଲି ମନଟା କାହିଁକି ଆଗୋଉ ନଥାଏ । ବୋଉ ପୁଣି କହିଲା, ଯା କାଲି ଯୋଉ ବାଇଗଣ ଆଣିଥିଲ ସେଥିରୁ ଦି'ଟା କେଉଟ ସାହିରୁ ପୋଡ଼ିଆଣ । ସତକୁ ସତ ଡେରିହେବ ଜାଣି ବୋଉ କଥାରେ ରାଜିହୋଇ ବାଇଗଣ ଦି'ଟା ପୋଡ଼ି ଆଣିଲି । ପଖାଳ କଂସାଏ ବାଢ଼ି ବୋଉକୁ ଖାଇବାକୁ ଡାକିଲି । ଦିହେଁ ସାଙ୍ଗହୋଇ ଦି'ଟା ଖାଇଲୁ । ଟୁନି ଆସି ଖାଇବ ବୋଲି ବୋଉ ପାଖରେ ଅଝଟ ଲଗାଇଲା । ଟୁନି ମୋର ସାନଭାଇ—ବୋଉର କୋଡ଼ପୋଛା ପୁଅ । ବୋଉ ମୁଠି ଦିଟା ଆଣି ଟୁନିକୁ ଦେଲା । ଟୁନି ଖାଇ ଗୁହାଳୀକି ଚାଲିଗଲା । ଆମେ ଦିହେଁ ମହାଜନ ଘର ମୁହାଁ ଧରିଲୁ ।

ଗାଁର ମଝି ରାସ୍ତା ଲମ୍ବି ଯାଇଛି । ଦି'କଡ଼କୁ ଦି'ସାହାରି ଘର । ଦଡ଼ଗାଁ—ସବୁ ଜାତିର ଲୋକେ ବାସ କରନ୍ତି । ଆମଘର ପରେ ଦି'ଘର ଛାଡ଼ିଲେ ବ୍ରାହ୍ମଣ ସାହି । ତା କଡ଼କୁ ଖଣ୍ଡେଇତ ବସ୍ତି—ମହାଜନ ଘର । ଜଗବନ୍ଧୁ ରାଉତରାୟ—ବୁନିଆଦି ଘର । ଧନରେ ଯେମିତି—ମାନରେ ସେମିତି । ଗାଁରେ ସମସ୍ତେ ରାଉତରା ଘରକୁ ଖାତିର କରନ୍ତି । ଜଗବନ୍ଧୁ ରାଉତରା ବାପ ନୀଳମଣି ରାଉତରା । ନୀଳମଣି ଚାରି ଭାଇ । ନୀଳମଣି ସବା ସାନ । କିନ୍ତୁ ସେ ବର୍ଷ ଝାଡ଼ାବାନ୍ତି ହେଲା ଯେ ସମସ୍ତେ ଗୋଟି ଗୋଟି ହୋଇ ଗଲେ ମରି । ଆଗେ ଦାମୋଦର, ଦି'ଦିନ ପରେ ସୁଧାକର, ତା'ଚାରିଦିନ ପରେ କୁଳମଣି । ଗୋଟି ଗୋଟି ହୋଇ ଡାକି ହାକି ଆଖି ବୁଜିଲେ; ଏକା ରହିଲା ନୀଳମଣି ରାଉତରା । ରାଉତରାର ଗୋଟିଏ ପୁଅ ଜଗବନ୍ଧୁ—ଆଉ କିଛି ନାହିଁ । ଷାଠିଏ ବରଷର ବୁଢ଼ା ନୀଳମଣି ରାଉତରା । ଆରବରଷ ଅଶିଣ ମାସରେ ଆଖି ବୁଜିଲା । ବୁଢ଼ା ଭାରି କୃପଣ । ପଇସାଟିଏ କାହାରିକୁ ଛାଡ଼ିବ ନାହିଁ । କିନ୍ତୁ ଜଗବନ୍ଧୁ ରାଉତରା ସେପରି ନୁହେଁ । ଦୟାବନ୍ତ ଲୋକ । ପରକୁ ଆପଣାର କରିବାରେ ସିଦ୍ଧହସ୍ତ । ରାଉତରା ସ୍ତ୍ରୀଟି ମଧ୍ୟ ସେହିପରି । ପର ଦୁଃଖ ଦେଖିଲେ ତା' ଆଖିରୁ ଆପେ ଆପେ ଲୁହ ଝରିପଡ଼େ ।

ବ୍ରାହ୍ମଣ ସାହି ପାର ହୋଇ ଆସିଲା ପରେ ରାଉତରା ଘର ଡେଙ୍ଗା ନଡ଼ିଆ ଗଛ ଦିଶିଲା । ବୋଉ ଆଗେ ଆଗେ ଚାଲିଥାଏ—ମୁଁ ପଛରେ । ମହାଜନ ଘର ପାଖରେ ପହଞ୍ଚିଲୁ । ରାଉତରା ବୁଢ଼ା ଦାଣ୍ଡ ପିଣ୍ଡାରେ ବସିଥାଏ—ପାଖରେ ତାଙ୍କ କୋଠିଆ ମହନ୍ତି । ମହନ୍ତିକୁ କଣ ବୁଝା ପଚାରୁଥାଏ । ବୋଉ ଓ ମୁଁ ମୁଣ୍ଡରେ ଓଢ଼ଣା ଦେଇ ବାଟ ଭାଙ୍ଗି ତାଙ୍କ ସେପାଖ ଖଞ୍ଜାକୁ ଗଲୁ । ମାଉସୀ (ରାଉତରା ସ୍ତ୍ରୀ) କହିଲେ, ଟୁନିବୋଉ ସାଥିରେ ସେ'ଟି କିଏ ? ବୋଉ କହିଲା, ସେ ପରି ପୁନି । ମାଉସୀ ହସିଲେ । କହିଲେ, ଆଲୋ ପୁନିକି ଚହ୍ନିପାରୁ ନାହିଁ—ଏତେ ବଡ଼ ହୋଇ-ଗଲାଣି ! ଆଇଲୁ ଝିଅ ଭଲ କରି ତୋତେ ଦେଖେ । ମୁଁ ଯାଇ ମାଉସୀଙ୍କ ଗୋଡ଼-

ତଳେ ମୁଣ୍ଡିଆ ମାରଲି । ମାଉସୀ କହିଲେ, ସତେ ଟୁନବୋଉ ପୁନକି ଦେଖିଲେ ତୋ ଝିଅ ବୋଲି କେହି କହିବେ ନାହିଁ । ରୂପ ଯେମିତି—ସାକ୍ଷାତ ଲକ୍ଷ୍ମୀଟି ପରି । ମାଉସୀଙ୍କ କଥା ଶୁଣି ମୋର ଅନ୍ତର ଗର୍ବରେ ଫୁଲି ଉଠୁଥାଏ । ବୋଉ କହିଲେ, ଏକଲି ଏତେବଡ଼ ଖଞ୍ଜା ଲିପାପୋଛିକୁ ପାରିବି ନାହିଁ ବୋଲି ପୁନକୁ ନେଇ ଆସିଲି । ମାଉସୀ କହିଲେ, ହଉ ଚଞ୍ଚଳ ଚଞ୍ଚଳ ହାତ ଦେଲେ ଆଜି ଏ ପୁରୁଣା ଖଞ୍ଜା ସରିଯିବ । ଏତିକି କହି ମାଉସୀ ଘରଆଡ଼େ ଗଲେ । ଆମେ ଦୁହେଁ କାମରେ ଲାଗିଲୁ ।

ଷୋଳ ବରଷର ଝିଅ ହେଲିଣି, ଏଠି କେବେ ଆଗରୁ ଲିପାପୋଛି କରି ଆସିନାହିଁ । ହତଭାଗୀ ତ ମୁଁ—ପିଲାବେଳେ ବାପାକୁ ଖାଇଲି ମୋ ଜନ୍ମ ହେବା ସାତ ବରଷ ପରେ । ଟୁନ ସେତେବେଳେ ବୋଉ ପେଟରେ ଥାଏ । ହଠାତ୍ ଦିନେ ସଞ୍ଜ-ବେଳେ ବାପାଙ୍କୁ ଜର ଆସିଲା । ସେହି ଦିନଠୁ ସେହି ଜର ବଢ଼ିବାରେ ଲାଗିଲା । ବୋଉ ଯେତେ ଯୁଆଡ଼ୁ ଔଷଧ ଆଣିଦେଲା, କିଛି ହେଲା ନାହିଁ । ଦିନେ କଳା ଗର୍ଜୁଚି, ଅନ୍ଧାର ରାତି । ବାପା ଚିରଦିନ ପାଇଁ ଆଖି ବୁଜିଲେ । ବୋଉ କୁହେ ସେଦିନ ରାତି ଅନ୍ଧାର ପରି ସେ ଆଉ କେବେ ଏପରି ଅନ୍ଧାର ଦେଖିନାହିଁ ।

ବାପା ଗଲେ ଆମେ ହେଲୁ ଅନାଥ । ନିଜ ଦାଦି ସିଏ, ସେ ପୁଣି ସାତପର । ବାପାଙ୍କ ଶିରି ଦେଖି ପାରନ୍ତି ନାହିଁ । ଆଖି ବୁଜିଲା ବେଳେ ବାପା କହିଲେ ଦାମ ! ମୋର ତ ଜୀବନ ଦୀପରୁ ତେଲ ସରିଲା—ଆଉ ବଞ୍ଚିବି ନାହିଁ । ପୁନବୋଉ, ପୁନ ତୋତେ ଲାଗିଲା । ବାପା ଗଲା ପରେ ସେ ଆମକୁ ନିଜର କରିବେ କଣ ଓଲଟି ଦାଉ ସାଧିବାକୁ ଲାଗିଲେ । ଖୁଡ଼ୀ ସିଏ—ଖୁଡ଼ୀ ତ ନୁହେଁ—ମୁଁ କହେ ରାକ୍ଷସୀ । ସିଏ ଯେଉଁ ଦିନଠୁ ଘରେ ଗୋଡ଼ ଦେଲା—ସେହି ଦିନଠୁ ଘର ଭାଙ୍ଗିବାର ଖିଅ ଯୋଡ଼ିଲା । ବାପା ଦାଦାଙ୍କୁ ଭାରି ଭଲ ପାଆନ୍ତି । ଦାମଦାଦା ମଧ୍ୟ ସେମିତି ବାପାଙ୍କୁ ଭାରି ଭକ୍ତି କରନ୍ତି । କିନ୍ତୁ ଖୁଡ଼ୀ ଆସିବା ପରେ ଦାମଦାଦା ବଦଳି ଗଲେ । ଭରସା—ସିଏ ସାତ ପର, ସିଏ ନିଜର ହେଲା । ଅନ୍ତଫାଡ଼ ମା' ଯାକୁ ଜନ୍ମ ଦେଇଛି—ନିଜ ରକ୍ତର—ସେଇ ଭାଇ ନିଜର ହେଲା ନାହିଁ । ବୋଉର ଖୁଡ଼ୀର ପଡ଼ିଲା ନାହିଁ । ତା ପରେ ଦିନେ ଘର ଭାଙ୍ଗିଲା । ଦୁହେଁ ହେଲେ ଅଲଗା—ଭିନେ । ବାପା ମରିବା ଚାରି ମାସ ପରେ ଟୁନ ଜନ୍ମ ହେଲା । ଟୁନକୁ ଦେଖି ବୋଉ ବାପାଙ୍କୁ ହରାଇବା ଦୁଃଖ ଭୁଲିଲା । ଆମର ତେଲି ଘର । ଗରିବ ଆମେ—କାହାରି ଭଲ ମନ୍ଦରେ ନ ଥାଉ । ରାଉତରି ଘର ମାଉସୀ ବୋଉକୁ ଭାରି ଭଲ ପାଆନ୍ତି । ଭଲ ମନ୍ଦରେ ମାଉସୀ ଆମକୁ ସାହା ହୁଅନ୍ତି । ବାପା ମଲା ପରେ ସେହି ଆମର ନିଆଶ୍ରୀ ଜୀବନର ଭରସା ।

ବୋଉ ଖଞ୍ଜା ବାହାରେ ଲିପୁଥାଏ । ମୁଁ ଥାଏ ଭିତରେ । ଆଉ ଘଡ଼ିକ ପରେ ଲିପା ସରିଯିବ । ବେଳକୁ ଅନାଇଲି କଅଁଳ ଗାଧୁଆ ବେଳ ହେବ । ତର ତର ହୋଇ କାମରେ ହାତ ଦେଲି । ବୋଉକୁ ଡାକି କହିଲି, ଚଞ୍ଚଳ ହାତ କର—ଘରକୁ ଯିବା । ଝୁନ ଆସିବା ବେଳ ହେଲାଣି । ଲିପି ଚାଲିଥାଏ, କେତେବେଳେ ଦେହ ମୁଣ୍ଡରୁ ଲୁଗା ଖସି ପଡ଼ିଛି ସେ ଆଡ଼କୁ ନଜର ନାହିଁ; ଲିପି-ସାରି ପିଣ୍ଡାରୁ ଓହ୍ଲାଇଲା ବେଳକୁ ହଠାତ୍ ଗୋଟିଏ ଗୌର ସୁନ୍ଦର ଯୁବକଟିଏ ଘର ଭିତରକୁ ପଶି ଆସିଲେ । ତାଙ୍କ ଆଡ଼କୁ ଚାହିଁବା ମାତ୍ରେ ମୋର ଚକ୍ଷୁ ସହିତ ତାଙ୍କ ଚକ୍ଷୁର ମିଳନ ହୋଇଗଲା । ତାଙ୍କୁ ଦେଖି ମୁଁ ଲାଜରେ ସଢ଼ିଗଲି । ଦେହ ମୁଣ୍ଡରେ ଲୁଗା ସଜାଡ଼ି ମୁଣ୍ଡର ଓଢ଼ଣା ଟିକିଏ ଟାଣି ଛିଡ଼ା ହେଲି । ସେ ଘଡ଼ିଏ କାଳ ଅନାଇ ଚାଲିଗଲେ । ତାଙ୍କ ଦୃଷ୍ଟିରୁ ବିସ୍ମୟ ଓ ଆନନ୍ଦର ଆଭା ଫୁଟି ଉଠୁଥିଲା । ସରମ ଝାଳ ମୋ ଦେହରୁ ବହିଗଲା । ସେ ଚାଲିଗଲା ପରେ ଟିକିଏ ଶାନ୍ତିର ନିଶ୍ୱାସ ମାରିଲି । ମନକୁ ମନ ଭାବିଲି କିଏ ଚିହ୍ନି ପାରିଲି ନାହିଁ ତ ? ଭଲକରି ମୁଁ ତାଙ୍କୁ ଦେଖିନାହିଁ । ତେବେ ଯେତିକି ଦେଖିଛି, ସେତିକିରୁ ମନେ ହେଉଥିଲା ସେ ଖୁବ ସୁନ୍ଦର । ଯୌବନର ଗୋରା ଚକଚକ ପୁରିଲା ମୁହଁଟି ତାଙ୍କର ଛବିଟି ପରି ଦେଖା ଯାଉଥିଲା । ପଦାକୁ ଆସିଲି । ବୋଉକୁ ଖୋଜିଲି —ପାଇଲି ନାହିଁ । କାନ୍ଥକୁ ଅନାଇଲି ଲିପା ସବୁ ସରିଯାଇଛି ।

ଏ ଖଞ୍ଜାକୁ ଆସି ଦେଖେ ବୋଉ, ମାଉସୀ ଓ ସେହି ଯୁବକଟି । ତିନିହେଁ କଣ କଥାଭାଷା ହେଉଛନ୍ତି । ଯୁବକଟିକୁ ଦେଖି ଘରଭିତରକୁ ନ ଯାଇ ପଦାରେ ଛିଡ଼ା ହେଲି । ମାଉସୀ ଦେଖି ଡାକିଲେ, ଆସୁନୁ ପୁନ, ଗୋପକୁ ଦେଖି ଲାଜ କରୁଛୁ ନାଁ କଣ ? ଭାଇଟା ହେବ ପରା—ଏତେ ଲାଜ କଣ । ମନକୁ ମନ ଭାବିଲି, ଆଉ ଗୋପ ଭାଇଙ୍କୁ ମୁଁ ଚିହ୍ନି ପାରୁନାହିଁ; ଏ ଭିତରେ ଏତେ ବଦଳି ଗଲେଣି ଚାରିବରଷ ତଳେ ଦେଖିଥିଲି । କଟକରେ ଥାଇ ଆଉ ଏ ଭିତରେ ମୋଟେ ଗାଁକୁ ଆସି ନାହାନ୍ତି । ଏତେ ବଦଳି ଯାଇଛନ୍ତି—ସତେ ଚିହ୍ନି ହେଉନାହିଁ । ଏଠି ଥିଲାବେଳେ କି ରୋଗା ଥିଲେ---ସବୁ ବଦଳି ଯାଇଛି । ଯୌବନର ପ୍ରଥମ ମଳୟ ଯେତେବେଳେ ଅନ୍ତର ସ୍ପର୍ଶ କରେ--ସେତେବେଳେ ଆପେ ଆପେ ସୌନ୍ଦର୍ଯ୍ୟ ଫୁଟିଉଠେ—କଳାଭଅଁରର ଚିକ୍କଣ ରୂପ ଗଉରବ ପରି । ଅନ୍ତର କହିଲା ଗୋପଭାଇଙ୍କୁ ଏତେ ଲାଜ କଣ ମ ? ଗାଁ ପୁଅ—ପିଲାବେଳ ସାଥୀ—ପୁଣି ଅତି ଆପଣାର ମାଉସୀଙ୍କର ସ୍ନେହର ଦୁଲାଲ । ଭିତରକୁ ଗଲି । ପୁଣି ପରକ୍ଷଣରେ ଲାଜ ଆସି ଗୋଡ଼ ଦି'ଟାକୁ ପଛକୁ ଠେଲୁଥାଏ । କଣ କରିବି—ଗଲି । ବୋଉ କହିଲା, ଗୋପ ଭାଇଙ୍କୁ ଦଣ୍ଡବତଟା ହେଉନାହୁଁ । ସତେ ତ

ଛୁଃ ଛୁଃ ସେ କଣ ଭାବିଥିବେ; ଦଣ୍ଡବତ ହେବାକୁ ନଇଁ ପଡ଼ିଲି । ସେ ହାତ ଧରି ଉଠାଇ କହିଲେ, ଥାଉ ସେଇ ହେଲା ନାହିଁ । ତାଙ୍କର କର ପରଶରେ ମୋ ଦେହରେ ବିଜୁଳି ଖେଳିଗଲା । ଲାଜରେ ମୁହଁ ସେପଟକୁ କଲି । ଗୋପଭାଇ କହିଲେ, ପୁନି ଏତେବଡ଼ ହୋଇଗଲାଣି ମାଉସୀ ! କାଲି ପରି ଲାଗୁଛି, ଏତେ ଟିକିଏ ଥିଲା—ଆମର ଘରେ ଆସି ଡେଉଁଥିଲା । ଆଜି ପୁଣି ଏତେ ଦିନ ପରେ ପୁନିକୁ ଗୋଟିଏ ନୂଆ ବୋଉ ବେଶରେ ଦେଖିବି ବୋଲି ମୋର ଧାରଣା ନ ଥିଲା ।

ବୋଉ ହସି କହିଲେ, ଗୋପର ପିଲାଳିଆ କଥା ଢଙ୍ଗ ଆଜିଯାଏ ଗଲାନାହିଁ । ମୁଁ କଣେଇ କରି ତାଙ୍କର ଆଡ଼କୁ ଅନାଇଲି । ଦେଖିଲି ସେ ମୋ ଆଡ଼କୁ ବାର ବାର ମୁଗ୍ଧ ଦୃଷ୍ଟିରେ ଅନାଉଛନ୍ତି । ଲାଜ ମାଡ଼ିଲା । ଦେହକୁ ଅନାଇଲି ଲୁଗା ପଟା କେଉଁଠୁ ଖସି ଯାଇ ନାହିଁ ତ । ନାହିଁ, ସବୁତ ଠିକ ଅଛୁ । ଆଉ ଏତେ କାହିଁକି ଅନାଉଛନ୍ତି । କିଛି ବୁଝି ପାରିଲି ନାହିଁ । ମନେ ମନେ ବୋଉ ଉପରେ ଭାରି ଚଢ଼ୁଥାଏ । ଚାଲୁନାହିଁ କାହିଁକି ଘରକୁ । ଖାଲି ଗପ—ଯୁଆଡ଼େ ଗଲା ହିଆଡ଼େ । ଦିନ ସରିବ କିନ୍ତୁ ତାର ଗପ ସରିବ ନି । ମୁହଁ ଖୋଲି କହିଲି ବୋଉ ସିଧା ଚାଲ । ଝୁନି ଆସି ଖୋଜୁଥିବ । ଗୋପଭାଇ କହିଲେ, ପୁନି କଅଣ ପିଞ୍ଜରାରେ ଅଛିକି ? ଏତେ ଉଚ୍ଛନ୍ନ କାହିଁକି ହେଉଛୁ । ମାଉସୀ କହିଲେ, ଭାରି ଲାଜକୁଳୀ ଝିଅଟା ସେ । ତୁ ଅଛୁ ବୋଲି ତାକୁ ଅଡୁଆ ଲାଗୁଛି । ସତେ ମାଉସୀ ମୋ ମନକଥା ଜାଣିଲେ କିପରି; କିନ୍ତୁ ପରକ୍ଷଣରେ ମୋର ଭାରି ଦୁଃଖ ହେଲା, ଗୋପ ଭାଇ ଚାଲିଗଲେ । ମୁହଁ ଖୋଲି କହି ପାରିଲିନି—ଦୁର୍ବଳତା ଆସିଲା ।

ବୋଉ କହିଲା, ଯାଉଚି, ବେଳ ଆସି ମୁଣ୍ଡ ଉପରେ ହେଲାଣି । ମାଉସୀଙ୍କଠାରୁ ବିଦାୟ ନେଇ ଆସିଲୁ । ମାଉସୀ କହିଲେ, କାଲି ଚଞ୍ଚଳ ଆସି ଏ ଖଞ୍ଜାଟା ସାରିଦେବ । ଆସିଲାବେଳେ ଅସରନ୍ତି ଭାବନା ମନ ଉପରେ ଧାଁ ଧପଡ଼ କରୁଥାଏ । ଗୋପଭାଇଙ୍କ ସହିତ ଆଖିର ବିନିମୟ । ତା' ପରେ ସେ କାହିଁକି ମୋ ଆଡ଼କୁ ବାର ବାର ଚାହୁଁଥିଲେ । ମୋଠୁ ବା କଣ ସେ ଏତେ ଦେଖୁଥିଲେ । କିଛି ଭାବିବାର ଅଳିକୂଳ ପାଇଲି ନାହିଁ । ଗୋପଭାଇଙ୍କର ସୁନ୍ଦର ମୁହଁରୁ ହସ ହସ ପିଲାଳିଆ କଥା କେଇପଦ କାନରେ ବାଜି ଯାଉଥିଲା । ତାଙ୍କର କର ପରଶରେ ଯେଉଁ ଅଜଣା ଶିହରଣ ଦେହରେ ଖେଳିଗଲା ତା'ର ସ୍ପନ୍ଦନ ଏବେ ବି ହୃଦୟରେ ପଡ଼ୁଥିଲା । ଘରେ ଆସି କେତେବେଳେ ପହଞ୍ଚି ଗଲିଣି—ଜଣା ନ ଥିଲା । ହଠାତ୍ ଭାବନାର ତନ୍ଦ୍ରା ମୋର ଭାଜିଗଲା ।



ଜହ୍ନ ଆଲୁଅ ଲିଭି ଲିଭି ଗଲା ଠିକ୍ ବାସୀ ଗୋଲାପର ଲିଭିଲା ହସ ପରି । ଦୂର ନଡ଼ିଆ ଗଛ ସେପଟ ସରଗ ମଥାନରୁ ରୂପା ଆଳଥା ଜହ୍ନ ହସି ଉଠିଲା । ଗାଁଟାଯାକ କ୍ଷଣକରେ ହାଲେଲ ଦିଶିଲା । ଜୋଚ୍ଛନା ଆଲୁଅରେ ଆମ ବାଗରେ ଜହ୍ନି ଫୁଲ କରଣାଢ଼ୀ ପିନ୍ଧି ସମୀର ପରଶରେ ଦୋଳି ଖେଳୁଥାଏ । ବୋଉ କୁଆଡ଼େ ଗାଁ ଆଡ଼େ ଯାଇଥାଏ । ମୁଁ ତଅଣ ରାନ୍ଧି ସାରି ଭାତ ବସାଇଥାଏ । ଟୁନ ଗାଁ ପିଲାଙ୍କ ସାଙ୍ଗରେ ଖେଳିବାକୁ ଚାଲି ଯାଇଥାଏ । ଘରେ ଏକଲାଟା—ଭଲ ଲାଗୁ ନଥାଏ । ମାଣିକ କାହିଁକି ଆଜି ଆସି ନଥାଏ । ନରି ଅଜାଙ୍କ ଝିଅ ମାଣିକ । ମାଣିକ ମୋର ସାଙ୍ଗ । ଏକା ମାସରେ ଜନ୍ମ—ଏକା ବରଷର । ଦୁହିଁଙ୍କର ଖାଇ ଖିବ—ପାଣି ଗଳେନା । ଅଧେ ଦିନ ରାତିରେ ସେ ଆମ ଘର ଆଡ଼େ ଆସେ । କେତେ ଗପ ପଡ଼େ । ଗାଁ ଗଣ୍ଡା ଗପ—ସାଙ୍ଗ ସରସାଙ୍କ ଗପ—ଦୁନିଆ ଯାକର । ବୋଉ ବେଳେ ବେଳେ ଚିଡ଼େ । କହେ, କଣ ଏତେ ଭୁଟୁରୁ ଖଟର ହେଉଚ—ଯା, ରାତି ଆସି ଦ'ପହର ହେଲାଣି । ବୋଉ ଗାଳି ଶୁଣି ମାଣିକ ଉଠେ । କହେ, ଯାଉଚି ଲୋ ପୁନି—କାଲି ଆସିବି ।

କାହିଁକି କେଜାଣି ମାଣିକର ଦ'ଦିନ ହେବ ଦେଖା ନାହିଁ । ମାଣିକ କଥା ଭାବୁ ଭାବୁ କା'ର ପାଟି ଶୁଭିଲା । ଦାଣ୍ଡ ଦରଜାରେ ଛିଡ଼ା ହୋଇ କିଏ ଡାକିଲା, ମାଉସୀ ମାଉସୀ । ପାଟି ଶୁଣି ମୁଁ ଆସି ଅନାଇଲି । ଦେଖିଲି, ଗୋପଭାଇ । ଆଗକୁ ପାଦ ଚଳିଲା ନାହିଁ କି ଲାଜରେ ପାଟିରୁ ମୋର ଘଡ଼ିଏ କାଳ କଥା ବାହାରିଲା ନାହିଁ । କଣ କରିବି । ଅତି କଷ୍ଟରେ ପାଟିରୁ ବାହାରି ଆସିଲା, ବୋଉ ନାହାଁନ୍ତି—ଗାଁ ଆଡ଼େ ଯାଇଚନ୍ତି । ମୋ କଥା ଶୁଣି ସେ ଫେର ପଛ ଚାଲି ଯିବାକୁ ବସିଲେ । କହିଲି,

ଗୋପ ଭାଇ ଘରକୁ ଆସୁ ନାହାନ୍ତି—ଠିଆ ଠିଆ ଆସି ଚାଲିସିବେ । ବୋଉ ଆଉ ଘଡ଼ିକ ପରେ ଆସିବେ ନାହିଁକି । କଣ ଭାବି ଗୋପଭାଇ ଘର ଭିତରକୁ ଆସିଲେ । ମୁଁ ଘରୁ ମସିଣାଟା ଆଣି ଦୁଆରେ ବିଛାଇ ଦେଲି । ଦଣ୍ଡେ ବିତିଗଲା । ଆରେ ଗୋପଭାଇଙ୍କି ପାନ ଖଣ୍ଡେ ଦେଇନାହିଁ ! ପୋଡ଼ା ମନଟା—ଏତେବେଳେ ମନେ ପଡ଼ୁଚି । କଣ ସେ ଭାବିବେଣି । କହିଲି, ଗୋପଭାଇ ବସ । ମୁଁ ପାନ ଆଣୁଚି । ପାନ ଦି'ଖଣ୍ଡ ଭଲ କରି ଭାଙ୍ଗି ଗୋପ ଭାଇଙ୍କ ହାତକୁ ବଢ଼ାଇ ଦେଲି । ସେ ଅତି ଆଗ୍ରହରେ ପାନ ଦି'ଖଣ୍ଡ ନେଲେ । କହିଲେ, ଯାଉଥିଲି, ଭାବିଲି ପୁନିକି ଥରେ ଦେଖିଯାଏ । ଚାଲି ଆସିଲି ।

ତାଙ୍କର ଏଇ କଥା ପଦକରେ ସତରେ ମୋ ହୃଦୟ ଗର୍ବରେ ପୂରି ଉଠିଲା । ସତେ କଣ ଗୋପଭାଇ ମୋତେ ଦେଖିବାକୁ ଦଉଡ଼ି ଆସିଚନ୍ତି । ତୁଣ୍ଡ ଖୋଲି କହିଲି, ବଡ଼ଲୋକ ତୁମେ ଗୋପଭାଇ—ଗରିବ ଘରେ ପାଦ ଦେଲେ ଆମର ଭାଗ୍ୟ ବୋଲି ଭାବିବାକୁ ହେବ । ମୋ କଥାରେ ସେ ହସି କହିଲେ, କେବେଠୁ ଏତେ ବଡ଼ ବଡ଼ କଥା କହି ଶିଖିଲୁଣି ? କାହିଁକି ମୁଁ କଣ ତମ ଘରକୁ ଆସେ ନାଁ । ଆଜକୁ ଦୀର୍ଘ ଚାରି ବରଷ ତଳର ଘଟଣା । ସ୍ମୃତି ଗୁଡ଼ା ମିଞ୍ଜି ମିଞ୍ଜି ହୋଇ ଜଳୁଚି—ଏତେ ଜୀବନର ଝଡ଼ ବତାସରେ ବି ଲିଭି ନାହିଁ । ସତେ ପୁନି, ଏଇ କେଇଟା ଦିନରେ ତୁ କେତେ ବଡ଼ ହୋଇଗଲୁଣି । ତୋତେ ଦେଖିଲେ ଘଡ଼ିଏ କାଳ ମନ ପୂରାଇ ଅନାଇବାକୁ ଇଚ୍ଛା ହୁଏ । ସତେ ପଦ୍ମଫୁଲ ପରି ତୋର ଏଇ ଅଯତନ ଶୋଭାର ମୂଲ କେହି ଦେଇ ପାରିବ ନାହିଁ । ତାଙ୍କ କଥା ଶୁଣି ଲାଜରେ ମୁଁ ସଢ଼ିଗଲି । ପାଖରେ ଛୁଡ଼ା ନ ହୋଇ ଭାତ ହେଲଣି କି ନାହିଁ ଦେଖିବାକୁ ଅସିଲି । ଦେଖିଲି ଭାତ କଅଁଳ ହୋଇଗଲାଣି । ତର ତର ହୋଇ ଭାତ ଗାଳି ପକାଇଲି । ଅନାଇଲି ଗୋପଭାଇ ଆଡ଼କୁ । ସେ ମୋର ଆଡ଼କୁ ଏକ ନୟନରେ ଚାହିଁଛନ୍ତି । ଲାଜ ଆସି ଜମାଟ ବାନ୍ଧିଲା । ଆଉ ଗୋପଭାଇଙ୍କି ଯାଇ କିଛି କହିବାକୁ ସାହସ ହେଲା ନାହିଁ ।

ସେ ଉଠି ପଡ଼ିଲେ । କହିଲେ, ଯାଉଚି ପୁନି । ତୁ ତ ଟିକେ ପଚାରୁ ନାହୁଁ—ଆଉ ମିଛଟାରେ ବସିବି କାହିଁକି ? ସେ ଚାଲିଗଲେ । ତୁଣ୍ଡ ଖୋଲି ପଦେ କହି ପାରିଲି ନାହିଁ । ମନରେ ଭାବନା ପଶିଲା, ସତେ କଣ ଗୋପଭାଇ ରାଗିକରି ଚାଲିଗଲେ ? କେତେ ଆଗ୍ରହରେ ସେ ଦଉଡ଼ି ଆସିଥିଲେ । କିନ୍ତୁ ମୁଁ ହତଭାଗୀ ତାଙ୍କୁ ପଦେ ସ୍ନେହଭରା କଥା ବି କହି ପାରିଲି ନାହିଁ । ମନଟା ଗୋଳେଇ ଘାଣ୍ଟି ହେଲା । ବୋଉ ଆସି ପହଞ୍ଚିଲା । ଭାରି ରାଗ ହେଲା ବୋଉ ଉପରେ । କହିଲି—କୁଆଡ଼େ ଚାଲିଗଲୁ ବୋଉ, ଗୋପଭାଇ ଆସି ବସି ବସି ଏଇ ଲାଗେ ଚାଲିଗଲେ । ବୋଉ

କହିଲ, ସତେ ଗୋପ ଆସିଥିଲ ? ମୁଁ ଜାଣେ ଲୋ ପୁନି, ବଡ଼ଲୋକ ପୁଅ ହେଲେ କଣ ହେବ ଗୋପ ଅମର ଗରିବଙ୍କ ସାଙ୍ଗରେ ବେଶ୍ ମିଶିପାରେ । ଈଶ୍ୱର ତାକୁ କୋଟି ପରମାୟୁ ଦିଅନ୍ତୁ । ସେ ମଣିଷ ହେଉ—ବାପ ଅଜ୍ଜେ ରାଉତରା ବଂଶର ନାଁ ରଖୁ । ହସି ହସି ବୋଉକୁ କହିଲି, ମୁଁ କିଛି ତାଙ୍କୁ କହିଲି ନାହିଁ ବୋଲି ଗୋପଭାଇ ରାଗି ଚାଲିଗଲେ । କହିଲେ, ତୁତ ଟିକେ ପଚାରୁ ନାହୁଁ—ମିଛଟାରେ ହସିବା କାହିଁକି ? ସତେ ବୋଉ, ମୋତେ ଭାରି ଲାଜ ମାଡ଼ିଲା । ଏକୁଟିଆଟା—କିଛି କହିବାକୁ ତୁଣ୍ଡ ପଇଟିଲା ନାହିଁ । ବୋଉ କହିଲା—ଅକାଳେ ସକାଳେ ଦିନେ ଅପୁରୁବ ପର ପାଦ ଦେଇଥିଲା ଯେ, ତୁ ତା ମନରେ ଦୁଃଖ ଦେଇ ଛାଡ଼ିଲୁ । ତୋତେ ସେ ଭଲପାଏ ବୋଲି ଚାଲି ଆସିଥିଲା—କିନ୍ତୁ ତୋର ଖାଲି ଲାଜ । କାହିଁକି, ତୋର ସାଙ୍ଗର ପିଲାଟା ଗୋପ—ତାକୁ ପୁଣି ଏତେ ଲାଜ ! ଟୁନ କୁଆଡ଼େ ଥିଲା ଦଉଡ଼ି ଆସି ମୋ ବେକରେ ଓହଳି ପଡ଼ି କହିଲା—ନାନୀ, ଭୋକ କଲାଣି, ଖାଇବା; ମୁଁ ଉଠି ଭାତ ବାଢ଼ିଲି । ବୋଉ, ଟୁନ, ମୁଁ ଖାଇ ଶୋଇବାକୁ ଗଲୁ ।

ଷଣେକ ପରେ ବୋଉ, ଟୁନ ଶୋଇ ପଡ଼ିଲେ । ମୋତେ କିନ୍ତୁ ନିଦ ହେଉ ନଥାଏ । ଗୋପଭାଇଙ୍କର କଥା ସବୁ କାନରେ ବାଜି ଯାଉଥାଏ । ସତେ ସତେ କଣ ଗୋପଭାଇ ମୋତେ ଭଲ ପାଆନ୍ତି ? ମନକୁ ମନ ପୁଣି ଭାବେ, ଛିଃ ତାଙ୍କ ତୁଳନାରେ ମୁଁ କେଡ଼େ ଅସୁନ୍ଦରୀ । ତାଙ୍କ ସୁନ୍ଦର ପଣରେ ମୁଁ କୋଉ କଣକୁ ! ଭାବୁ ଭାବୁ କେତେବେଳେ ନିଦ ହୋଇଗଲି ଜାଣେ ନାହିଁ ।

ନିଦ ଭାଙ୍ଗିଲା ବେଳକୁ ଦେଖେ ଶାନ୍ତ ସକାଳର ନରମ ଆଲୁଅ ଘର ଭିତରେ ସ୍ୱପ୍ନପୁରୀ ରଚନା କରୁଛି । ରାତିର ଶେଷ ଅନ୍ଧକାର ବିଦାୟ ନେଉଛି ଡର ଡର ହୋଇ । ଉଠି ପଦାକୁ ଆସିଲି ।

ଦଣ୍ଡକ ପରେ ସିନ୍ଦୂର ଟୋପା ପରି ପୁରୁବ ଆକାଶରେ ସୁରୁଯ ଦେବତା ହସି ଉଠିଲେ । ମଦନା ଭୋଇ ବଳଦ ଅଡ଼େଇ ଗୀତ ଗାଇ ଗାଇ ହଳକୁ ବାହାରିଲା ।

ଘର ମଥାନରୁ ଖରା ଆସି କାନ୍ଥରେ ପଡ଼ିଲାଣି । ବାସୀ କାମ ସରି ଯାଇଥାଏ । ବୋଉ କହିଲା; ଚାଲିଲେ ପୁନି, ଆଜି ଏତେବେଳ ହେଲାଣି । ନୂଆ ଖଞ୍ଜାଟା କେତେ ବଡ଼—ଲପା ସରୁଛି କି ନାହିଁ କେଜାଣି—କହିଲି, ତୁତ ମଠ ମଠ କରୁଚୁ ବୋଉ, ମୋର ଦୋଷ କଣ ? ବୋଉ କିଛି ନ କହି ଆଗେ ଆଗେ ଚାଲିଲା—ମୁଁ ପଛେ ପଛେ ଚାଲିଲି ।

ଘରଭିତରୁ ଘର ବୃନ୍ଦାବତୀ ଚଉତରା କଡରେ ଗୋପଭାଇ ଛିଡ଼ା ହୋଇଥିଲେ । ମୋତେ ଦେଖି ମୁରୁକି ମୁରୁକି ହସିଲେ । ମୁଁ ନ ହସି ଗମ୍ଭୀର ହୋଇ ବୋଉ ସାଙ୍ଗରେ ସିଧା ତାଙ୍କ ଘରକୁ ଚାଲିଗଲି । ମାଉସୀ କହିଲେ, ଆଜି ଏତେ ଡେରି ହେଲଣି ପୁନିବୋଉ, ନୂଆ ଖଞ୍ଜା ସରିବ କି ନାହିଁ । ବୋଉ କହିଲା, ପୁନି ଅଛି । ହାତ ଟିକେ ସହିଲା କଲେ ଟାଣ ଗାଧୁଆ ବେଳକୁ ଲିପା ସରିଯିବ । ଡେରି ନ କରି ବୋଉ ମୁଁ କାମରେ ଲାଗିଲୁ । ମୁଁ ଘର ଭିତରେ ଲିପୁଥାଏ । ବୋଉ ଥାଏ ପିଣ୍ଡାରେ । ଦେହ ମୁଣ୍ଡକୁ ଜଗା ରଖି ଲିପୁଥାଏ । କାଳେ ସେଦିନ ପରି ଯଦି ଗୋପଭାଇ ଆସି ପହଞ୍ଚି ଯାଆନ୍ତି—ମନରେ ଏହି ଭୟ ସବୁବେଳେ ଘୁରେଇ ବୁଲେଇ ହେଉଥାଏ ।

ଯେଉଁଥିପାଇଁ ମୁଁ ଡର ମରୁଥିଲି—ସେଇଆ ହେଲା । ଦୁ'ଘଣ୍ଟା ପରେ ଗୋପଭାଇ ଘର ଭିତରକୁ ପଶି ଆସିଲେ । ଲିପୁ ଲିପୁ ହାତ ମୋର ଗଲା ଅଟକି—ମୁଣ୍ଡରେ ଲୁଗାଦେଇ ଛିଡ଼ାହେଲି । ସେ ହସି ହସି କହିଲେ, ପୁନି ତୋର ହସ ହସ ପୂରିଲା ମୁହଁକୁ ଟିକେ ଦେଖିବା ଲାଗି ଦଉଡ଼ି ଆସେ ବୋଲି, ତୁ ଜାଣି ଜାଣି ହାତେ ଓଢ଼ଣା ଟାଣୁ କାହିଁକି ? ସତେ ମୋ ମନରେ ଭାରି ଦୁଃଖ ହୁଏ ।

ତାଙ୍କର ଏଇ କଥା ପଦକ ମୋ ହୃଦୟକୁ ତରଳାଇ ଦେଲା ସିନା, କିନ୍ତୁ ପରକ୍ଷଣରେ ଭାରି ଲାଜ ମାଡ଼ିଲା । ସେ କହିଲେ, ମୁହଁରୁ ଓଢ଼ଣା ଟାଣିଗୁଡ଼ା ଟାଣ—ନଇଲେ ମୁଁ ଯାଇ ଓଢ଼ଣାକୁ ଟାଣିଦେବି । ମୁଁ ଯେମିତି ଛିଡ଼ା ହୋଇଥିଲି—ସେହିପରି ରହିଲି । ସେ ମୋର ଆଡ଼କୁ ଚାଲି ଆସି ଜବରଦସ୍ତି ମୋ ମୁହଁରୁ ଓଢ଼ଣା ଟାଣିବାକୁ ଲାଗିଲେ । ମୁଁ ଜୋରକରି ଧରିଲି । ସେ ମୋ ଦୁଇ ହାତକୁ ଧରି କୋଳକୁ ଆଉଜାଇ ନେଇ ଓଢ଼ଣା ଟାଣିଦେଲେ । ଓଢ଼ଣା ମୁଣ୍ଡ ତଳକୁ ଖସି ଆସିଲା । ଦେହରୁ ଫାଳେ ଲୁଗା ବାହାରିଗଲା । ତାଙ୍କର ଏଇ ବ୍ୟବହାରରେ ମୁଁ ବାଧା ଦେଇ ପାରିଲି ନାହିଁ । କେଜାଣି କାହିଁକି କ୍ଷଣକ ପାଇଁ ତାଙ୍କ କୋଳରେ ମୁଁ ଶାନ୍ତି ଅନୁଭବ କଲି । ପିଣ୍ଡାରୁ ଥାଇ ବୋଉ ଡାକିଲା—ପୁନି, ଲିପା ସରିଲା ? ଭୟରେ ଥରି ଉଠିଲି । କହିଲି, ଗୋପଭାଇ ବୋଉ ଡାକିଲଣି ଛାଡ଼ ଦିଅ । ସେ ଭଲ ପିଲାଟି ପରି ଛାଡ଼ିଦେଲେ । ମୁହଁରୁ ତାଙ୍କର ଲାଳସା ଫୁଟି ଉଠୁଥିଲା । ପରକ୍ଷଣରେ ସେ ଚାଲିଗଲେ । ଚାଲିଗଲା ବେଳେ ତାଙ୍କ ଓଠରେ ହସ ଲାଗି ରହିଥିଲା ।

ଲୁଗା ସଜାଡ଼ି ପୁଣି ପରି ମୁଁ କାମରେ ଲାଗିଲି । ଘଣ୍ଟାକ ପରେ ଏ ଘର ସାରି ଆର ଘରକୁ ଗଲି । ଆର ଘରଟା ଗୋପଭାଇଙ୍କ ଶୋଇବା ଘର । ମନକୁ ମନ ଖୁବ୍ ଯତନ କରି ଗୋପଭାଇଙ୍କ ଘର ଲିପିବାରେ ଲାଗିଲି । ଘଣ୍ଟାକ ପରେ ଗୋପଭାଇ

ହସି ହସି ଆସି କହିଲେ, ମୋ ଘର ବୋଲି ଏତେ ଯତନ କରି ଲିପୁଛୁ ନା କଣ ? ମନକୁ ମନ କହିଲି, ଏ ପୁଣି ମୋ ଅନ୍ତର କଥା ଜାଣିଲେ କପରି ? କହିଲି, ତମ ଘର ବୋଲି ମୁଁ ଜାଣିଲି କେମିତି ? ସେ କଥା ବଦଳେଇ କହିଲେ— ଦେଖନା ପୁନି, ଲିପି ଲିପି ତୋ ସୁନା ଦେହ କପରି କଳା ପଡ଼ିଗଲାଣି ମୁଁ ଛଳନା କରି କହିଲି, ତମେ ଏଠୁ ଯିବତ ଗୋପଭାଇ—ମୋତେ ବିରକ୍ତ କରନା । ଯିମିତି ଚିଡ଼ାଇବତ ମାଉସୀଙ୍କି ଡାକିବି । ସେ ହସି ହସି କହିଲେ, ଡାକୁନୁ, ମୁଁ କଣ ବୋଉକୁ ଡରେଚି । ସେତିକିବେଳେ ଗୋପଭାଇଙ୍କ ବୋଉ ଆସି ପହଞ୍ଚିଲେ । ମୁଁ କହିଲି, ଦେଖିଲ ମାଉସୀ ଗୋପଭାଇ ମୋତେ କପରି ଚିଡ଼ାଇ ମାରୁଛନ୍ତି ।

ମାଉସୀ ହସିଲେ—ଫୁଟି ଆସୁଥିବା ଅମଳନ ଧଳା କଇଁ ଫୁଲ ପରି ତାଙ୍କ ହସ ଦିଶୁଥିଲା ସୁନ୍ଦର । ସେ ହସରେ ଥିଲା ତାଙ୍କର ଅସୀମ ସ୍ନେହ ଓ କରୁଣା । କହିଲେ, ଛିଃ ଗୋପ ତା ସଙ୍ଗରେ ଲାଗନା । ତୁ ଯେମିତି—ପୁନିଟି ମୋର ସିମିତି । ସତେ ପୁନିକୁ ଦେଖିଲେ ଭାରି ଦୟା ହୁଏ । କେଡ଼େ ସୁନ୍ଦର ଝିଅଟି ଗରିବ ଘରେ ହୀନକପାଳର ଜନ୍ମ ସିନା—କିନ୍ତୁ ରୂପ, ଗୁଣରେ ବାରିବାକୁ ଏ ଖଣ୍ଡ ମଣ୍ଡଳରେ କେହି ନାହିଁ । ଗୋପଭାଇ ଅଟ୍ଟାକରି କହିଲେ, ଯୋଉ ରୂପତ, ପାଦ ମାଙ୍କଡ଼ ଆହୁରି କେଡ଼େ ସୁନ୍ଦର । ଗୋପଭାଇଙ୍କ କଥା ଶୁଣି ମୋତେ ଭାରି ହସ ମାଡିଲା । ମୁହଁ ବୁଲେଇ ପାଟିରେ ଲୁଗା ଦେଇ ବହୁତ ହସିଲି ।

ବୋଉ ଆସି ପହଞ୍ଚିଲା । ସେତେବେଳକୁ ଟାଣ ଗାଧୁଆ ବେଳ ଗଡ଼ିବା ଉପରେ । ତଥାପି ଲିପା ସରି ନ ଥାଏ । ବୋଉକୁ ଦେଖି ମାଉସୀ କହିଲେ, ଆଜି ଏତିକି ଥାଉ ପୁନି ବୋଉ, ଗାଈ ଲେଉଟିଲାଣି । କାଲି ଆଉ ଦ' ଘଡ଼ି ପାଇଁ ଆସି ବାକିଆ ତକ ଲିପି ଦେଇଯିବ । ଗୋପଭାଇ କହିଲେ, ହଁ ବୋଉ, ପୁନିକି ଭାରି ବାଧିଲାଣି—ଆଜି ଏତିକି ଥାଉ । ବୋଉ କିଛି ଆପତ୍ତି କଲା ନାହିଁ । କାରଣ ବୋଉ ଚେହେରାରୁ ମନେ ହେଉଥିଲା ସେ ହାଲିଆ ହୋଇଗଲାଣି । ବୋଉ କହିଲା, ହଉ ତେବେ ଆସୁଛୁ ଗୋପବୋଉ ! ଦିହେଁ ବିଦାୟ ନେଇ ଆସିଲୁ । ଆସିଲାବେଳେ ଗୋପଭାଇଙ୍କ ଚଞ୍ଚଳ ଆଖି ଦିଇଟା ମୋତେ ଖାଲି ବାରବାର ଲାଜ ଦେଉଥାଏ ।

ଡେଉ ଡେଉକା ଦୂର ପାହାଡ଼ ସେ ପଟରେ ସୁରୁଯ ଦେବତା ମୁହଁ ଲୁଚାଇଲେ । ଧରଣୀ ଉପରେ କିଏ ତୂଳି ଧରି ରଙ୍ଗ ବୋଳି ଦେଇଗଲା । ଠାଏ ଠାଏ ନେଳିଆ—ଠାଏ ଠାଏ ନାଲି—ପୁଣି ଠାଏ ଠାଏ ନେଳି ନାଲି ମିଶାମିଶି ରଙ୍ଗର ଅପରୂପ ଚଳସମ୍ଭାର । ଗେଣ୍ଡାଳିଆଟା ଉଡ଼ି ଉଡ଼ି ଆକାଶ ପଥରେ ଚାଲିଗଲା । ସଞ୍ଜ ଅନ୍ଧାରରେ କାଳେ ପଥ ଭୁଲିଯିବ—ସେଇଥିପାଇଁ ସେ ଚଞ୍ଚଳ

ଘରମୁହାଁ ହୋଇ ଛୁଟୁଥିଲି । ଦଣ୍ଡକ ପରେ ଅନ୍ଧାର କୁହୁଡ଼ି ତଳୁ ପୂରୁବ ଆକାଶ ପଟରେ ଜହ୍ନମାମୁଁର ତୋଫା ହସଟିଏ ଦିଶିଲା । ଅନ୍ଧାରରେ ଦହୁଡ଼ି ଜଳିଲା ପରି ତା'ର ଚକ୍‌ଚକଣ ରୂପଟି ଦିଶୁଥିଲା ସୁନ୍ଦର । ଆମ ଦୁଆରେ ହିଡ଼ ଗଉଡ଼ି ଗଛର ଶାଗୁଆ ମୁହଁରେ କିଏ ଜୋଛନା ପାଉଡ଼ର ବୋଳି ଦେଇଗଲା ।

ଜହ୍ନ ଉଗିସିଲା ବେଳକୁ ମୋର ରନ୍ଧାବଢ଼ା ସରିଥିଲା । ବୋଉ ଟୁନକୁ ନେଇ ସୁମୀବୋଉ ଖୁଡ଼ୀ ଘରକୁ ଚାଲି ଯାଇଥାଏ । ବୋଉ ନ'ଥି ଯାଏ ତାଙ୍କ ଘରକୁ । ସେଇଠି ତାଙ୍କର ପିଣ୍ଡାରେ ଚେମି ମାଉସୀ, ନୂଖୁଣ୍ଟନାନୀ, କମଳୀ ଅପା, ଅଇଁଠା ବୋଉ—ଇମିତି ଗାଁ ଯାକର ପୁରୁଖା ମାଇପିଙ୍କର ମେଳ ବସେ । କିଏ କେଉଁଠି ପାଉଁଲା, ଛୁଙ୍କିଲା ଠୁ ଆରମ୍ଭ କରି ଗାଁ ଗୋଟାକର ବିଚାର ସେଇଠି ହୁଏ । ଚେମି ମାଉସୀ ହେଉଛି ସମସ୍ତଙ୍କ ଉପରେ ହେଡ୍—ମୁରବି । ସତେ ସତେ ଚେମୀ ମାଉସୀକି ଦେଖିଲେ ଭାରି ଡର ମାଡ଼େ । ସେ ଯେଉଁ ଲୋକ, ଟିକିଏ ଯଦି କାହାର ଦୋଷ ଦେଖିବ ଟିକିକ କଥାକୁ ତାଲ କରି ଦଣ୍ଡକରେ ଗାଁ ଯାକ ହାଟ କରି ଦେବ । ଚେମି ମାଉସୀକି ଗାଁ ଗୋଟାକରେ ସମସ୍ତିଙ୍କର ଡର ।

ରାନ୍ଧ ବାଢ଼ି ସାରିଲା ବେଳକୁ ଦେଖେ ଦୁଆରେ ଅଧେ ଆଲୁଅ—ଅଧେ ଛାଇ । ମନ ହେଲା ଜେ ଛନା ଆଲୁଅରେ ମସିଣାଟା ପକାଇ ଶୋଇବାକୁ । ବଡ଼ ଘରୁ ମସିଣାଟା ଆଣି ବିଛାଇ ଦେଲି । ତା'ର ଉପରେ ନିଜର ଅଳସ ଦେହଟାକୁ ବିଛାଇ ଦେଲି । ଆକାଶକୁ ଅନାଇଲି, ତାରାଗୁଡ଼ା ମିଟି ମିଟି କରି ସତେ ଯେପରି ପଲକବିହୀନ ଆଖିରେ ମୋର ଆଡ଼କୁ ଅନାଇଛନ୍ତି । ଖଣ୍ଡେ ଖଣ୍ଡେ ଚଲାବଉଦ କୁଆଡ଼ୁ ଭାସି ଆସୁଚି—ହାତୀ, ଘୋଡ଼ା, ସୈନ୍ୟ ସାମନ୍ତ କେତେ ଭଳି ରୂପ ଧରି । ସରଗ ଶଶୀ କ୍ଷଣକ ପାଇଁ ଲୁଚି ଯାଉଚି । ପୁଣି ପରକ୍ଷଣରେ ମୁହଁଟି ତା'ର ହସି ଉଠୁଛି —ମେଘ ଓଢ଼ଣା ତଳୁ ନୂଆବୋହୂଟି ପରି ।

ସରଗର ଚାନ୍ଦ ପରି ଆଉ ଗୋଟିଏ ସୁନ୍ଦର ମୁଖ ହଠାତ୍ ମୋର ଆଖି ଆଗରେ ଭାସି ଆସିଲା । ଗୋପଭାଇ—ସତେ ଗୋପଭାଇଙ୍କର ରୂପଟି କେଡ଼େ ସୁନ୍ଦର— ଠିକ୍ ଏଇ ଆକାଶର ଚାନ୍ଦ ପରି । ନା ନା ଏହାଠୁ ଆହୁରି ସୁନ୍ଦର—ଆହୁରି ଶାନ୍ତ, ସୁକୋମଳ । ତାଙ୍କର ଚାହାଣି ତଳେ ଥିଲା ଜୋଛନା ପରି ମୃଦୁ ଶୀତଳ ପରଶ—ମୁହଁରେ ସରୁ ହସ । ଯଉବନର ଉଦ୍ଦାମ ତରଳ ଆଖି ଦୁଇଟି ଠିକ୍ ଏଇ ଆକାଶର ତାରା ପରି ଜଳି ଉଠୁଥିଲା । ଗୋପଭାଇ, ଆଉ ଏଇ ସରଗର ଚାନ୍ଦ—କିଏ ସୁନ୍ଦର ? ଗୋପଭାଇ, ହଁ ମୋର ଗୋପଭାଇ ସୁନ୍ଦର । ହଠାତ୍ ଆଖିପତା ମୋର ନଇଁ ଆସିଲା ।

ହଠାତ୍ କା'ର ହାତଟା ବାଜି ମୋର ଗ୍ଲାସ ନଦଟା ଚଟ୍‌କର ଭାଙ୍ଗିଗଲା ! ଅନାଇଲି, ଗୋପଭାଇ ମୋର ହାତ ଧରି କହୁଛନ୍ତି, ପୁନି ସଞ୍ଜବେଳଟାରେ ଶୋଇଛୁ କାହିଁକି, ଉଠ୍ । ଗୋପଭାଇଙ୍କୁ ଦେଖି ମୁଁ ଧଡ଼ପଡ଼ ହୋଇ ଉଠି ବସିଲି । ମିଛରେ ଛଳନା କରି କହିଲି, ଦେହଟା ଭଲ ଲାଗିଲା ନାହିଁ—ଶୋଇ ପଡ଼ିଲି । ଗୋପଭାଇ ମୋ ଦେହ ମୁଣ୍ଡରେ ହାତମାରି କହିଲେ, କାହିଁ ଦେହତ ଖରାପ ଜଣା ପଡ଼ୁନାହିଁ ! ଆଜି ସକାଳେ ଆମ ଘରେ ଯେଉଁ ଖାଇଛି । ସତେ ପୁନି, ଇମିତି ଖାଇଲେ ଦି' ଦିନରେ ସୁନା ଦେହ ମଉଳି କଳାକାଠ ପଡ଼ିଯିବ । ଗୋପଭାଇଙ୍କ ଉପଦେଶଗୁଡ଼ା ମୋତେ ଭଲ ଲାଗୁ ନଥିଲା । ଗମ୍ଭୀର ହୋଇ ତାଙ୍କର କଥାଗୁଡ଼ା ଯେପରି ମୋତେ ଉପହାସ କରି ଉଠୁଥିଲା । କହିଲି, ଗୋପଭାଇ ଗମ୍ଭୀର ଆମେ, ରୂପକୁ ଘୋରି ପିଇଲେ ପେଟ ପୋଷିବୁ କପରି ? ତୁମେ ସିନା ବଡ଼ଲୋକ, ରୂପ ତୁମକୁ ଖୁବ୍ ବଡ଼ । ସେ କହିଲେ, ଭାରି ଅଭିମାନିନୀ ତୁ ପୁନି—ପିଲାବେଳେ ଯେମିତି ଥିଲୁ, ଆଜି ଠିକ୍ ସେମିତି, ଟିକିଏ ବି ବଦଳି ନାହିଁ ।

କଥା ବାଆଁରେଇ କହିଲି—ଗୋପଭାଇ, ତମେ ବସ ମୁଁ ବୋଉକୁ ଡାକିଆଣେ । ସେ କହିଲେ, ନାହିଁ ବୋଉକୁ ଡାକିବା ଦରକାର ନାହିଁ—ମୁଁ ଚାଲିଯାଉଚି, ମୋର ତେଣେ କାମ ଅଛି । ବୁଝିଲି, ଗୋପଭାଇ ମୋର କଥାରେ ଘୋଷା ହୋଇ ଯାଇଛନ୍ତି । କହିଲି, କାମ ଯଦି ଥିଲା ଆସିଲ କାହିଁକି ? ସେ କହିଲେ, ଆସିଲା ପରେ ମନେ ପଡ଼ିଲା—ରାତିଲା ଆସିଲାଣିତ, ଟିକିଏ ବୁଲିଯାଏ । ଏତିକି କହି ଗୋପଭାଇ ଚାଲି ଯିବାକୁ ବସିଲେ । ପିଲାଦିନରୁ ଗୋପଭାଇ ଭାରି ଷଣ୍ଢକୋପୀ । ଟିକି ଟିକି କଥାରେ ଘୋଷା ହୁଅନ୍ତି । ସତେ ସତେ ଗୋପଭାଇ ଫେରିପଡ଼ି ଦି'ହାତ ଆଗକୁ ଚାଲିଗଲା ପରେ ମୋର ଖିଆଲ ଆସିଲା । ଅନ୍ତରଟା ମୋର ତାଙ୍କୁ ଫେରାଇ ଆଣିବାକୁ ବାରବାର ତାଗିଦ କରି ଉଠିଲା । ଦଉଡ଼ି ଯାଇ ତାଙ୍କ ଆଗରେ ଛିଡ଼ା ହୋଇ ବାଟ ଓଗାଳିଲି । ହସି ହସି କହିଲି, କମିତି ଯିବ ଯାଅତ ଗୋପଭାଇ ! ସେ ମୋତେ ଆଡ଼େଇ ଯିବାକୁ ଚେଷ୍ଟା କଲେ । ତାଙ୍କ ହାତ ଧରି କହିଲି, ଗୋପଭାଇ ମୋ ରାଣ—ଫେରିଆସ । ତାଙ୍କ ଓଠରେ ହସ ଫୁଟି ଉଠିଲା ।

ଜୋଛନା ପାଉଡ଼ର ମିଶା ତାଙ୍କ ଚକ୍‌କଣ ମୁହଁଟି ହସିଲାବେଳେ ବେଶ ମାନୁଥିଲା । ସେ ମୋ ହାତ ପାପୁଲିକୁ ତାଙ୍କ ହାତ ମୁଠାରେ ରଖି ଜୋରରେ ଚିପିଦେଲେ । କହିଲେ, ପୁନି ତୋର ଏଇ ଫୁଲ କଅଁଳ ହାତଟି କେଡ଼େ ସୁନ୍ଦର ! କହିଲି, ଗୋପଭାଇ ତମର ଏଇ ସୁନ୍ଦର ଅସୁନ୍ଦର ମାନେ ମୁଁ କିଛି ବୁଝିପାରେ ନା । କାହିଁକି ମୋତେ ପରିହାସ କରୁଚ ? ସେ ମୁରୁକି ମୁରୁକି ହସିଲେ । କିଛି ନ କହି

ଘର ଭିତରକୁ ଆସି ଦୁଆରେ ପଡ଼ିଥିବା ମସିଣା ଉପରେ ବସି ପଡ଼ିଲେ । କହିଲେ, ପୁନି ତୋତେ ଦେଖିବାକୁ ସବୁବେଳେ ମନରେ ମୋର ଆଶାର ଆଲୋକ ଜାଗିଉଠେ —ସେଇଥିପାଇଁ ଦଉଡ଼ି ଆସେ । ତୋର ମୁଖଛବି ଭଲ କରି ଥରେ ଦେଖିଲେ ମନଟା ଅଜଣା ଆନନ୍ଦର ପରିତୃପ୍ତିରେ ଭରିଉଠେ । ସତ କହ ପୁନି, ମୋର ଏଇ ବ୍ୟବହାର, ଯିବା-ଆସିବା ଦ୍ୱାରା ତୁ ମୋତେ କଣ ଭୁଲ ଭାବରେ ଗ୍ରହଣ କରୁଛୁ ?

ତାଙ୍କର ଏଇ - ପ୍ରଶ୍ନରେ ଭରି ରହିଥିଲା ମୋତେ ପାଇବାର ବ୍ୟାକୁଳତା । ଗୋପଭାଇ, ରାଉତରାୟ ବଂଶ କୁଳଆଦି ଘରର କୁଳର ପ୍ରଦୀପ—ଏଇ ଗୋପଭାଇ ଆଜି ମୋ ପରି ଗୋଟାଏ ହତଭାଗିନୀଟାକୁ ସତେ କଣ ଭଲ ପାଆନ୍ତି ? ଏଇ ପ୍ରଶ୍ନ ମନରେ ଘୂରେଇ ବୁଲେଇ ହେଲା । ମନଟା ମୋର ଗୋପଭାଇଙ୍କ ଆଡ଼କୁ ସ୍ନେହରେ ନଇଁ ଆସିଲା । କହିଲି, ଗୋପଭାଇ ମୋ ପରି ଗୋଟାଏ ଜରମାଖୀଟାକୁ କାହିଁକି ଏତେ ଆପଣାର କରୁଚନ୍ତି ? ମୁଁ ତୁମର କେଉଁ ଗୁଣକୁ ଯୋଗ୍ୟ ? ସେ କହିଲେ, ପୁନି ମୁଁ ଯଦି ବଡ଼ଲୋକ ଘରେ ଜନ୍ମ ନ ହୋଇ ତୋ ପରି ଗୋଟିଏ ଗରିବ ଘରେ ଜନ୍ମ ହୋଇଥାନ୍ତି, ତେବେ ତୁ କଣ ମୋ ସ୍ନେହରେ ସନ୍ଦେହ କରନ୍ତୁ ? ତୁ ଆଜିଠାରୁ ମନେ କରିବୁ ମୁ ତୋରି ପରି ଗରିବ । ତୋର ଏଇ ରୂପଗୁଣରେ ଆଲୋକ ତଳେ ବଡଲୋକର ଆଭିଜାତ୍ୟ ମୋର ମରିଯାଇଚି—ଦୀର୍ଘ ଗୃହବର୍ଷ [?] ପରେ ଫେରି ଯେଉଁ ଦିନ ତୋତେ ପ୍ରଥମ ଥର ପାଇଁ ଦେଖିଲି । ଏତକ କହି ସେ ମୋ ଆଡ଼କୁ ମୁଗ୍‌ଧ ଚାହାଣିରେ ଅନାଇ ରହିଲେ ।

ଘରେ କେହି ନାହିଁ । ଉପରେ ନେଳିଆ ରଙ୍ଗର ଆକାଶ ଚାନ୍ଦୁଆ ତଳେ ପାଖାପାଖି ଆମେ ଦିହେଁ । ମଝିରେ ବଣ୍ଟ [?] ନୀରବତା, ଦୁଆରେ ହରଗଉରୀ ଫୁଲଗୁଡ଼ା ଆମକୁ ଚାହିଁ ହସୁଥିଲେ । ଗୋପଭାଇ ମୋ ହାତଟାକୁ ଧରି ପାଖକୁ ଟାଣିନେଲେ । ତାଙ୍କ ହାତର ତାତିଲା ପରଶ ମୋ ଛାତିରେ ବାଜିଲା । ମୁଁ ଭୟରେ ତାଙ୍କଠାରୁ ମୁକ୍ତ ହେବାକୁ କହିଲି, ଛାଡ଼ ଗୋପଭାଇ ଛାଡ଼ିଦିଅ । ସେ ଛାଡିଲେ ନାହିଁ—ପାଗଳ ପରି ମୋର ଚିବୁକରେ ଚୁମ୍ବନ ଦେବାକୁ ଲାଗିଲେ । ମନାକରି ପାରିଲି ନାହିଁ— ଗୋପଭାଇ କାହିଁକି ମୋତେ ଅବାଟକୁ ଟାଣିନେଉଚ ।

ହଠାତ୍ ଆକାଶରେ ମାଡ଼ହଜା ପକ୍ଷୀଟା ଡାକିଗଲା କର୍‌ର କର୍‌ର । ଗୋପଭାଇ ଚମକିପଡ଼ି ମୋତେ ଛାଡ଼ି ଦେଲେ । ମୁଁ ତାଙ୍କ କଡ଼ରୁ ଉଠି ପଦାକୁ ପଳାଇ ଆସିଲି, ଦେହଟା ମୋର ବରଡ଼ା ପତ୍ର ପରି ଥରୁଥିଲା । ଆକାଶକୁ ଅନାଇଲି, ଦେଖିଲି ଦି'ଆଡ଼ୁ ଦି'ଖଣ୍ଡ ମେଘ ଭାସି ଆସି ଏକାଠି ହୋଇଗଲେ । ପରସ୍ପରକୁ ଆଲିଙ୍ଗନ କରି ଚାଲିଗଲେ ସୀମାହୀନ ଅନନ୍ତ ପଥରେ·········

ପଦାରେ ଛୁଡ଼ା ହେଇଚ । ବୋଉ ପାଟି ଶୁଭିଲା । ଡାକିବା ଛଳକରି କିଛି ଦୂର ଯାଇ କହିଲି, ବୋଉ ତତେ ମୁଁ ଡାକିବାକୁ ଯାଉଥିଲି, ଗୋପଭାଇ ଆସିଛନ୍ତି । ବୋଉ ହସି ହସି କହିଲା, ସତେ, ଚାଲ ଚାଲ ।

ବୋଉକୁ ଦେଖି ଗୋପଭାଇ କହିଲେ, କୁଆଡ଼େ ଯାଇଥିଲ ମାଉସୀ ? ବୋଉ କହିଲା—କୁଆଡ଼େ ଯିବି ବାପ, ଟିକିଏ ଏଇ ସୁମୀବୋଉ ଘରେ ବସିଥିଲି । ବୋଉର ଗୋପଭାଇଙ୍କର ଘଡ଼ିଏ କାଳ ଆଡ଼ୁ ସାଡ଼ୁ କେତେ କଥା ପଡ଼ିଲା । କଥା ମଝିରେ ମଝିରେ ଗୋପଭାଇ ମୋର ପ୍ରଶଂସା କରିବାକୁ ଛାଡ଼ୁ ନଥାନ୍ତି । କେତେବେଳ ପରେ ଗୋପଭାଇ ଉଠିଲେ । ଯିବା ବେଳେ ହସି ହସି କହିଲେ, ମାଉସୀ ପୁଣି ରନ୍ଧାଭାତ ଦିନେ ଖୁଆଇଲ ନାହିଁ ? ବୋଉ କହିଲା, ଦୁଧଭାତଖିଆ ପାଟିକି ଗରିବ ଘର ଶାଗ ମୁଗ ଭାତ ତିଅଣ କଣ ଭଲ ଲାଗିବ ବାପ ? ଗୋପଭାଇ କହିଲେ, ଆଚ୍ଛା ମାଉସୀ ବଡ଼ ଲୋକ କଣ ମଣିଷ—ଗରିବ କଣ ମଣିଷ ନୁହେଁ । ତମେ ମୋତେ ଆଉ ଦିନେ ଇମିତିକା କଥା କହିବ ନାହିଁ । ସତେ ମାଉସୀ ଇମିତିକା କଥା କହିଲେ, ମୋ ମନରେ ଭାରି ଦୁଃଖ ହୁଏ । ପୁଣି ତମର ଯିମିତି—ମୁଁ ସିମିତି । ଏତିକି କହି ଗୋପଭାଇ ବିଦାୟ ନେଲେ ।

ସେତେବେଳକୁ ତୃଷ୍ଣାପୁର ବଙ୍କା ଜହ୍ନ ଡୁବି ଯାଉଥାଏ ଆମ ସେହି ଝଙ୍କା ବରଗଛ ସେ ପଟରେ । ଧୀରେ ଧୀରେ ଗାଁଟା ଅନ୍ଧାରିଆ ହୋଇ ଆସୁଥାଏ । ବାଡ଼କୁ ଅନାଇ ଦେଖେ ଜହ୍ନିଫୁଲ ମୁହଁ ଫିକା ପଡ଼ିଗଲାଣି ।



ତା'ପର ଦିନ ସକାଳୁ ଉଠିଲା ବେଳକୁ କାନ୍ଥରେ ଆସି ଖରା ପଡ଼ିଲାଣି । ରାତିରେ ଭଲ ନିଦ ହୋଇ ନଥିଲା । ଗୋପଭାଇଙ୍କ କଥା ଭାବୁ ଭାବୁ ରାତିର ଶେଷ ପହରକୁ କେତେବେଳେ ଆଖିରେ ତନ୍ଦ୍ରାର କଜଳ ରେଖା ଲାଗି ଆସିଲା, ଜାଣେ ନାହିଁ । ବୋଉ ବାସୀ କାମ ସବୁ ସାରି ଝୁନକୁ ଖାଇବାକୁ ଦେଉଥାଏ । ମୋତେ ଦେଖି କହିଲା, ପୁଅ ଦେହ କଣ ଖରାପ ହେଲାକି ? ଏତେ ଡେରି ଯାଏ ଶୋଇଲୁ କାହିଁକି । କହିଲି, ନା ବୋଉ କାଲି ରାତିରେ ଟିକେ ଡେରିରେ ନିଦ ହେଲା । ଏତିକି କହି ଦାନ୍ତକାଠି ଖଣ୍ଡେ ଭାଙ୍ଗିବାକୁ ଆମ ବାଉଁଶ ବୁଦା ଆଡ଼କୁ ଗଲି । ବାଣି ଚଢ଼େଇ ଦି'ଟା ବାଉଁଶ ଗଛ ପତ୍ରର ଗହଳରେ ବସି କଣ ମନ ଖୁସିରେ ଗୋପନ କଥାଭାଷା ହେଉଥିଲେ । ମୋତେ ଦେଖି ଫଡ଼ କରି ଉଡ଼ିଗଲେ । ତାଙ୍କ ଦେହ ବାଜି ପତ୍ରର ଉପରୁ ଥୋପି ଥୋପି କାକର ବିନ୍ଦୁ ମୋ ଉପରେ ଖସି ପଡ଼ିଲା । ଦେହ ମୁଣ୍ଡରୁ କାକର ପୋଛି ଦାନ୍ତ କାଠି ଖଣ୍ଡେ ଭାଙ୍ଗି ଦାନ୍ତ ଘଷିବାକୁ ଲାଗିଲି ।

ମନେ ପଡ଼ିଲା, ରାଉତର ଘର ଲିପା ବାକି ଅଛି । ଆଉ ଦି' ଘଡ଼ିର କାମ । ଆଜି କାହିଁକି ଆଉ ବୋଉ ସାଙ୍ଗରେ ଯିବାକୁ ମନ ବଳିଲା ନାହିଁ । ଗୋପଭାଇଙ୍କ ସହିତ କାଲିକାର କଥା ମନେ ପଡ଼ିଲା । ଛିଃ, ଗୋପଭାଇ ପୁଣି ଏଡ଼ିକି ଦୁଷ୍ଟ ! ମନଟା ଅତୀତ ଭିତରକୁ ଦଉଡ଼ିଗଲା ।

ଛ' ସାତ ବରଷ ତଳର କଥା । ଗୋପଭାଇ, ମଧୁଭାଇ ମୋର ସାଙ୍ଗର । ପିଲାବେଳେ ମୁଁ ମଧୁଭାଇଙ୍କୁ ଖୁବ ଭଲ ପାଉଥିଲି । ଗୋପାଭାଇଙ୍କୁ ଭଲ ପାଉଥିଲି ସତ—କିନ୍ତୁ ମଧୁଭାଇ ପରି ଭଲ ପାଉ ନ ଥିଲି । ମଧୁଭାଇଟା ପୁଣି ଏଡ଼ିକି ଦୁଷ୍ଟ ! ମୋତେ କହେ, ପୁଅ ବଡ଼ ହେଲେ ତୁ ହେବୁ କନିଆ—

ମୁ ହେବ ବର । ବେଦ ବନ୍ଧା ହେବ । ବ୍ରାହ୍ମଣ ଆସି ମନ୍ତ୍ର ପଢ଼ିବ । ତା' ପରେ ଆମେ ଦୁହେଁ ଘର କରିବା । ଆମ ସାଇର ଖିର ଭାଇ ନୂଆବୋଉ ସିମିତ ମୁଣ୍ଡରେ ହାତେ ଓଢ଼ଣା ଦେଇ ଥର ଥର ଗ୍ଲୁଲୁଚ—ସିମିତ ବି ଗ୍ଲୁଲବି ଥର ଥର । ମୁଁ କହିବି, ପୁନି ପିଲାବେଳେ ମିଛୁ ମିଛୁକା ବରକନିଆଁ ଖେଳ ଆମ ଜୀବନରେ ସତ ସତକା ଖେଳ ହୋଇଗଲା । ମୁଁ ଭାରିଚଢ଼େ । କୁହେ, ମଧୁଭାଇ ସିମିତକା କଥା କହିବ ତ ତୁମ ଘରକୁ କେବେ ଆସିବି ନାହିଁ । ତଥାପି ବି ମଧୁଭାଇ ମୋତେ ଗୁଡ଼ନ୍ତନ—ଚଢ଼ାଇ ମାରନ୍ତି । ମୁଁ ତାଙ୍କ ଘରକୁ ଘୋଷା ହୋଇ ଦିନେ ଦି'ଦିନ ଯାଏନା । ପୁଣି ମାଣିକ ଆସି କୁହେ, ପୁନି ! ଭାଇ କହୁଥିଲେ ତୁ କାହିଁକି ଆମ ଘରକୁ ଯାଉନାହୁଁ । ମାଣିକ ଟାଣି ଟାଣି ତାଙ୍କ ଘରକୁ ନେଇଯାଏ । ମନର ରାଗ ମୋର ମନରେ ମରେ । ମଧୁ ଭାଇ ଆମର ଜାତ । ସେଇଥିପାଇଁ ବୋଉ କୁହେ, ମଧୁଟି ଭାରି ଭଲ ପିଲା । ଈଶ୍ୱର ଯଦି କରନ୍ତି ତେବେ ନିଶ୍ଚୟ ମଧୁ ହାତରେ ମୁଁ ପୁନିକି ସମର୍ପି ଦେବ ।

ଦିନ ଗଡ଼ି ଯାଉଚି । ପିଲାଦିନ ଖେଳ ଭିତରେ କେଉଁଦିନ ଆମେ ଏତେ ବଡ଼ ହେଲୁ ଭାବିଲେ ଥଳ କୂଳ ମିଳେନା । ମଧୁଭାଇ ଆଜି କଲିକତାରେ କୋଉ ଅଫିସରେ କାମ କରନ୍ତି କେଜାଣି, ବରଷରେ ମୋଟେ ମାସେ ଛୁଟି ମିଳେ । ଗାଁକୁ ଆସିଲେ ମୋର ପାଇଁ ବାସନା ତେଲ, ସ୍ନୋ, ସାବୁନ ଇମିତ କେତେ ଜିନିଷ ଆଣନ୍ତି । କିନ୍ତୁ ମଧୁଭାଇଙ୍କଠାରୁ ମୁଁ ଦୂରେଇ ଦୂରେଇ ରହେ । ସେ ହସି ହସି କହନ୍ତି, ଏଇ ଲାଜ ତୋର ଦିନେ ଛଡ଼ାଇ ଦେବି ଯେ ରହ ।

ଗୋପଭାଇଙ୍କର ପିଲାବେଳେ କି ପତଳା ନକ ନକ ଚେହେରା ଥିଲା ଟିପ ମାରିଲେ ପଡ଼ିଯିବେ । ଖେଳଲାବେଳେ ଗୋପଭାଇଙ୍କି ଆମେ ସବୁଥିରେ ହରାଉ । ମଧୁଭାଇ, ମୁଁ, ବଜଲି, ଦାମିନୀ ତାଳମାରି ଚଡ଼ାଉ । ସେ ଚଢ଼ି ଉଠିଲେ ବେଳେ ବେଳେ ଆମ ଗାଲରେ ଠୋ କରି ଚାପୁଡ଼ା ମାରି ଦଉଡ଼ି ପଳାନ୍ତି । ବଡ଼ଘରର ପୁଅ ବୋଲି ଡରି ହରି ଗାଁରେ ଗୋପାଭାଇଙ୍କି କେହି କିଛି କହନ୍ତି ନାହିଁ । ସେ ବର୍ଷ ଗୋପଭାଇ ମାଟ୍ରିକ୍ ପାଶ୍ କରି ପଢ଼ିବାକୁ କଟକ ଗଲେ । ସେହି ଦିନଠୁ ଦୀର୍ଘ ଚାରି ବର୍ଷ ପରେ ଗୋପଭାଇ ବି. ଏ. ପାଶ୍ କରି ଗାଁକୁ ଫେରି ଆସିଛନ୍ତି ।

ଆଗରେ ଦଶରା । ଘରେ ତାଙ୍କର ଦୁର୍ଗା ମେଢ଼ ହୁଏ । ଗାଁ ଗୋଟାକରେ ତିନି ଯାଗା ମେଢ଼ ହୁଏ । ବଙ୍ଗାଳୀ ସାହି, ପାଟଣା ସାହି ଓ ରାଉତରା ଘର । ସବୁଠୁ ରାଉତରା ଘର ଦୁର୍ଗା ପ୍ରତି ବର୍ଷ ଭଲ ହୁଏ । ଲଢେଇ ଯାତ୍ରା ହୁଏ ।

ଗାଁ ଦାଣ୍ଡ ଲୋକଗହଳରେ ଫାଟି ପଡ଼େ । ଏତିକବେଳେ ବୋଉ ଡାକିଲା—ପୁନି, ଦାନ୍ତଘଷା ସରିଲା ? ଆରେ କଣ ଭାବୁଚୁ—ମୁଁ ଚଞ୍ଚଳ ଦାନ୍ତ ଘଷି ଉଠି ଆସିଲି । କହିଲି, ବୋଉ ଆଉରି ଦି' ଘଣ୍ଟାର କାମ ଅଛି, ତୁ ଆଜି ଏକଲା ରାଉତରା ଘରକୁ ଯା । ମୁଁ ଯିବି ନାହିଁ । ବୋଉ ଆଉ କିଛି ନ କହି ଚାଲିଗଲା ।

ଟିକିଏ ପରେ ମାଣିକ ଡାକ ଡାକ ଆସିଲା—ପୁନି, ଗାଧୋଇଯିବୁ ଆ । ବାଡ଼ିରେ ମୁଁ ଜହ୍ନି ତୋଳୁଥାଏ । ବୋଉ କହିଯାଇଥାଏ, ଆଜି ଜହ୍ନି ରାଇତା କରିବାକୁ । ମାଣିକକୁ ଦେଖି କହିଲି, ମାଣିକ ଟିକେ ରହ, ମୁଁ ଆଉ ଦି'ଟା ଜହ୍ନି ତୋଳିଦିଏ । ସେ ଟିକିଏ ରହି ଆସି ମୋ ସାଥିରେ ଜହ୍ନି ତୋଳିଲା । ଦିହେଁ ଜହ୍ନି ତୋଳୁଥାଉଁ । ପଚାରିଲି, ମାଣିକ କୁଆଡ଼େ ଯାଉଛୁ—ରାତିରେ କାହିଁକି ଆମ ଘର ଆଡ଼େ ଆସୁନା ? ମାଣିକ କହିଲା, ଯିବି କୁଆଡ଼େ ଆସିଲା ବେଳକୁ ବୋଉ ଖାଲି କଟକଟ ହେଉଚି । କହୁଛି, ଏଡ଼େ ବଡ଼ ଝିଅଟା ହେଲୁଣି, କାଲି ସକାଳେ ବା' ମା' ହେବୁ, ଯାଇ ବୁଲି ଆଜିଯାଏ ଗ୍ରାଉନୁ ? ପଚାରିଲି, ମାଣିକ ତୋର କେଉଁଠି ସମ୍ବନ୍ଧ ପଡ଼ିଲାଣିକି ? ନଇଲେ ବୋଉ କାହିଁକି ଚଡ଼ୁଛି । ମାଣିକ କହିଲା, କେଜାଣି ମୁଁ ଜାଣେନା ।

ଏତିକବେଳେ କୁଆଡ଼େ ଥିଲା ଗୋଟାଏ କଳା ଭଅଁର ଦଉଡ଼ି ଆସି ମାଣିକ ମୁହଁ ଚାରିପଟେ ଗୁଣୁ ଗୁଣୁ ହେଲା । ମାଣିକ କହିଲା, ପୁନି ଏ ଭଅଁରଟା କଣ ହଉଚମ । ମୁଁ ହସି ହସି କହିଲି, ତୋ ସୁନ୍ଦର ରୂପକୁ ଦେଖିବା ପାଇଁ ତୋର ବର ପରା ଏ ଭଅଁରଟାକୁ ଦୂତ କରି ପଠେଇଚି ଲୋ । ଦେଖୁନୁ ତୋ ମୁହଁକୁ କିମିତି ଉଡ଼ି ଉଡ଼ି ଦେଖୁଚି । ଆଉ ଗୁଣୁ ଗୁଣୁ କରି କହୁଚି, ମାଣିକ ତୋ ବରଟି ଖୁବ୍ ସୁନ୍ଦର । ଷାଠିଏ ବରଷର ବୁଢ଼ା ହେଲେ କଣ ହେବ—ପାକୁଆ ପାଟିରେ ପାନ ଖାଇଲେ ବେଶ୍ ମାନେ—ଠିକ୍ ମନ୍ଦାର ଫୁଲ ପରି । ମଧୁଶଯ୍ୟା ରାତିରେ ଯେତେବେଳେ ଠାକରା ଗାଲଦିଟା, ଲମ୍ବା ନାକ ଓ ଜହ୍ନି ମଞ୍ଜିଠୁ ତୋରା ମୁହଁ ଦେଖା ହେବ—ସେତେବେଳେ କଣ ମାଣିକର ଆଉ ମୋ କଥା ମନେ ଥିବ । ପତି ବୋଲି ତୋତେ ସେ କୋଳକୁ ଟାଣି ନେଇ ତୋର ଏଇ ତୋରା ମୁହଁରେ ବୋକ ଦେଲା ବେଳେ, ତୁ ଯେମିତି ଭୁତ ବୋଲି କହି ନ ଡରୁଲୋ ! ଦିହେଁ କରି କରି ହୋଇ ହସି ଉଠିଲୁ । ମାଣିକ କହିଲା, କାହିଁକଲେ ମୋର କାହିଁକି ବୁଢ଼ା ବର ହେବ—ତୋର ହେଉନ । ଏତିକିବେଳେ ଭଅଁରଟା ଥିଲା ଥିଲା ଉପରେ ଦିଗକୁ ଉଡ଼ିଗଲା । କହିଲି, ଦେଖ ମାଣିକ ତୋର ଏଇ ଦିଗରେ ବାହାଘର ହେବଲୋ । ଭଅଁରଟା ପରା ଖବର ଦେଇ ଉଡ଼ିଗଲାଣି । କଥା ସରିଲା

ବେଳକୁ ଜହ୍ନି ତୋଳା ସରିଥିଲା । ବାଡ଼ରୁ ଜହ୍ନିଟିକ ଆଣି ଘରେ ରଖି ପୋଖରୀ ଆଡ଼କୁ ଗଲିଲୁ ।

ବ୍ରାହ୍ମଣ ସାହି ପାର ହୋଇ ଆସିଲେ ରାସ୍ତା କଡ଼କୁ ଗାଁ ପୋଖରୀ । ପୋଖରୀ ହୁଡ଼ା ଉପରେ ମନ୍ତ୍ରଡ଼ ଏକ ଝଙ୍କା ବରଗଛ ପୋଖରୀକୁ ଅଧେ ଘୋଡ଼ାଇ କରି ରଖିଛି । ପୋଖରୀତୁଠରେ ରାଜୁଡ଼ର ବୁଢ଼ାବାପ ପଥର ପାହାଚ ବାନ୍ଧି ଦେଇଛନ୍ତି । ପୋଖରୀ ପେଟରେ ତାଳ ଗଛ ଦଶ ବାରଟା ଛନ୍ଦାଛନ୍ଦି ହୋଇ ପରି ଲଗି ଲଗି ହୋଇ ପାଣି ଦରପଣରେ କାଇତ ମୁହଁ ଦେଖୁଥାନ୍ତି । ତାଳଗଛ ଉପରେ ବାୟା ଚଢ଼େଇଙ୍କର ବସାଗୁଡ଼ା ତଳକୁ ଓହଳିଛି ।

ଆମେ ଦହେଁ ପୋଖରୀ ପାଣି ଭିତରକୁ ପଶିଲୁ । ଆଗରୁ କାଞ୍ଚନ ଅପା, କନକା-କାକୀ, ସୁମୀବୋଉ ଖୁଡ଼ୀ ପ୍ରଭୃତି କେତେ ମାଇପେ ଗାଧୋଉଛନ୍ତି । ପୋଖରୀ ଭିତରେ ଗାଧୋଉ ଗାଧୋଉ ମାଣିକ କହିଲା, ଦେଖିଲେ ପୁନି କି ସୁନ୍ଦର ପଦ୍ମ ଫୁଲଟିଏ ଫୁଟିଛି । ସତେ, ଫୁଲଟିକି ଦେଖି ଭାରି ଲୋଭ ହେଲା । ମନ ହେଉଥାଏ ପାଣି ଭିତରକୁ ପଶି ତୋଳି ଆଣିବାକୁ କିନ୍ତୁ ସାହସ ହେଲା ନାହିଁ । ସୁମୀ ବୋଉ ଖୁଡ଼ୀ ଦେଖିଲେ ଗାଳି ଦେବ ।

ଟିକିଏ ପରେ ସୁମୀବୋଉ ଖୁଡ଼ୀ ଗାଧୋଇ ସାରି ଗଲିଗଲା । କହିଲି, ମାଣିକ ଦଉଡ଼ ଯା—ସେ ଫୁଲଟା ଛିଣ୍ଡାଇ ଆଣିବୁ । ମାଣିକ ସେ ଫୁଲଟାକୁ ଆଣି ମୋ ହାତକୁ ଦେଲା । ଫୁଲଟିକୁ ଅତି ଯତନରେ ପଥର ପାହାଚ ଉପରେ ରଖି ଲୁଗା ଚପୁଡ଼ିଲି । ମାଣିକକୁ ଡାକି କହିଲି, ଗଲ ମାଣିକ ଡେରି କରନା । ମାଣିକ ଉଠି ଲୁଗା ଚପୁଡ଼ିଲା । ହାତରେ ମୁଁ ସେ ପଦ୍ମଫୁଲଟାକୁ ଧରିଥାଏ । ଦହେଁ ଗାଧୋଇ ସାରି ପାହାଚ ଉପରୁ ରାସ୍ତାକୁ ଉଠିଲା ବେଳକୁ ହଠାତ୍ ଦୃଷ୍ଟି ପଡ଼ିଲା ମୋର ଗୋପଭାଇଙ୍କ ଉପରେ । ଗୋପଭାଇ ହସି ହସି ପୋଖରୀତୁଠ ଆଡ଼କୁ ଆସୁଚନ୍ତି । ଭାରି ଲାଜ ମାଡ଼ିଲା । ଫୁଲକୁ ଦେଖି ସେ ଏଇଲାଗେ କେତେ ରକମ ଅର୍ଥ କରିବେ ।

ଗୋପଭାଇଙ୍କ ଡରରେ ଫୁଲଟାକୁ ରାସ୍ତାକୁ ଫୋପାଡ଼ି ଦେଲି । ଆମକୁ ଦେଖି ଗୋପଭାଇ ସେତେବେଳକୁ ମୁରୁକି ହସା ଦେଲେଣି । ତାଙ୍କ ଆଡ଼କୁ ଗଲି ଗଲି ବାଆଁ ବେଇ ଅନାଇଲା ବେଳକୁ ଦେଖେ ତାଙ୍କ ଆଖି ଦୁଇଟା ଆମ ଉପରେ ଲାଖି ରହିଚି । ଓଦାଲୁଗା ଦେହ ମୁଣ୍ଡରେ ଜଡ଼ି ଯାଉଥାଏ । ଭାରି ଅଡୁଆ ଅଡୁଆ ଲାଗିଲା । ଦହେଁ ଚଞ୍ଚଳ ଚଞ୍ଚଳ ପାଦ ପକାଇ ଆଗକୁ ଗଲିଲୁ ।

ରାତରେ—

ସତୁଦିନ ପରି ଚନ୍ଦ୍ର ଉଦିଆ ମାରି ଜହ୍ନମାମୁଁ ଆକାଶରେ ମୁହଁ ଦେଖାଇଲେ । ଜହ୍ନ ଆଲୁଅରେ ଆମ ଘର ଦୁଆର ହସି ଉଠିଲା । ଭାତ ରାନ୍ଧ ସାରି ଡାଅଣ ବସାଇଚ, ମାଣିକ ଆସି ପହଞ୍ଚିଲା । ବୋଉ ନ ଥାଏ । ମାଣିକ କହିଲା—ପୁନି, ଆ ଦୁଆରେ ବସି ଖୁସିଗପ କରିବା । ଥଟ୍ଟା କରି କହିଲି, ତୋର ସିନା ବାହାଘର ଦିନ ପାଖେଇ ଆସୁଚି ବୋଲି ଲେ ମାଣିକ, ମନଟା ଯାଇ ଦୂର ପବନରେ ଉଡୁଚି । ସେଇଥିପାଇଁ ଖୁସିଗପ, ମିଠା କଥା ସବୁ ତତେ ଭଲ ଲାଗୁଚି । ଆମର କଣ, ଆମକୁ ସେସବୁ ପିତା । ମାଣିକ କହିଲା, ହଉଲେ ରହି ରହ ଟୋକି ତୋର ତ ପୁଣି ଦିନକାଳ ଆସିବ । ନୂଆ ଖରା ଶୀତ ପଛେ ପଛେ ବସନ୍ତ ଆସିଲେ କୋଇଲିଟା ଯିମିତି ପ୍ରେମରେ ଗଦ ଗଦ ହୋଇ ଆମ୍ବ ବଉଳର ମହୁଆ ବାସନା ଭିତରୁ ଗାଏ "କୁହୁ" "କୁହୁ" ସିମିତିଲେ ଦିନେ ତୋର ଯଉବନରେ ଅଦିନ ମଳୟର ପରଶ ଚହଟି ସିବ । ଆଉ ତୁ ବି ପ୍ରେମରେ ଗଦ ଗଦ ହୋଇ କହିବୁ, ମାଣିକ ! ଏଇ ଜୋଛନା ରାତଟା କେଡ଼େ ସୁନ୍ଦର ଲେ—ଇମିତି ତ ମୁଁ ଆଗରୁ ଜାଣି ନଥିଲି । ମୁଁ କହିଲି, ଯାଲେ ଥୋବଣ୍ଡି—ତୋ ପରି କଣ ମୁଁ ହେଇଚି । ମାଣିକ ହସି ହସି କହିଲା, ତୁଳସୀ ଗଛ, ଆହା ଆହା କିଛି ଜାଣେ ନା । ଏତିକି କହି ମୋ ପିଠିରେ ହାତଟା ମାରିଦେଲା । ଚିଡ଼ି ଉଠି କହିଲି, ମାଣିକ ତୋର ବଜାରୁଣୀ ଢଙ୍ଗ ଏ ଯାଏ ଗଲା ନାହିଁ । କାଲି ସକାଳେ ପରି ବା'ସା ହେଇ ଘର ସଂସାର କରିବୁ । ମାଣିକ ମୋର ମୁହଁଖିଙ୍କର କଥା ଶୁଣି ରାଗିଗଲା । ମୁହଁ ଶୁଖେଇ କହିଲା, ହଉଲେ ଆମ ବଜାରୁଣୀ ଆମଠି ଥାଉ । ତୋ କତିକି ବଳେ ବଳେ ଆସୁଚି ବୋଲି ଅସୁଖ ଲାଗୁଚିତ ମନା କରି ଦେଉନୁ । ଏତିକି କହି ଘୋଷା ହୋଇ ଚାଲି ସିବାକୁ ବସିଲା । ମନଟା ମୋର ଦୁଃଖରେ ନଇଁଆସିଲା । ସତେ, ମାଣିକକୁ କାହିଁକି ଏଡ଼େ କଥାଟା କହିଦେଲି । ମାଣିକ—ଠିକ ଆକାଶର କୁଲୁକୁଲିଆ ଟିକି ଜହ୍ନଟି ପରି ସୁନ୍ଦର ଏଇ ମାଣିକ । ଖଣକରେ ସେ ପରକୁ ଆପଣାର କରିନେବ—ପର ପାଇଁ ଜୀବନ ଦେଇଦେବ । ତବତବିଟା, କେତେବେଳେ କଣ କହେ—ତା' କଥାକୁ କେହି ଧରନ୍ତୁ ନାହିଁ । ମୋତେ ପୁଣି ସେ ଜୀବନଠୁ ଅଧିକ କରେ । କାହିଁକି ମୁଁ ତା ମନରେ ଦୁଃଖ ଦେଲି ।

କଥା ବାଆଁରେଇ ତା ହାତ ଧରି କଅଁଳେଇ କହିଲି, ମାଣିକ ସତେ କଣ ରାଗିଲୁ— ମୋ ରାଣ ଏଇ ଟିକିକ କଥାକୁ ଭୁଲିଯାଆ । ସେ ଶୁଣିଲା ନାହିଁ, ହାତ ଛଡ଼ାଇ ଖଣ୍ଡେ ଦୂର ଚାଲିଗଲା । ମୁଁ ହସି ହସି କହିଲି, ମାଣିକ ଫେରି ଆ—ତମ ଭାଇଙ୍କ ରାଣ । ହଠାତ୍ ମାଣିକ ଶୁଖିଲା ମୁହଁରେ ହସ ଉକୁଟି ଉଠିଲା । ଫେରି ଆସି ମୋ ପିଠିରେ ଦୁମ୍ ଦୁମ୍ କରି ଦି'ବିଧା ଥୋଇଦେଲା । କହିଲା, କାହିଁକି ମୋ ଭାଇ ରାଣ ପକାଇଲୁ ।

ମୋ ଭାଇ ଦୁଃଖରେ ନା ସୁଖରେ । ମୋ ଭାଇକୁ ଖାଇବାକୁ ଦେଉ ନା ପିଇବାକୁ ଦେଉ । ହସି ହସି କହିଲି, ସତେ ମାଣିକ ତମ ଭାଇ କେବେ ଆସୁଚନ୍ତି, ସେଦିନୁ ତ ଗଲେଣି ।

କାହିଁକି ଲୋ, ମୋ ଭାଇକୁ ଏତେ ପାଣି ପକେଇ ଖୋଜୁଚୁ । ମୋ ଭାଇକୁ ବାହା ହେବୁ କି ?

ଯୋଉ ସୁନ୍ଦର ଭାଇ ତ ?

ସତେ, ବଳେଇ ଆଖିବୁଜି ଦୁଧ ପିଉଚ । ମୋତେ ମୋ ଭାଇ ସୁନ୍ଦରକି—ମୋତେ ମୋ ଭାଇକୁ ଭଲ ପାଉକି । ସେଇଥିପାଇଁ ପିଲାବେଳେ ମୋ ଭାଇକୁ ଦଣ୍ଡେ ନ ଦେଖିଲେ ବଣା ହେଉଥିଲୁ—ତୁ ସେଇ ପୁନି ନାଁ ! ଯା' ଲୋ ସେ ଫୁଟାଣୀ କଥା ଆଉ କା.........

କଥା ପାଟିରେ ଅଛି: ବୋଉ ଆସି ପହଞ୍ଚିଲା । ପଚାରିଲା—ପୁନି, ସେପେଇ ସରିଲା ? ଦେଖିଲି ଘଅଣ ହୋଇଗଲାଣି । କହିଲି, ହଁ ବୋଉ ଚୁନି ଦାଣ୍ଡରେ ଖେଳୁଚି— ଡାକି ଆଣ—ଖାଇବା । ବୋଉ ଚୁନି, ଚୁନିରେ ଡାକି ଦାଣ୍ଡକୁ ଗଲା । ମାଣିକ କହିଲା, ଯାଉଚି ପୁନି । କହିଲି, କାଲି ଆସିବୁ—ତାଙ୍କର ଗୁଣ ।

ପୁଣି କା' ଗୁଣ ପକାଇଲୁ । ଫେର ପଡ଼ି ମାଣିକ କଟମଟ ଆଖିରେ ଅନାଇଲା । ତମ ଭାଇଙ୍କ ଗୁଣ ନୁହେଁ ମ, ତମ ବରଙ୍କ ଗୁଣ ।

ପୋଡ଼ାମୁହିଁ ଖାଲି ବର ବର ହୋଲି ପାଣି ପିଉନୁ, ଏତେ ଯଦି ମନ ହେଉଚି ମୋ ଭାଇଙ୍କି ବର କରି ମୋ ନୂଆବୋଉ ହେବୁ ଆସୁନୁ । ଚୂଲିମୁଣ୍ଡରୁ ଗୋଟାଏ ଆଣି ମାଣିକକୁ ମାରିବାକୁ ଦଉଡ଼ିଲି ; କିନ୍ତୁ ମାଣିକ ହସି ହସି ଦଉଡ଼ି ପଳାଇଲା—ପାରିଲି ନାହିଁ ।

ରାତିରେ ଶୋଇଲାବେଳେ ମାଣିକର କଥା କେଇ ପଦ ମନରେ ଘୂରେଇ ବୁରେଇ ହେଲା । ମଧୁଭାଇ, ସତେ ମଧୁଭାଇଙ୍କି ମୁଁ କେତେ ଭଲ ପାଉଥିଲି । ମଧୁଭାଇଙ୍କି ପାଇବା ପାଇଁ ମନରେ କେତେ ସୁନେଲି ଛବି ଆଙ୍କୁଥିଲି, କିନ୍ତୁ ତାଙ୍କର ବାଟରେ ଯାଉଁ ଯାଉଁ ଆଉ ଜଣକର ସ୍ନେହ ମୋତେ ଆଜି ଅନ୍ଧ କରି ଦେଇଚି । ବାଟ ଭୁଲି ଅମଡ଼ା ପଥରେ ବୁଲୁଚି । ସତେ କଣ ଏଇ ପଥରେ ମୋର କଣ୍ଟା ଝଟା କିଛି ନାହିଁ ! ସତେ କଣ ଏଇ ଅମଡ଼ା ପଥ ଫୁଲ ପରି ସୁକୋମଳ ହେବ ! ଗୋପଭାଇ—ସତରେ ଗୋପଭାଇ କଣ ମୋର ହେବେ—ମୋତେ ନିଜର କରିବେ । ମରୀଚିକା ପଛରେ ଦଉଡ଼ୁ ନାହିଁ ତ ? ଏଇ ପ୍ରଶ୍ନର ଉତ୍ତର ହୃଦୟ ଭିତରୁ କେହି ଦେଇ ପାରିଲା ନାହିଁ । ଭାବନା ଦଉଡ଼ିଲା ଆଗକୁ......



ଦ'ଦିନ ହେଲା କାହିଁକି ଗୋପଭାଇଙ୍କର ଦେଖା ନାହିଁ । ଆକାଶରେ ଖଣ୍ଡ ଖଣ୍ଡ ହୋଇ ବଉଦ ଥିରି ପବନରେ ଭାସି ଚାଲୁଥିଲା । ତାରାଗୁଡ଼ା ମିଞ୍ଜି ମିଞ୍ଜି ହୋଇ ଜଳୁଥିଲେ, ଜହ୍ନ ଖେଳୁଥିଲା ଲୁଚକାଳି । ପୃଥିବୀ ଉପରେ କେତେବେଳେ ଅଧେ ଆଲୁଅ—ଅଧେ ଛାଇ । ଶ୍ରାବଣ ବାଦଲ ଛୁଟି ଚାଲେ ଆଗକୁ—ମନ ଖେଳେ ଲୁଚକାଳି ଠିକ୍ ଏଇ ସରଗର ଶଶୀ ପରି—ହୃଦୟରେ ତା'ର ଛାଇ ପଡ଼େ—ବେଳେ ବେଳେ ଆଲୁଅ । ଛାଇ—ହୃଦୟରେ ଗଭୀର ଦାଗ ଟାଣିଦିଏ । ସେ ଦାଗ ଲିଭେ ନା । ମଣିଷ ଝୁରି ଝୁରି ଝରି ପଡ଼େ । ଆଲୁଅ ପଡ଼େ—ହୃଦୟ ଆନନ୍ଦରେ ନାଚି ଉଠେ—ସମୁଦ୍ରର ଢେଉ ପରି । ସୁଖ, ଦୁଃଖ, ଆନନ୍ଦ, ବିରହ ମଣିଷ ଜୀବନରେ ଠିକ୍ ଏଇ ଛାଇ, ଆଲୁଅ ପରି । ସେଇଆକୁ ସାଥୀ କରି ଦ'ଦିନର ମଣିଷ ମାଟି, ଗୋଡ଼ିମିଶା ଧୂଳିର ଧରଣୀରେ ଆଗେଇ ଚାଲେ ।

ମାଉସୀ ମାଉସୀ କିଏ ପଦାରୁ ଡାକିଲା । ଭାବନାର ତନ୍ଦ୍ରା ମୋର ଭାଜିଗଲା । କାନ ପାତିଲି, ଗୋପଭାଇଙ୍କ ସ୍ୱର । ଦାଣ୍ଡ ଦରଜା ଖୋଲି ଦେଲି । ସେ ହସି ହସି ଘର ଭିତରକୁ ପଶି ଆସିଲେ । ମସିଣାଟା ଆଣି ଦୁଆରେ ବିଛାଇ ଦେବାକୁ ଗଲି । ସେ ମସିଣାଟାକୁ ଟାଣି ନେଇ କହିଲେ, ଥାଉ ଥାଉ, ନିତି ଦିନିଆ କୁଣିଆଙ୍କର ମସିଣା ଲୋଡ଼ା ହୁଏ ନାହିଁ । ଏହା କହି ତଳେ ବସି ପଡ଼ିଲେ । ଆମ ଚାଳ ଡେଇଁ ମେଞ୍ଚାଏ ଜହ୍ନ ଆଲୁଅ ତାଙ୍କ ମୁହଁରେ ପଡ଼ୁଥାଏ ।

ମୁଁ କିଛି କହିଲି ନାହିଁ । ଘଡ଼ିଏ କାଳ ନୀରବରେ ବିତିଗଲା ପରେ ପାଟିଟା ଖଜବଜ ହେଲା । କହିଲି, ଦ'ଦିନ ହେଲା କୁଆଡ଼େ ଥିଲ ଗୋପଭାଇ—କାହିଁକି ଦେଖା ନ ଥିଲ । ସେ କହିଲେ, ଆଉ ଦ'ଟା ଦିନ ଗଲେ ଦୁର୍ଗାପୂଜା । ସେଇଥିପାଇଁ ଟିକିଏ

କାମରେ ବ୍ୟସ୍ତ ଥିଲି—ଏଆଡ଼େ ଆସି ପାରିନି । ମନଟା କିନ୍ତୁ ତୋରି କଥାରେ ପଡ଼ିଥାଏ । କହିଲି, ବଡ଼ଲୋକର ଲଗାମ ମୁକୁଳା ଘୋଡ଼ାଚଢ଼ା ମନଟା କା'କଥାରେ ଥିର ହୋଇ ରହି ପାରେନା ଗୋପଭାଇ—ସେ ସବୁବେଳେ ବୁଲୁଥାଏ ।

କିନ୍ତୁ ଉପଯୁକ୍ତ ଯନ୍ତାର ସ୍ନେହ କୋରଡ଼ା ମାଡ଼ରେ ପୁଣି ତ ଆୟତ୍ତ ହୁଏ । ସ୍ନେହ, ପ୍ରେମ, ମୈତ୍ରୀ ହୃଦୟକୁ ହୃଦୟ ସହିତ ବାନ୍ଧିରଖେ । ଗୋଟିକର ଅଭାବ ଘଟିଲେ—ଜୀବନର ସବୁ ରହିଯାଏ ଖଣ୍ଡିଆ ଦରପନ୍ତରିଆ । କହିଲି, କେଜାଣି ଗୋପଭାଇ, ସେ ସବୁ ବଡ଼ ବଡ଼ କଥା ମୁଁ କିଛୁ ବୁଝିପାରେ ନା । ଖାଲି ଏତିକି ଜାଣେ—ବଡ଼-ଲୋକର ମନ ଚରିଦନ ବଡ଼—ଆଖିଟା ବି ବଡ଼—ବଡଲୋକର ସବୁ ବଡ଼ । ଗୋପଭାଇ ହସିଲେ । କହିଲେ, ପୁନି ଦୁନିଆଠୁ ବହୁ ଦୂରରେ ତୁ—କିଛୁ ଜାଣି ନାହୁଁ । ଦ'ଦିନ ପାଇଁ ମଣିଷ ଆସେ ଏଇ ମାଟି ଗୋଡ଼ ଘାଇଜକୁ, କେହି ବଡ଼ ନୁହେଁ କି କେହି ଶ୍ରେଷ୍ଠ ନୁହେଁ । ଅହମିକାର ମାୟା ଜାଲ ତୁଟିଲେ ସମସ୍ତେ ସମାନ । ହସି ହସି ପୁଣି ଦିନେ ସମସ୍ତେ ଫେରିଯିବା ଏଇ ମାଟି ମାଆ କୋଳକୁ । ବଡ଼ଲୋକ କି ଗରିବର କିଛି ଚିହ୍ନ ବର୍ଣ୍ଣ ବି ରହିବ ନାହିଁ । ଗୋପଭାଇଙ୍କର ଏଇଟା ଅନ୍ତରର କଥା କି ମୋର ମନ ରଖିବାକୁ କହିଲେ କିଛି ବୁଝି ପାରିଲି ନାହିଁ । କହିଲି, ସତେ କଣ ତା ହେଲେ ଆମ ପରି ଗରିବଲୁଡ଼ାଙ୍କୁ ଗୋପଭାଇ ଏତେ ଭଲ ପାଆନ୍ତି । ସେ ମୋ ଗାଲରେ ଶ୍ରେଷ୍ଠ ଚୁପୁଡ଼ାଟି ବସାଇ କହିଲେ, ହଁଲୋ ହଁ । ତାଙ୍କ ଆଡ଼କୁ ଅନାଇଲି । ଦେଖିଲି, ଅତୃପ୍ତ ନୟନରେ ମୋରି ଆଡ଼କୁ ଅନାଇଛନ୍ତି । କଣ ଗୋଟାଏ ଅଜଣା ବାସନା ସତେ ଯେପରି ଆଖି ଭିତରେ ଜଳି ଉଠୁଚି । ଲାଜ ମାଡ଼ିଲା—ଦୂରକୁ ଘୁଞ୍ଚି ଆସିଲି ।

ଟିକକ ପରେ ବୋଉ ଆସି ପହଞ୍ଚିଲା । ବୋଉକୁ ଦେଖି ଗୋପଭାଇ କହିଲେ, ମାଉସୀ ଦଶହି ବେଳକୁ ଗୁରଦିନ ପାଇଁ ପୁନିକି ଆମ ଘରକୁ ପଠାଇବ । ଆଗରୁ କହି ରଖିଲି । ନ ପଠେଇଲେ ବୋଉ ଭାରି ରାଗ ହେବେ । ଭାବିଲି, କହିଦେବି କି ବୋଉ ରାଗ ହେବେନି—ନଜେ । କିନ୍ତୁ ବୋଉ ସାମନାରେ ତୁଣ୍ଡ କଥା ତୁଣ୍ଡରେ ରହିଲା । ବୋଉ ନାଁରେ ଛଳନା କରି ମୋତେ ପାଖକୁ ନେବା ଗୋପଭାଇଙ୍କର ଗୋଟିଏ ସ୍ୱତମତ ଫିକର । ବୋଉ କହିଲା, ହଉ ଗଲେ ଯିବ । ତୁ ଯେତେବେଳେ କହୁଚୁ—ତୋ କଥାରୁ କଣ ମାଉସୀ ବାହାରି ଯାଉଛି ଯେ—ଏତେ ତାଗିଦା କରୁଚୁ । ବୋଉ କଥା ଶୁଣି ଗୋପଭାଇଙ୍କର ମୁଖ ଅଜଣା ଆନନ୍ଦରେ ଉଜଳି ଉଠିଲା । କେତେ ସୁଖ ଦୁଃଖ ପରେ ଗାଧ ଧନ ଘଡ଼ିକି ଗୋପଭାଇ ବିଦା ହେଲେ ।

ଭାବନା ଚେଇଁ ଉଠିଲା ମନରେ । ଗୋପଭାଇ କାହିଁକି ମୋତେ ଏତେ ପାଖକୁ ଟାଣି ନେବାକୁ ଉଦ୍‌ବଗ୍ନ ? ଛଳନା କରି ମୋତେ ଠକୁ ବାହାନ୍ତି ତ ? ନା ନା

ଗୋପଭାଇ ସେପରି ନୁହଁନ୍ତି । ମନଟା ଗୋପଭାଇଙ୍କ ପ୍ରତି ସ୍ନେହରେ ଭାରି ହୋଇ ଉଠିଲା । ଇଚ୍ଛା ହେଲା ଯାଇ ତାଙ୍କ କୋଳରେ ଲୋଟିପଡ଼ି କହିବାକୁ, ଗୋପଭାଇ ପୁନି ଯେ ତୁମରି—ତୁମରି ସ୍ନେହରେ ସେ ଆଜି ଅନ୍ଧ୍ରୁଣୀ ହୋଇଯାଇଛି । ମୁଆଡ଼େ ତମେ ହାତ ଧରି ନେବ—ସେ ଚାଲିବ । ଭଲ ବାଟ ହେଉ ବା ଖରାପ ବାଟ ହେଉ ସେ ତୁମରି ପଥରେ ପଥିକା ।

ଶରତର ବରଷା ଧୂଆ ନୀଳ ଆକାଶରେ ଦେବୀ ପୂଜାର ଆଗମନୀ ଶଙ୍ଖ ବାଜି ଉଠିଲା । ହଗ-ହଗନ୍ତି ତାର ପ୍ରତିଧ୍ୱନି ଗାଇ ଉଠୁଥାଏ । ନଈ ପଠାରେ ଛଣ ଫୁଲ ହସି ହସି ଲୋଟି ପଡ଼ୁଥାଏ । ପୃଥିବୀର ମାଟି ଶରତ ଶୋଭାରେ ଭରସି ଯାଇଥାଏ ।

ଆଜି ସପ୍ତମୀ । ରାଉତରା ଘରେ ଦେବୀ ପୂଜାର ଧୁମଧାମ । ଗାଁରେ ଆଉ ଦୁ'ଜାଗାରେ ଦେବୀ ପୂଜା । ପାଣବାଜା, ଢୋଲଙ୍ଗି ବାଜାରେ ଗାଁଟା ଉଚ୍ଛୁଳି ଉଠୁଥାଏ । ସମସ୍ତଙ୍କ ମୁହଁରେ ହସ—ସମସ୍ତଙ୍କ ଘରେ ଆନନ୍ଦ ଓ ଆଲୋକ ।

ସଞ୍ଜବେଳେ ମାଣିକ ଆସି ପହଞ୍ଚିଲା । କହିଲା, ପୁନି !···ଏ ବର୍ଷ ଗୋପଭାଇଙ୍କର ଭଲ ଯାତ୍ରା ଦଳ ଆସିଛନ୍ତି । କାଲି ଯାତ୍ରା ହେବ । ମୁଁ ଆସି ଏଇଠି ଶୋଇବି, ରାତିରେ ସାଙ୍ଗ ହୋଇ ଯାତ୍ରା ଦେଖି ଯିବା । କହିଲା, ହଁ ମାଣିକ ତୁ କାଲି ସଞ୍ଜବେଳୁ ଚାଲି ଆସିବୁ । ସାଙ୍ଗ ହୋଇ ଦେବୀ ଦେଖି ଯିବା—ପୁଣି ରାତିକି ଯାତ୍ରା ଦେଖି ଯିବା । ମାଣିକ ହଁ ଭରିଲା । ତା'ପରେ କେତେ ଦିନଆ ସୁଖ-ଦୁଃଖ ପରେ ସେ ଘରକୁ ନେଉଟିଲା । ମନେ ପଡୁଥାଏ, ଗୋପଭାଇ କହିଥିଲେ ଦେବୀ ପୂଜାକୁ ତାଙ୍କ ଘରକୁ ନେବା ପାଇଁ । କାହିଁ ଆଜିତ ଆସିଲେ ନାହିଁ ! ବୋଧହୁଏ କାଲି ଆସିବେ—ମନକୁ ପ୍ରବୋଧ ଦେଲା ହୃଦୟ ।

ତହିଁଆର ଦିନ ଅନେଇ ଅନେଇ ସଞ୍ଜ ବୁଡ଼ିଲା । କାହିଁ ଗୋପଭାଇଙ୍କର ଆଜି ବି ଦେଖା ନାହିଁ । ମନ ବାଡ଼ୁଥିଲେ ନା କଣ ! କିଏ ଜାଣେ ବଡ଼ଲୋକ—ହୁଏତ ଭୁଲି ଯାଇଥିବେ । ବୋଉ ଯାଇଥାଏ ରାଉତରା ଘରକୁ ଦିନରୁ । ଗୋପଭାଇ ବୋଉକୁ ଖବର ଦେଇଥାଏ । ଭାବିଲା, ବୋଉ ଆସିଲେ ସବୁ ଖବର ଜଣାପିବ ।

ସଞ୍ଜ ବୁଡ଼ିଲା । ଜହ୍ନ ଆଲୁଅରେ ଆମ ଘର ଦୁଆର ଗାଧୋଇ ପଡ଼ିଲା । କଇଁଫୁଲ ମୁହଁରେ କିଏ ହସ ମେଞ୍ଚାଏ ବୋଳିଦେଲା । ଶେଫାଳୀ ଗନ୍ଧ ଗ୍ଭେରେଇ ସମୀର ଛୁଟୁଥାଏ ଦେବୀଙ୍କ ଚରଣ ତଳେ ତା'ର ବନ୍ଦନା ଜଣାଇବାକୁ ।

ଘାତ ଗାଳୁଥାଏ । ବୋଉ ଆସି ପହଞ୍ଚିଲା । ଶୁଖିଲା ମୁହଁଟା ତା'ର ଜହ୍ନ ଆଲୁଅରେ ବେଶ୍ ବାରି ହେଉଥାଏ । ପଚାରିଲି, ବୋଉ ଗୋପଭାଇ ଏତେ ଠକ—କହୁଥିଲେ ପରା ମୋତେ ନେବାକୁ—ଖୁବ୍ ତ ନେଲେ ! ବୋଉ କହିଲା, ଗୋପକୁ ଦି'ଦିନ ହେଲା ଜର । କାଲି ଟିକିଏ କମ ଥିଲା—ଆଜି ଜରର ପ୍ରକୋପ ବେଶି । ରାଉତର ଘରେ କାହାର ମନରେ ସୁଖ ନାହିଁ । ମନ ସୁଖ ଥିଲେ ସିନା ସବୁ ସୁଖ । ମନ ଅଶାନ୍ତ ଥିଲେ ସବୁ ସୁଖ ସୁଆଦ ପିତା । ବୋଉ କଥା ଶୁଣି ମୋ ଦେହରେ ଯେପରି କିଏ ପିନ୍‌କଣ୍ଟା ଫୋଡ଼ି ଦେଇଗଲା । ଯେଉଁ ମନ ଦଣ୍ଡକ ଆଗରୁ ଗୋପଭାଇଙ୍କି ଭୁଲ ବୁଝୁଥିଲା, ସେଇ ମନ ପୁଣି ମୋର ବଦଳିଗଲା । ଆହା ଗୋପଭାଇ ! ସତେ କ'ଣ ଡାହାଣୀ ଜର ମୋର ଗୋପଭାଇଙ୍କ ସବୁ ସୁଖ ସରାଗ ଜାଳି ପୋଡ଼ି ଦେଇଚି ! ଗୋପଭାଇଙ୍କ ସୁନ୍ଦର ଚେହେରା କଳା ପଡ଼ି ଯାଇଥିବ । ହସ ନଥିବ—ଶୁଖିଲା ମୁହଁ । ମନ ହେଉଥାଏ ଗୋପଭାଇ କତକ ଦଉଡ଼ି ଯିବାକୁ—ତାଙ୍କର ସେବା କରିବାକୁ ।

ଏତିକିବେଳେ ମାଣିକ ଆସି ପହଞ୍ଚିଲା । କହିଲା, ଚାଲ ପୁନି ଦେଖା ଦେଖି ଯିବା । ମନର ସବୁ ସରାଗ ମୋର ମଉଳି ଯାଇଥିଲା । କହିଲି, ତୁ ଯା ମାଣିକ, ମୁଁ କାଲି ଯିବି । ସେ ଛାଡ଼ିଲା ନାହିଁ । ହାତଧରି ଟାଣିଲା କହିଲା, ତୁ ନ ଗଲେ ମୁଁ ଯିବି ନାହିଁ । ମନ ଦୁଃଖ ମନରେ ମାରି ମାଣିକ ସାଥିରେ ଗଲି । ରାଉତର ଘର ଦେଖା ଦେଖିଲା ବେଳେ ମନଟା ମୋର ଗୋପଭାଇଙ୍କି ଖୋଜୁଥିଲା । ମନ ହେଉଥାଏ ତାଙ୍କ ଘରକୁ ଯାଇ ଗୋପଭାଇଙ୍କି ଦେଖିବାକୁ—କିନ୍ତୁ ମାଣିକ ଥାଏ ବୋଲି ଗଲି ନାହିଁ । ଦେଖା ଦେଖି ଫେରିଲି । ମାଣିକ କହିଲା, ରାତିରେ ଯାତ ଦେଖିଯିବୁ ନାହିଁ ପୁନି ? ମନା କଲି । କହିଲି, ତୁ ଯା' ମାଣିକ, ଆଜି କା ସାଥିରେ ଯିବୁ ? ସେ ମୋ ହାତଟା ଧରି କହିଲା, ସତ କହ ପୁନି ତୋର କଣ ହେଇଚି ? ତୋ ମୁହଁଟା କାହିଁକି ଶୁଖି ଯାଇଚି ? କିଛି କହି ପାରିଲି ନାହିଁ । କିଏ ଯେପରି କଣ୍ଠରୋଧ କଲା । ସେ କେତେ ଚେଷ୍ଟା କଲା—କିନ୍ତୁ ତଥାପି ମୋଠୁ କଥା ନେଇ ପାରିଲା ନାହିଁ । ଆଖିରୁ ମୋର ଲୁହଧାର ଗଡ଼ିପଡ଼ିଲା । ମାଣିକ କାନ୍ଦିଲା । କହିଲା, ପୁନି କହିବୁନି କ'ଣ ହେଇଚି ? ମିଛରେ କହିଲି, ବାପାଙ୍କ କଥା ବାର ବାର ମନେ ପଡ଼ୁଚି—ଅତୀତ ଯେପରି ଛବି ଛବି ହେଇ ମୋ ଆଖି ଆଗରେ ଦେଖାଯାଉଚି । ମାଣିକ ଭୁଲିଗଲା—ମୋ କଥାକୁ ସତ ମଣିଲା । ସେ ଜାଣିଲା ନାହିଁ ମୋ ଅନ୍ତରର ଅବୁଝା ଭାଷା । ପ୍ରବୋଧ ଦେଇ ଚାଲିଗଲା । ଦୁନିଆରେ ସମସ୍ତେ ଇମିତି—କିଏ କାହାର ଅନ୍ତର ବୁଝେ ?

ରାତିରେ ଭଲ କରି ନିଦ ହେଲା ନାହିଁ । ତା' ପରଦିନ । ଗୋପଭାଇଙ୍କି ଦେଖି-ବାକୁ ମନଟା ସବୁବେଳେ ବ୍ୟାକୁଳ ହେଲା । ବୋଉକୁ କହିଲି, ବୋଉ ଗୋପ

ଭାଇଙ୍କୁ ଟିକେ ଦେଖିଯିବ । ବୋଉ ରାଜି ହେଲା । କହିଲା, ଚାଲ, ସେ ତୋତେ କେତେ ଭଲ ପାଏ, ଅସୁଖ ବେଳେ ତୁ ଟିକେ ତାକୁ ନ ଦେଖି ଗଲେ ସେ ଭାରି ଦୁଃଖ କରନ୍ତି । ମନେ ହେଲା ବୋଉ ଯେପରି ଆମ ଦୁହିଁଙ୍କର ଭଲ ପାଇବାର ସନ୍ଧାନ କେଉଁଦିନୁ ପାଇ ସାରିଛି ।

ମୁଁ ଗଲାବେଳକୁ ତାଙ୍କୁ ଟିକେ ନିଦ ହୋଇଛି । ମାଉସୀ କହିଲେ, ପୁନି ତୁ ଯା —ତା ପାଖରେ ବସିଥା, ନିଦରୁ ଉଠାଇବୁନି । ମୁଁ ଖଟ ଉପରେ ତାଙ୍କ ମୁଣ୍ଡ ପାଖରେ ବସିପଡ଼ି ଅନାଇଲି, ଏତିକିଟା ଦିନ ଜରରେ ତାଙ୍କ ମୁହଁଟା ଶୁଖି ପାଉଁଶିଆ ଦେଖାଯାଉଛି । ତାଙ୍କ ମୁଣ୍ଡରେ ହାତ ମାରି ଆଉଁସି ଦେବାକୁ ଲାଗିଲି । ଟିକିଏ ପରେ ଗୋପଭାଇଙ୍କ ନିଦ ଭାଙ୍ଗିଲା । ମୋ ଆଡ଼କୁ କରୁଣ ଦୃଷ୍ଟିରେ ଅନାଇଲେ । କହିଲେ, ଏତେ ଦିନେ ପୁନି ମନେ ପଡ଼ିଲା ! କହିଲି, ମୁଁ କ'ଣ ଜାଣିଥିଲି ଗୋପଭାଇ ତମ ଦେହ ଇମିତି ଖରାପ ବୋଲି ! କାଲି ରାତିରେ ବୋଉ କହିଲାରୁ ଯିନା ଜାଣିଲି । ମୁଁ ତ ଆଉରି ତମ ଉପରେ ଗୋସା ହୋଇଥିଲି । ସେ ହସିଲେ । କହିଲେ, କାହିଁକି ତୋତେ ଆଣିବାକୁ ଯାଇ ନ ଥିଲି ବୋଲି ? ମୁଣ୍ଡ ହଲାଇ ହଁ କଲି । ସେ ମୋ ଗାଲରେ ଛୋଟ ଚାପୁଡ଼ାଟିଏ ବସାଇ ଦେଲେ । ପଚାରିଲି, ଦେହ କିପରି ଅଛି ? କହିଲେ, ଦେହ ଆଜି ଭଲ ଲାଗୁଛି—କାଲି ପଅରି ଆଡ଼କୁ ସମ୍ପୂର୍ଣ୍ଣ ଭଲ ହୋଇଯିବ ବୋଲି ମନେ କରୁଛି । କହିଲି, ସତେ ଗୋପଭାଇ ବୋଉଠାରୁ ତମର ଦେହ ଖବର ଶୁଣି କାଲଠୁ ମନରେ ଭାରି ଦୁଃଖ । ରାତିରେ ତମରି କଥା ଭାବି ନିଦ ହେଲା ନାହିଁ । କେତେ ଠାକୁରଙ୍କୁ ଡାକିଛି— ଠାକୁରେ ଗୋପଭାଇଙ୍କୁ ଭଲ କରିଦିଅ । ଗୋପଭାଇ କହିଲେ, କାହିଁକି ମୁଁ ତୋର କିଏ କି ଏତେ ଠାକୁରଙ୍କୁ ଡାକୁଚୁ ? ମୁଁ ମରିଗଲେ ତୋର କ'ଣ ହୋଇଯିବ ? କହିଲି, ଗୋପଭାଇ ସିମିତିକା କଥା କହିବ ନାହିଁ । ମୋର ମୁହଁ ଶୁଖା କଥା ଶୁଣି ତାଙ୍କ ଓଠରେ ହସ ଫୁଟି ଉଠିଲା ।

ବିଛଣାରୁ ଉଠି ବସିଲେ । ଆଡ଼କୁ ସାଡ଼କୁ କ'ଣ ଦେଖି ମୋତେ କୋଳକୁ ଟାଣି ନେଇ ମୋ ଗାଲରେ ସରୁ ଚୁମ୍ବନ ଆଙ୍କି ଦେଲେ । ଲାଜରେ ମୁଁ ଉଠି ପଳାଇବାକୁ ବସିଲି । ସେ ମୋ ହାତ ଭିଡ଼ି ଧରିଲେ ଜୋରରେ । କହିଲି, ଛିଃ ଗୋପଭାଇ ତମ ଦେହ ଖରାପ—ମୋତେ ଛାଡ଼ି ଦିଅ । ସେ ହାତଟା ଅନିଚ୍ଛାରେ ଛାଡ଼ିଦେଲେ । କିଛି ନ କହି ଶୋଇ ପଡ଼ିଲେ । ମନେ ହେଲା, ତାଙ୍କର ଇଚ୍ଛାକୁ ମୁଁ ଭଲକରି ପୂରଣ କରି ପାରିଲି ନାହିଁ ବୋଲି ସେ ରାଗିଗଲେ । କହିଲି, ଗୋପଭାଇ ଯାଉଛି । ସେ ହୁଁ କି ହାଁ କିଛି କହିଲେ ନାହିଁ । ତାଙ୍କର ପିଲାଳିଆ ଗୋସା ଦେଖି ମୁଁ ହସି ହସି ପଦାକୁ ପଳାଇ ଆସିଲି ।

ମାଉସୀ ମୋତେ ଓ ବୋଉକୁ ଖାଇବାକୁ କହି ମୁଢ଼ାଏ ଜଳଖିଆ ନେଇ ଆସିଲେ । ଅନିଚ୍ଛା ସତ୍ତ୍ୱେ ବୋଉ ସାଥିରେ ଲାଜ ଲାଜ ହୋଇ ଖାଇଲି । ମାଉସୀ କହିଲେ କଲେ ପୁଣି; ତୋ ଘର ପରି ଇଏ—ଏତେ ଲାଜ କରୁଚୁ କଣମ—ମାଆଣ୍ଟା ପରି, ପେଟ ପୂରେଇ ଖା । ମାଉସୀଙ୍କ ଆଦର ବୋଳା କଥା ଶୁଣି ଖାଇବ କ'ଣ ପେଟଟା ଆଗେ ପୂରିଗଲା । ଖାଇସାରି ବୋଉ ସାଥିରେ ତାଙ୍କ ଦେବୀ ମେଢ଼ ଦେଖିବାକୁ ଗଲି । ଆଜି ନବମୀ, ଗାଁର ଆଖପାଖ ଅଞ୍ଚଳରୁ ବହୁତ ଯାତ୍ରୀ ଆସିଥାନ୍ତି । ଗାଁଦାଣ୍ଡଟା ଲୋକ ଗହଳିରେ ପୂରି ଉଠିଥାଏ । ଦେବୀ ଦେଖି ସାରି ମାଉସୀଙ୍କ ଠାରୁ ବିଦାୟ ନେଇ ଘରକୁ ଫେରିଲୁ ।

ତା' ପର ଦିନ ଦେବୀଙ୍କର ବିସର୍ଜନ ପର୍ବ ସରିଲା ।



ଦେବୀ ପାଣିରେ ପଡ଼ିଲା ପରେ ପରେ ଦଶହରାର ଆନନ୍ଦ ଫିକା ପଡ଼ିଗଲା । ଜହ୍ନି ଫୁଲର ପାହ୍ୟାନ୍ତ ହ୍ରାସ ସଙ୍ଗରେ ଶାରଦୀୟାର ବୈଭବ ମିଳେଇ ଗଲା ସକାଳ ସୂରୁଯର କଅଁଳ ପରଶରେ । ଖାଲି ପଛରେ ପଡ଼ିରହିଲା ସେହି ଦରଭୁଲା ସ୍ମୃତି ଗୁଡ଼ାକ । ଦିନ ଆଗେଇ ଚାଲିବ; ପୁଣି ବରଷକ ପରେ ଶରତ ଆସିବ—ଶେଫାଳିର ଗନ୍ଧ ନେଇ ଭ୍ରମର ବୀଣା ବଜାଇ ପୁଣି ଦିଗ-ବଧୂ କାନେ କାନେ କହିବ ଶାରଦୀୟା ପୂଜା ପାଖେଇ ଆସିଲା ବୋଲି ।

ଦଶହରା ଆଜିକୁ ଦି' ଦିନ ହେବ ଗଲାଣି । ଗୋପଭାଇଙ୍କ ଦେହ ପୂରାପୂରି ଭଲ ହୋଇଯିବା ଖବର ବୋଉଠୁ ପାଇଚି । କିନ୍ତୁ ତଥାପି ଗୋପଭାଇଙ୍କର ଆଜିଯାଏ ଦେଖା ନାହିଁ । ମନକୁ ମନ ଭାବେ, ସେଇଦିନର ରାଗ କ'ଣ ତାଙ୍କର ଆଜିଯାଏ ଯାଇନି ? ରାଗି ଥାଆନ୍ତୁ—ମୁଁ ତ କିଛି ଦୋଷ କରିନାହିଁ !

ରାତିରେ ମାଣିକ ମୁଁ ଦୁଆରେ ବସି ସୁଖ-ଦୁଃଖ ହେଉଚୁ । ବୋଉ, ଝୁନ ଘରେ ନାହାନ୍ତି । ଆମେ ଦି' ଜଣ ଦାଣ୍ଡ ଦରଜାରେ କିଳଣି ଦେଇ ଭିତରେ ମନ ଖୁସି ଗପ କରୁଚୁ । ପଦାରୁ କିଏ ମାଉସୀ ମାଉସୀ ଡାକିଲା । ମାଣିକ କହିଲା, ପୁଣି କିଏ ଡାକୁଚି । କାନପାରି ଶୁଣିଲି ଗୋପଭାଇଙ୍କ ସ୍ୱର । ହୃଦୟରେ ଜାଗିଲା ଆନନ୍ଦ । କହିଲି, ମାଣିକ ଗୋପଭାଇ ଡାକୁଚନ୍ତି । ଯା ଦରଜା ଖୋଲି ଦେ । ଗୋପଭାଇ ନାଁ ଶୁଣି ମାଣିକ କହିଲା, ନା ପୁଣି ତୁ ଯା । ଆଗରୁ ଜାଣେ ମାଣିକ ଗୋପଭାଇଙ୍କି ଭାରି ଡରେ । ପିଲାବେଳେ ମାଣିକକୁ ଗୋପଭାଇ ଭଲ ପାଉଥିଲେ । ମାଣିକ ଆଜି ନୂଆନ ଝୋଙ୍କା—କାଲି ସକାଳେ ତା'ର ବା' ସା

ହେବ । ସନ୍ଧ୍ୟାବେଳର ଅଜଣା ଭୟ ତାକୁ ପଛକୁ ଠେଲିଲା—ଦରଜା ଖୋଲି ଦେବାକୁ ଗଲା ନାହିଁ । ବାଧ୍ୟ ହୋଇ ମୁଁ ଦରଜା ଖୋଲି ଦେଲି । ଗୋପଭାଇ ଭିତରକୁ ଆସି ପଚାରିଲେ, ମାଉସୀ ନାହାଁନ୍ତି କି ? ମନେ ମନେ କହୁଥାଏ ସତେ ଯେପରି ମାଉସୀଙ୍କ ପାଖରେ ଆଙ୍କର ଦୁନିଆଯାକର କାମ ଅଛି । କହିଲି, ବୋଉ ଯାଇଛନ୍ତି ସୁମୀ ବୋଉ ଖୁଡ଼ୀ ଘରକୁ । ମାଣିକ ଗୋପଭାଇଙ୍କୁ ଦେଖି ମୁଣ୍ଡରେ ଓଢ଼ଣା ଟାଣି ଲାଜ ଲାଜ ହୋଇ ଜହ୍ନ ଆଲୁଅରୁ ଅନ୍ଧାରକୁ ଘୁଞ୍ଚିଗଲା । ମାଣିକକୁ ଦେଖି ଗୋପଭାଇ ପଚାରିଲେ, ସେ କିଏ କି ? ମାଣିକ ବୋଲି ନକହି ମିଛରେ କହିଲି, ସେ ପରା ରାମଭାଇଙ୍କ ନୂଆବୋହୂ—ଆଜି ଆମ ଘରକୁ ଟିକେ ବୁଲି ଆସିଚନ୍ତି ।

ରାମଭାଇଙ୍କ ନୂଆବୋଉ ଥିବା ଶୁଣି ଗୋପଭାଇ କିଛି କହିବାକୁ ସାହସ କଲେ ନାହିଁ । କହିଲେ ଯାଉଚି ପୁନି, ମାଉସୀ ନାହାଁନ୍ତି··· । ସେ ଚାଲିଗଲେ । ମାଣିକ ସାମନାରେ ତାଙ୍କୁ ବସିବାକୁ ଅନୁରୋଧ କରି ପାରିଲି ନାହିଁ । ଭାରି ଦୁଃଖ ହେଲା ମନରେ । ଏତେ ଦିନ ପରେ ଆସିଥିଲେ କ'ଣ ଇମିତି ଫେରି ଯିବାକୁ ? ଗୋପଭାଇ ଚାଲିଯିବାରୁ ମାଣିକ ଖିଁ ଖିଁ ହୋଇ ହସି ଉଠିଲା । କହିଲା ଆଲୋ ପୋଡ଼ାମୁହିଁ ମୁଁ କାହିଁକି ରାମଭାଇ ନୂଆବୋଉ ହେବି ମ—ତୁ ହେଉନୁ । କହିଲି, କହିଲି ମାଣିକ ଗୋପଭାଇକି ଦେଖିଲେ ଏତେ ଲାଜ କରୁ କାହିଁକି, ବାଘ ନା ଭାଲୁ ହେଇଚନ୍ତି ଯେ ତତେ ଖାଇଯିବେ ! ମାଣିକ କହିଲା, ଜାଣି ଚତୁରୀ—କିଛି ଜାଣିଥିବୁ କି । ସେଇ ଲଗେ ବୋଉ ଆସି ପହଞ୍ଚିଲା । ମାଣିକ ବିଦାୟ ନେଲା ।

× × ×

ଆଜି କୁଆଁର ପୁନେଇଁ । ଆକାଶରେ କଇଁ ଫୁଲିଆ ଜହ୍ନ ହସି ଉଠିଲା । ବରଷକ ପରେ ଏ ଗୋଟାଏ ଦିନ ଗାଁ ଝିଅଙ୍କର ଅତି ଆଦରର । ଜହ୍ନିଓପା ଗୀତରେ ଗାଁ ଦାଣ୍ଡ ଆଗାଡ଼ର ଭରା ନଈ ପରି ଉଚ୍ଛୁଳି ଉଠୁଥାଏ ।

ଚଉରା କଡ଼ରେ ଭୋଗ କଡ଼ସାରି ଜହ୍ନକୁ ଅନେଇ ଖଇ ଦ'ଟା ପାଟିରେ ପକାଉଚି—ମାଣିକ ଆସି ପହଞ୍ଚିଲା । ହାରା, ଟଭା, ଅତସୀ, ଦୁଲୀ—ଗାଁର ଗୋଟି ଗୋଟି ହୋଇ ଝିଅ ଆସି ଆମ ଘରେ ଠୁଳ ହେଲେ । କୁଆଁର ପୁନେଇ ଗୀତରେ ଆମ ଘର ଦୁଆର ଉଚ୍ଛୁଳି ଉଠିଲା । ଅତସୀ କହିଲା ପୁନି ଅପା; ମାଣିକ ଅପା ଆଜି ଏଠି ଅଛନ୍ତି—ଆର ବରଷ ଏତେବେଳକୁ ଆମମାନଙ୍କୁ ଛାଡ଼ି ଯାଇ କୁଆଡ଼େ ଉଠିବେଣି ।

ଅଡସୀ—ଆଠନରଷର ପରକାପଧ ପର ସୁନ୍ଦର ଫର ଫର ଟିକ ଝିଅଟି ଏଇ ଅଡସୀ—ଦୁନଆଠୁଁ ବହୁ ଦୂରରେ ଥାଇ ବ ସେ ବୁଝିଲଣି ଜୀବନ ସଉଦା କଥା । ପାଗଲ ଘଟନା ଦଉଡ଼ିଲା, ହୃଦୟରେ କଏ ଯେପର କହିଲ, ସତେ—ମାଣିକ ଆଉ ମୁଁ ଆଜ ଏଇ ଝିଅଙ୍କ ସାଥିରେ ଖେଳୁଛୁ । କନ୍ତୁ ଆଉ ବରଷକୁ ଆମେ ଏଠି ନଥବୁ । ମାଣିକ ଥିବ କୁଆଡ଼େ—ଆଉ ମୁଁ ବ ଥିବ କୁଆଡ଼େ ! ଅଥ ଆଦରର ଏଇ ଘରଦୁଆର, ବାପ, ମା, ଭାଇ, ଭଉଣୀ ସେତେବେଳକୁ ହୋଇ ଯାଇଥିବେ ପର । ଆକାଶରେ ଥିବା ଜହ୍ନଟା ବ ସେତେବେଳେ ଇମିତ ଆମକୁ ଦେଖି ହସୁ ନ ଥିବ— ଆଖିରେ ଲୁହ ଜକେଇ ଆସିଲ । କହିଲି, ମାଣିକ ' ଝିଅ ଜନମ ପାଇ ପର ଘରକୁ ଯିବା ଦୁଃଖଠୁଁ ବଳ ଦୁଃଖ ଆଉ ନାହିଁ । ମାଣିକ କହିଲ, ହଁ ଲୋ ଭଉଣୀ ଏଇ ବାପା, ମା' ପିଲବେଳେ କେତେ ଆଦର କରନ୍ତ—ଦଣ୍ଡେ ନ ଦେଖିଲେ ବଣା ହୁଅନ୍ତ—କନ୍ତୁ ବଡ଼ ହେଲେ ପୁଣି ଏଇ ବାପା ମା ବୋଝ ବୋଝ ବୋଲ କହ ଅସ୍ଥିର ହୁଅନ୍ତ; ଭଲ ହେଉ ମନ୍ଦ ହେଉ ପର ଘରକୁ ଠେଲ ଦେଇ ଯାଇ ଶାନ୍ତିରେ ନିଶ୍ୱାସ ମାରନ୍ତ ।

ବଡ ଗୃହପଡ଼ ବେଳକୁ କଏ କୁଆଡ଼େ ଯେଟା ଘରକୁ ବାହୁଡ଼ ଗଲେ । ଆକାଶରେ ପୁନେଇ ଜହ୍ନ ଫିକା ପଡ଼ ଆସୁଥାଏ ।

କୁଆଁର ପୁନେଇ ଜହ୍ନର ଶେଷ ହସଟିକକ ଲଭିଗଲ ସକାଳ ଆଲୁଅର କଅଁଳ ପରଶରେ । ପୁନେଇ ପରେ ଆସିଲ ଅମାବାସ୍ୟା । ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଯେମିତ ମଣିଷ ଜୀବନରେ ଆସେ ମଣିଷ ଅନୁଭବ କରେ ସୁଖ ଦୁଃଖ ଅନୁଭୂତି-ଭରା ସ୍ୱାଦ । ସୁଖର ରଙ୍ଗିନ ଶୀତଳ ପରଶରେ ମଣିଷ ଭୁଲିଯାଏ ଅତୀତର ଦୁଃଖ, କଷ୍ଟ, ଦୈନ୍ୟ । ପାଗଲ ପର ଏଇ ମଣିଷ ପୁଣି ବୁଝେ, ବଞ୍ଚିବାରେ ଆନନ୍ଦ ଅଛି—ସୁଖ ଅଛି—ପୁଣି ସବୁର ଉପରେ ଅଛି ଆଲୋକ ।

ବୋଉକୁ ଘୋର ଜର । କାଲ ସଞ୍ଜବେଳଠୁ ଆଜ ସଞ୍ଜ ବୁଡ଼ିଲା; ତଥାପି ଜରର ତାପ ଟିକେ କମି ନାହିଁ । ବୋଉ ଜରରେ ପାଗଲ ପର ହେଉଥାଏ । ମୁଁ ପାଣି-ପଟି କର ବୋଉ ମୁଣ୍ଡରେ ଦେଉଥାଏ । ମନଟା ଅଜଣା ଭୟରେ ଗୋଳେଇ ଘାଣ୍ଟି ହେଉଥାଏ । ବେଳେ ବେଳେ ମନରେ ପାପ ଛୁଉଁଥାଏ । ଦୁନଆରେ ବୋଉ ଛଡ଼ା ମୋର ବା କଏ ଅଛି ? ବାପ ସ୍ନେହ କ'ଣ ଜାଣି ନାହିଁ । ଏ ବିପଦ ବେଳେ କଏ ସାହା ହେବ । ଭାବଲି ଗୋପଭାଇ କଥକ ଖବର ଦେଲେ ସେ ନିଶ୍ଚୟ ଆସିବେ । ମୋତେ ଯଦ ସେ ସତେ ଭଲ ପାଉଥିବେ, ତେବେ ଏ ବିପଦ ବେଳେ ସେ ନିଶ୍ଚୟ ସାହାଯ୍ୟ କରବେ । ଟୁନକୁ କହିଲ, ଯା ଗୋପଭାଇଙ୍କ ଡାକ ଆଣିବୁ, କହିବୁ ନାନୀ ଡାକୁଛନ୍ତ । ଟୁନ ଚାଲିଗଲ ।

ଘଣ୍ଟାକ ପରେ ଗୋପଭାଇ ଆସି ପହଞ୍ଚିଲେ । କହିଲି, ଗୋପଭାଇ ବୋଉକୁ କାଲଠୁଁ ଭାରି ଜର—କ'ଣ ଔଷଧ ଆଣିଦିଅ । ଆଖିରେ ମୋର ଲୁହ ଜମି ଆସିଲା । ସେ କହିଲେ, ତୁ କାନ୍ଦୁଛୁ କାହିଁକି ପୁଣି, ବୋଉ ନିଶ୍ଚେ ଭଲ ହୋଇଯିବ । ମୁଁ ଯାଉଛି ଡାକ୍ତର ଡାକି ଆଣିବି । ସେ ଚାଲିଗଲେ ।

ଟିକିକ ପରେ ଡାକ୍ତର ଆସି ବୋଉକୁ ଗୋଟାଏ ଔଷଧ ଦେଇଗଲେ । କହିଯାଇଥାନ୍ତି ଘଣ୍ଟାକ ପରେ ମରେ ଔଷଧ ପାଞ୍ଚପାନ ଦେବାକୁ । ବୋଉ ପାଖରେ ଗୋପଭାଇ ଓ ମୁଁ ବସିଥାଉଁ । ଘଣ୍ଟାକପରେ ଔଷଧ ଦେଉଥାଉଁ ରାତି ଦଶଟା ବେଳକୁ ମୋତେ ନିଦ ଆସିଲା—ଢୁଳେଇଲି । ଗୋପଭାଇ କହିଲେ, ଯା ପୁଣି ଶୋଇବୁ—ମୁଁ ଜଗିବି, ଔଷଧ ଦେବି । କହିଲି, ନା ଗୋପଭାଇ; ତମେ କାହିଁକି କଷ୍ଟ କରିବ—ତମେ ଯା' ଶୋଇବ ମୁଁ ଜଗଚି । ଗୋପଭାଇ ଗଲେ ନାହିଁ । ରାତିଯାକ ଚେଇଁ ଔଷଧ ଦେଲେ । ମୁଁ ଢୁଳେଇ ଢୁଳେଇ ବୋଉ ମୁଣ୍ଡ ଉପରେ ଶୋଇ ପଡ଼ିଲି । ଉଠିଲା ବେଳକୁ ଦେଖେ ଭୋର ହୋଇ ଆସିଲାଣି । ଗୋପଭାଇ ସେମିତି ବୋଉକୁ ଜଗି ବସିଛନ୍ତି । ବୋଉ ନିଦରେ ଶୋଇ ପଡ଼ିଚି । ମନଟା ମୋର ଗୋପଭାଇଙ୍କ ପ୍ରତି ସ୍ନେହରେ ନଇଁ ପଡ଼ିଲା । କହିଲି ଗୋପଭାଇ ! ତମ ସ୍ନେହ ମୁଁ ଜୀବନରେ ଭୁଲି ପାରିବି ନାହିଁ ? ସେ ହସିଲେ । ମୋ ହାତ ଧରି ଆଉଁସିବାକୁ ଲାଗିଲେ । ମୁଁ ଆପେ ଆପେ ତାଙ୍କ କୋଳକୁ ଢଳି ପଡ଼ିଲି । ତାଙ୍କ ମୁହଁଟା ନଇଁ ପଡ଼ିଲା ମୋର ଆଡ଼କୁ—ତ୍ରସ୍ତରେ ତାଙ୍କ ହାତର ଉଷ୍ମପରଶ ବାଜିଲା । ବୋଉ କର ନେଉଟାଇଲା । ଭୟରେ ଗୋପଭାଇ ମୋତେ ଛାଡ଼ି ଦୂରକୁ ଘୁଞ୍ଚିଗଲେ ।

ତା' ପରଦିନକୁ ବୋଉର ଜର କମି ଆସିଲା । ଗୋପଭାଇଙ୍କ ଇଙ୍ଗିତରେ ଡାକ୍ତର ଆସି ଗୋଟିଏ ଇଞ୍ଜେକ୍ସନ ଓ ପୁଣି ଔଷଧ ଦେଇଗଲେ । ଚୃତୀୟଦିନ ବେଳକୁ ବୋଉର ଜର ଏକବାରେ ଭଲ ହୋଇଗଲା । ବୋଉକୁ କହିଲି ବୋଉ; ଗୋପଭାଇଙ୍କର ଏ ଉପକାର ଆମେ ସାରା ଜୀବନରେ ଶୁଝି ପାରିବା ନାହିଁ । ବୋଉ କହିଲା, ଗୋପ ମୋର ପୂର୍ବଜନ୍ମରେ ପୁଅ ଥିଲା ।

ନିତି ସଞ୍ଜବେଳକୁ ଗୋପଭାଇ ଆମ ଘରକୁ ଆସନ୍ତି । ତାଙ୍କୁ ଦେଖିଲେ ଏଣିକି ମୁଁ ଆଉ ଅବହେଳା ନ କରି କୋଟିନିଧି ପାଇଲା ପରି ହୁଏ । ସେ ହସି ହସି କେତେ ଖୁସି ଗପ କରନ୍ତି । ତା' ପରେ ବଦାସ୍ତ ନଥାନ୍ତି । ବେଳେ ବେଳେ ମୋତେ ଏକଲା ଦେଖି ତାଙ୍କ ମନର ଓଶମାନ ମେଣ୍ଟାନ୍ତି । ମୁଁ ତାଙ୍କର ବ୍ୟବହାରରେ ବାଧା ଦେଇ ପାରେନା । ଘନେ ତାଙ୍କର ଚରଣ ତଳେ ତ ନିଜକୁ ଅଜାଡ଼ି ଦେଇଚି, ଆଉ ପୁଣି କାହିଁକି...

ମାସକ ପରେ । ବୋଉ, ଝୁନ ମାମୁଁ ଘରକୁ ଯାଇଥାନ୍ତି । ମୁଁ ଘରେ ଥାଏ ଏକଲା । ମାମୁ ଘରେ ମାମୁଁ, ମାଇଁ, ଓ ମାଇଁର ଟିକିପୁଅଟି ଛଡ଼ା ଆଉ କେହି ନାହାନ୍ତି । ଅଜା-ଆଈ କେଉଁ ଦିନୁ ଆଖି ବୁଜିଛନ୍ତି । ମାଇଁ ଦେହ ଭଲ ନ ଥାଏ ବୋଲି ବୋଉକୁ ଆସି ମାମୁଁ ନେଇ ଯାଇଥାଆନ୍ତି । ବୋଉ ମୋତେ କହି ଯାଇଥାଏ, ଚାରିଦିନକୁ ଯାଉଚି, ହୁସିଆରରେ ଚଳିବୁ । ଦି' ଦିନ ହେଲା ଗଲାଣି । ଦିନଟି କୌଣସି ମତେ କଟିଯାଏ, ରାତିରେ ଏକଲା ଏକଲା ଲାଗେ ।

ଗୋପଭାଇ ଚାରିଦିନ ହେବ ଇଆଡ଼େ ଆସି ନ ଥାନ୍ତି । ଭାତ ତିଅଣ ରନ୍ଧା ସରିଲା ବେଳକୁ ରାତି ଘଡ଼ିଏ ହେଲାଣି । ଭାବିଲି, ଅନ୍ଧାର ରାତି, ଯାଉଚି ଚଞ୍ଚଳ ଖାଇ ଶୋଇ ପଡ଼ିବି । ଖାଇସାରି ଦାଣ୍ଡ ଦରଜା ଦେଇ ଆସି ଘରେ ବିଛଣା ପାରୁଚି, ଗୋପଭାଇଙ୍କ ଡାକ ଶୁଭିଲା । କବାଟ ଫିଟାଇ ଦେଲି । ସେ ଘର ଭିତରକୁ ଆସି କହିଲେ—ପୁନି, ମାଉସୀ କାହାନ୍ତି ? କହିଲି, ବୋଉ ନାହିଁ—ଝୁନ, ସିଏ ଯାଇଛନ୍ତି ମାମୁଁ ଘରକୁ, ଦି' ଦିନ ହେଲାଣି । କଣ ଭାବି ସେ କହିଲେ—ପୁନି ଦାଣ୍ଡ ଦରଜା ଦେଇଆ—କଥା ଅଛି । ମୁଁ ଦାଣ୍ଡ ଦରଜା ଦେଇ ଆସିଲି ସତ କିନ୍ତୁ ଭୟରେ ଛାତିଟା ଥରୁଥାଏ, କିଏ ଯଦି ଜାଣେ ଗୋପଭାଇ ଏତେ ରାତିରେ ଏଠି ମୋ କତିରେ ଅଛନ୍ତି—ତେବେ ଗାଁରେ ମୁହଁ ଦେଖାଇ ହେବନି । ପଚାରିଲି, ଗୋପଭାଇ କଣ କୁହନାଁ । ସେ କହିଲେ—ସତ କହ ପୁନି, ତୁ ମୋତେ ବାହା ହେବୁ ?

ମୁଁ ଲାଜରେ କିଛି କହି ପାରିଲି ନାହିଁ । ସେ ମୋତେ କୋଳକୁ ଟାଣି ନେଲେ । କହିଲି, ଗୋପଭାଇ ଛଳନା କରୁନା ତ ? ସେ ମୋତେ ବାର ବାର ଚୁମ୍ବନ କଲେ । ପାଗଳପରି ଘର ଭିତରକୁ ଟାଣିଆଣି ବିଛଣାରେ ଶୋଇବାକୁ ନିର୍ଦ୍ଦେଶ ଦେଲେ । ତାପରେ ଆଲୁଅଟା ମୁଁ ଲିଭାଇ ଦେଲି । ସେହି ଅନ୍ଧକାରରେ ମୋର ଯା' କିଛି ସବୁ ସେ ଚୋରଙ୍କପରି ହରଣ କରି ନେଇଗଲେ । ତାଙ୍କର କୋଳରେ ମୁଁ ଶୋଇ ପଡ଼ିଲି । ନିଦ ଭାଙ୍ଗିଲା ବେଳକୁ ଦେଖେ କୁଆଁ ତାରା ଉଠିଲାଣି । ଛାତି ଥରୁଥାଏ । ଗୋପଭାଇଙ୍କୁ ଆସି ଉଠାଇଦେଲି । କହିଲି—ଗୋପଭାଇ, ରାତି ପାହିବା ପୂର୍ବରୁ ଚାଲିଯାଅ । ସେ ଡରି ଡରି ବିଦାୟ ନେଲେ । ସେ ଚାଲିଗଲା ପରେ ମୁଁ ଶାନ୍ତିର ନିଶ୍ୱାସ ମାରିଲି ।

ତା' ପରଦିନ ରାତି ଦି' ଘଡ଼ିକି ଗୋପଭାଇ ପୁଣି ଆସିଲେ । ମନା କଲି—ସେ ସେ ମାନିଲେ ନାହିଁ, ଦରଜା କିଳି ଦେଇ ପାଗଳପରି ମୋତେ କୋଳକୁ ଟାଣି

ନେଲେ । ତାଙ୍କର କୋଳରେ କି ମାଦକତା ଥିଲି କେଜାଣି ମୁଁ ନିଜକୁ ନିଜେ ହରାଇ ବସିଲି । ସେ ମୋତେ ତାଙ୍କର ବାହୁ ସନ୍ଧରେ ଭିଡ଼ି ଧରିଲେ—ଗାଲରେ ତାଙ୍କର ମୁହଁର ତାତଲି ପରଶ ବରାବର ବାଜିଲି । ମୁଁ ଅମ୍ଳାନ ବଦନରେ ତାଙ୍କର ପଦତଳେ ମୋର ନାରୀତ୍ୱର ଗର୍ବ ଗଉରବ ସବୁ କାଲିରାତି ପରି ଅଜାଡ଼ି ଦେଲି । ପାଗଳ ଦେହ ମନ ତାଙ୍କର ବାସ୍ତବକୁ ଫେରିଆସିଲି ପରେ ସେ ଉଠିଲେ—ଉଠୁ ଉଠୁ ମୋତେ ବାରବାର ଭିଡ଼ି ଧରି ଚୁମ୍ବନ କରୁଥାନ୍ତି । କହିଲି, ଗୋପଭାଇ ସେତିକି ଥାଉ, କିଏ କାଲେ ଆସିବ, ତମେ ଚାଲିଯାଅ ।

ଖସଡ଼ାପଥରୁ ମନ ତାଙ୍କର ବାଟକୁ ଫେରିଲି । ମୁଁ ବାଡ଼ି କବାଟ ଖୋଲିଲି, ସେ ଧୀରେ ଧୀରେ ଅନ୍ଧକାରରେ ହଜିଗଲେ । ଫେରିଆସି ବିଛଣାରେ ଶୋଇ ପଡ଼ିଲି । ଭାବିଲି, ଏପୁଣି କଣ ହେଲି ! ଗୋପଭାଇଙ୍କ ଚରଣତଳେ ନାରୀତ୍ୱର ଗର୍ବ ଗଉରବ ସବୁତ ଅଜାଡ଼ି ଦେଲି, କିନ୍ତୁ ଭବିଷ୍ୟତ ! ଭବିଷ୍ୟତରେ ଗୋପଭାଇ ମୋତେ ଠକିବେ ନାହିଁ ତ ? ହୃଦୟ ଭିତରୁ କିଏ ଜବାବ ଦେଲା, ନା ଗୋପଭାଇ ସେପରି ନୁହନ୍ତି—ଗୋପଭାଇ ଯେ ତୋର ଅତି ଆପଣାର—ହୃଦୟର ଆହୁରି ନିକଟତର । ତା ପରଦିନକୁ ବୋଉ ଫେରି ଆସିଲି । ବୋଉ ଆସିବାରୁ ମୋ ମନରୁ ସବୁ ଭୟ ଦୂରକୁ ଘୁଞ୍ଚିଗଲା । ଗୋପଭାଇ ସବୁ ଦିନ ପରି ରାତିକି ଆସିଲେ ବୋଉ ସାଥିରେ ଆଡ଼ୁ ସାଡ଼ୁ କେତେ ଗପ କରି ଫେରିଲେ । ଫେରିଲି ବେଳେ ତାଙ୍କର ଆଖି ଦିଇଟା ମୋ ଠାରେ ଯେ କଅଣ ଖୋଜୁଥିଲି ଏହା ମୁ ବେଶ୍ ଠଉରାଇ ପାରୁଥିଲି ।



ଦିନ ଗଡ଼ି ଚାଲିଲା । ଗୋପଭାଇ ନାଇରୁ ଆସନ୍ତି । ଆମର ଅଭାବ ଅଭିଯୋଗ ସବୁ ସେ ବୁଝନ୍ତି । ଆପଣାର ଲୋକ ଏମିତି କରିବ ନାହିଁ । ମନ ବୁଝେ, ସେ ପର ନୁହନ୍ତି—ଆପଣାର ।

ଆଠମାସ ପରେ । ହଠାତ୍ ମୋ ଜୀବନ ଆକାଶରେ ସେ ଦିନ ପଡ଼ିଲା ଅମଙ୍ଗଳ ଧୂମକେତୁ ଦେଖାଗଲା । ପ୍ରାଣଶୀତଳକାରୀ କଳାବଉଦ ପରିବର୍ତ୍ତେ ଆସିଲା ନିଦାଘର ପ୍ରାଣ ଅଥୟକାରୀ ପ୍ରବଳ ଝଞ୍ଜା । ଶ୍ରାବଣ ଅମାବାସ୍ୟାର ଅନ୍ଧକାର ଘେନି ଘୋଟି ଆସିଲା ଅଜଣା ଭୟ । ଯେଉଁଥିପାଇଁ ମନ ଛୁଉଁଥିଲା ପାପ—ସେଇ ଭାବନା କଳ୍ପନାରୁ ବାସ୍ତବରେ ରୂପାନ୍ତରିତ ହେଲା । ମୁଁ ଅନ୍ତଃସତ୍ତ୍ୱା—ଗର୍ଭବତୀ ।

ଗାଁରେ ଗୁଣିଆଡ଼େ ତବତବ ନାଗରା ବାଡ଼େଇଲା ପରି ମାଇପି ମହଲରୁ ପୁରୁଷ ମହଲକୁ କ୍ଷଣକରେ ବ୍ୟାପିଗଲା । କଥା ଅଛପା ରହିଲା ନାହିଁ । ଗୋପଭାଇ ଜଣା ପଡ଼ିଲେ । ବୁଢ଼ି ବୁଢ଼ା ସବୁଦିନେ ପାଣିପିଇ ହୁଏନା—ଏକଥା ସତ ।

ପୋଖରୀ ତୁଠରେ, ଢେଙ୍କିଶାଳରେ, ସପ୍ତାଘରେ, ଆଖଡ଼ା ଘରେ ଗୁଣିଆଡ଼େ ଏଇ ଗପ । ଏଇ ଟୁପୁରୁ ଟାପର କଏ କେତେ ମୋତେ ଦେଖେଇ ଦେଖେଇ କହିଗଲେ—କାହାର ମୁହଁରେ ବାଡ଼ ବତା ଦେଇ ହେବନି କି କାହାରକୁ ଭରସି ପଦେ କହି ପାରିଲି ନାହିଁ । ଗାଁରେ ରାଷ୍ଟ୍ର ହେଲା ପେଟରେ ମୋର ପାପଗର୍ଭ—ମୁଁ ଅସତୀ—କୁଳଟା ।

ବୋଉ ଲଜରେ ଦାଣ୍ଡଘାଟରେ ଚାଲି ପାରୁନି । ଅସହ୍ୟ ହୋଇ ମୋତେ କହିଲା—ପୁଣି ତୋ ମନରେ ଏଇଆ ଥିଲା—ମୋତେ ଦାଣ୍ଡଘାଟରେ ମୁହଁ ଦେଖେଇ ଦେଲୁନି । ବୋଉର ଏଇ କଥା ପଦକ ମୋତେ ଶର ବାଧିଲା । ମୁଁ କଇଁ କଇଁ ହୋଇ କାନ୍ଦି ଉଠିଲି । ବୋଉ ମନ କ୍ଷଣକରେ ତରଳିଗଲା—ଯେତେ ହେଲେ ମାଆ—ଅନ୍ତଫାଡ଼ି ଜନ୍ମ ଦେଇଛି—ଝିଅର ଦୁଃଖ ସେ ବୁଝିବ ନାହିଁ ତ ବୁଝିବ କିଏ ? ମୋତେ କୋଳକୁ ଟାଣି ମୋ ଆଖିରୁ ଲୁହ ପୋଛି ପ୍ରବୋଧ ଦେଲା । ବୋଉ କୋଳରେ ମୁହଁ ଲୁଚେଇ କହିଲି, ବୋଉ ଗୋପଭାଇଙ୍କୁ ତୁ ଏତେ ପ୍ରଶ୍ରୟ ଦେଉଛୁ—ଘରେ ତୋର ବଢ଼ିଲା ଝିଅ—ଆମଘର ସହିତ ତାଙ୍କର ମିଳାମିଶା, ଅବାଧ ଗତି—କାହିଁ କେଉଁଦିନ ତ ବାଧା ଦେଇ ନାହୁଁ । ବୋଉ ଆଖିରୁ ଲୁହ ଝରି ଆସୁ ଆସୁ କହିଲା, ପୁଣି, ଗୋପ କଣ ଇମିତି ମୋର ସର୍ବନାଶ କରିବ ବୋଲି ଜାଣିଥିଲି !

ଖୁଡ଼ୀ ମୋତେ ଦେଖେଇ ଦେଖେଇ ଡାଦାଙ୍କୁ କହୁଥାଏ । ଶୁଣିଲଣି ଅନୁ ବାପା ଆଜିକାଲି ଟୋକୀ ଅଭିଆଡ଼ୀ ବେଲୁ ଘଇତା କରିଲେଣି । କମଳନାନୀ, ସୁମୀ ବୋଉ-ଖୁଡ଼ୀ ଇମିତି ଗାଁର କେତେ ମୋତେ ଦେଖି ଟାହିଟାପରି କରି କହୁଯାନ୍ତି । ଦେହରେ ଜୁଇ ଲାଗିଯାଏ—କିନ୍ତୁ କିଛି କହି ହୁଏନା । ଭାବେ ବେଳ ପଡ଼ିଛି । ସେ କହିବେ—ଆମେ ସହିବା ପଥର ପରି । ମାଣିକ ପୁଣି ଦିନେ କହିଲା, ଟୋକୀ କେଉଁ ଘାଟରେ ବୁଡ଼ ପାଣି ପିଉଥିଲୁ ଲୋ ? ମାଣିକ—ଜୀବନର ଅତି ଆପଣାର ସାଥୀ ଏଇ ମାଣିକ—କ୍ଷତ ବିକ୍ଷତ ଜଳିଲା ହୃଦୟରେ ସେ ବି ଚୋଟେ ମାରିଦେଲା । ଆଉ ପର ଯେ—ସାତପରରେ ପର—ସେମାନେ ବା ନ କହିବେ କାହିଁକି ?

ଧୀରେ ଧୀରେ ଏ କଥା ଗୋପଭାଇ, ତାଙ୍କ ବାପା, ବୋଉ କାନକୁ ଗଲା । କିନ୍ତୁ ଗୋପଭାଇ ଖାନଦାନ ବୁନିଆଦି ଘରର ପୁଅ । ଯାର ଛାଇ ପଡ଼ିଲେ ଲୋକେ ଦଶହାତ ଦୂରକୁ ଘୁଞ୍ଚିଯାନ୍ତି—ତାଙ୍କର ବଂଶର ପ୍ରଦୀପ ଗୋପଭାଇଙ୍କି ଗାଁରେ ଡରି ଲୋକେ କେହି କିଛି କହିଲେ ନାହିଁ । ଆମରି ଉପରେ ସବୁରି ରାଗ ସାରିଲେ । ଦୁର୍ବଳ, ହତଭାଗ୍ୟ ଗରିବ ଆମେ । ଆମେ ଆଖିବୁଜି ସବୁରି ଅତ୍ୟାଚାର ସହିବୁ ନାହିଁତ ଆଉ କଣ ମଖମଲ ଶଯ୍ୟାର ସ୍ୱପ୍ନବିଳାସୀ ଧନୀ ବଡ଼ଲୋକ ସହିବେ !

ଦିନ ଗଡ଼ି ଚାଲିଲା । ଗୋପଭାଇ ଆଉ ଆମଘର ଆଡ଼େ ଆସନ୍ତି ନାହିଁ । ମୁଁ ମଧ୍ୟ ଦାଣ୍ଡ ଆଡ଼େ ବେଶି ଯାଏନାହିଁ । ଏପରିକି ଗାଁ ମାଇପିଙ୍କ ଦେହକଲା କଥା ଡରରେ ପୋଖରୀକି ବି ଦିନେ ଦିନେ ଗାଧୋଇ ଯାଏନା । ଜାତିଭାଇ ଆମକୁ ବାସନ୍ଦ କରିବେ ବୋଲି ଚୁପ୍ ଚୁପ୍ ଆଲୋଚନା କରୁଥିଲେ; କିନ୍ତୁ ରାଉତରା ଘର ଡରରେ କିଛି କରିପାରିଲେ ନାହିଁ । ମାଣିକ ଆଉ ଆମ ଘରକୁ ଆସେନା—ସେ ବି ମୋତେ ଭୁଲ ବୁଝି କରିଛଡ଼ା ଦେଇଛି ।

ହନେ ସଞ୍ଜ ହୋଇ ନାହିଁ । ମାତ୍ରଅନ୍ଧାର ଲାଗି ଆସୁଚ । ବୋଉ ଘରେ ନାହିଁ —କାହାର ଧାନକୁଟି ଯାଇଥାଏ ଯେ, ଏ ଯାଏ ଫେର ନ ଥାଏ । ଟାଡ଼ିପଟ କବାଟ କିଏ ଖଡ଼ ଖଡ଼ କଲା । କାନ ପାରିଲି—ଧୀର ଗଳାରେ କିଏ ଡାକୁଚ ପୁନ ପୁନ ଗଳା ବାରିଲି, ଗୋପଭାଇଙ୍କ ସ୍ୱର । କବାଟ ଖୋଲିଲି—ସେ ଘର ଭିତରକୁ ପଶି ଆସିଲେ ।

ଶୁଖିଲା ମୁହଁଟା ତାଙ୍କର ମାତ୍ର ଅନ୍ଧାରରେ ବେଶ୍ ଜଣା ପଡୁଥିଲା । ସେ ଦେଖା ଯାଉଥିଲେ ଅପରାଧୀ ପରି । ଡରି ଡରି ପଚାରିଲେ, ବୋଉ ଅଛି । ମନା କଲି, ଜୀବନ ପଶିଲା ତାଙ୍କ ସ୍ୱରରେ । ମୋ ହାତକୁ ଗୋଟାଏ କାଗଜ ପୁଡ଼ିଆଟିଏ ଦେଇ କହିଲେ, ପୁନି ଆ'କୁ ଖୋଲି ଖାଇଦେବୁ । କେହି ଜାଣିବେ ନାହିଁ । ବୁଝି ପାରିଲି, ଗୋପଭାଇଙ୍କର ଆସିବାର ଉଦ୍ଦେଶ୍ୟ । ନିଜର ସନ୍ତାନକୁ ସେ ଆଜି ଔଷଧ ଦ୍ୱାରା ମାରିବାକୁ ଆସିଛନ୍ତି । ମନ କହିଲା, ଏଇ ସେଇ ଗୋପଭାଇ—ଯିଏ ମୋତେ ଦିନେ ଚୁପିଚୁପି କହୁଥିଲେ, ପୁନି ମୁଁ ତୋତେ ଜୀବନ ଭରି ଭଲପାଏ— ଦୁହେଁ ଚାଲିଯିବା ଏଇ ଦୁନିଆଠୁ ବହୁ ଦୂରକୁ । ସେଠି ନଥିବ ସମାଜର ଏଇ ଲୋକ ଦେଖାଣିଆ ବାଧା ବନ୍ଧନ । ଦୁହେଁ ଜୀବନକୁ ଆହୁରି ସୁନ୍ଦର କରି ଗଢ଼ିବା ।

ଏଇ ସେଇ ଗୋପଭାଇ ନା ତା'ର ପ୍ରେତାତ୍ମା ! ମୋର ସାରା ଶରୀର ରାଗରେ ଜଳି ଉଠିଲା । ପୁଡ଼ିଆଟାକୁ ତାଙ୍କ ଉପରକୁ ଫୋପାଡ଼ି ଦେଇ କହିଲି, ଗୋପଭାଇ ଲାଜ ମାଡୁନାହିଁ—ହୃଦୟ ତମର ଥରି ଉଠୁନାହିଁ—ନିଜର ସନ୍ତାନକୁ ଆଜି ମାରିବାକୁ ପାଗଳ ପରି ଏଇ ଅନ୍ଧାରରେ ଚୋରପରି ଲୁଚି ଲୁଚି ଛୁଟି ଆସିଚ ! ଏଇ କଣ ମୋର ଭଲ ପାଇବାର ପ୍ରତିଦାନ !! ଯାଅ—ଏଇକ୍ଷଣି ମୋ ପାଖରୁ ଚାଲିଯାଅ ଗୋପଭାଇ । ମୋ ଜୀବନକୁ ନେଇ ତମେ ଯେମିତି ଖେଳ ଖେଳିଚ— ଶେଷରେ ବିଶ୍ୱାସରେ ବିଷ ଦେଇ କାଳି ପୋଛି ମାରିଚ—ସିମିତି ତମକୁ ମୁଁ ଆଜି ଅଭିଶାପ ଦେବା ପୂର୍ବରୁ ତମେ ଦୂରେଇ ଯାଅ । ଗୋପଭାଇ ଭୟରେ ପଳାଇ- ଗଲେ । ମୁଣ୍ଡଟା ମୋର ବୁଲାଇ ଦେଲା । ତଳେ ବସି ପଡ଼ିଲି—ଚାରିଆଡ଼ ଅନ୍ଧାର ଦିଶିଲା ।



ଆଷାଢ଼ ଆସିଲା ତା'ର ସେଇ ମୁଚୁନ୍ଦପଥର କଳା ମେଘ ନେଇ । ପାଣି ଢାଳି ନଈ, ନାଳ, ପୋଖରୀ ଭରି ଦେଇଗଲା । ନଈ ଆର ପାଖ ଧାନ କିଆରୀରୁ ଶୁଭିଲା ଚଇତାର ବେଉସଣ ଗୀତ ।

ଦିନେ ଝଡ଼ ବରଷା ରାତିଅଧ ବେଳକୁ ମୁଁ ଅଚେତ ହୋଇ ପଡ଼ିଲି । ଘଡ଼ିକ ପରେ ଚେତା ଫେରି ଆସିଲା ବେଳକୁ ଦେଖେ ମୋର ପୁଅଟିଏ ହୋଇଛି । ଆମ ଗାଁ ଧାଈ ଜହ୍ନମା ଓ ବୋଉ ମୋ ସେବାରେ ଲାଗିଛନ୍ତି । କୁଆଁ କୁଆଁ ହୋଇ ପୁଅଟି କାନ୍ଦୁଛି ।

ତା' ପରଦିନକୁ ଦିନଆସାରୁ ଏ ଖବର ଘଡ଼ିକରେ ବ୍ୟାପିଗଲା । ସମସ୍ତେ ଘୋଷି ହେଲେ ଗୋପର ପୁଅ ହୋଇଛି । ଗୋପଭାଇ ଲାଜରେ ଦି'ଦିନ ଆଗରୁ କୁଆଡ଼େ ଗାଁ ଛାଡ଼ି ଚାଲିଯାଇଥାନ୍ତି । ପୁଅଟି ଖୁବ୍ ସୁନ୍ଦର ହୋଇଥାଏ—ଆକାଶର ଜୁଳୁଜୁଳୁ ଟିକି ଜହ୍ନଟି ପରି । ମନେ ପଡ଼ୁଥାଏ, ଦିନେ ଗୋପଭାଇ ଏହାକୁ ମାରି ଦେବାକୁ ବସିଥିଲେ । ସେଦିନ ତାଙ୍କର ଇଚ୍ଛାନୁସାରେ କାମ କରିଥିଲେ ଆଜି ମୁଁ ଏଇ ଅମୂଲ୍ୟ ନିଧିଟିକୁ ପାଇପାରି ନ ଥାନ୍ତି । ଅତି ଆଦରରେ ପୁଅର ନାମ ରଖିଲି ଅମର ।

ଦିନ ପରେ ଦିନ ଗଡ଼ି ଚାଲିଲା । ଅମର ଜନ୍ମ ହେବା ଆଜିକୁ ତିନିମାସ ହୋଇଗଲାଣି । ଲୋକଙ୍କ ମୁହଁରେ ଦେଖେଇ ଦେଖେଇ ହାଡ଼ଜଳା କଥା ତଥାପି ବି ଛାଡ଼ି ଯାଇ ନ ଥାଏ । ଗୋପଭାଇ ସେଇଦିନୁ ଗାଁକୁ ଫେରି ନଥାନ୍ତି । ଅମର ହେବା ଦିନଠୁ ବୋଉର ମୋ ପ୍ରତି କାହିଁକି ଆଗ ପରି ଆଦର ସୁହାଗ ନଥାଏ । ଦିନୁ ଦିନୁ ବୋଉର ମୋ ପ୍ରତି ବିରକ୍ତି ବଢ଼ି ଚାଲିଲା । ସବୁବେଳେ କଟ କଟ ହେଲା । ଖାଇବା ପିଇବା-

ଠାରୁ ଆରମ୍ଭ କରି ସବୁ ଖବର ଭଲକରି ବୁଝିଲି ନାହିଁ । ଆଡ଼େଇ ଆଡ଼େଇ ଚାଲିଲି । ଏପରିକି ବୋଉ ଆଖିରେ ମୁଁ ଯେପରି ଗୋଟାଏ କଳଙ୍କ ପରି ଦେଖାଗଲି ।

ଛକେ କୁଆଡ଼ର ଭାବନା ପଶିଲା ମନରେ । ଭାବିଲି, ଆଉ କାହିଁକି ଏ ଘର ଦୁଆର ପ୍ରତି ମୋର ମମତା । ଯା ପାଇଁ ଦୁନିଆର ସବୁ ଅପବାଦ ନିନ୍ଦା ସହି ପଡ଼ି ରହିଥିଲି ସେହି ଜନ୍ମଦାତ୍ରୀ ବୋଉତ ଆଜି ମୋର ହେଉ ନାହିଁ—ଦୂରକୁ ଆଡେଇ ଦେଉଚି; ଆଉ କାହିଁକି ବୃଥା ସ୍ନେହ, ମମତା । ମୁଁ ଆଡେ ଇଚ୍ଛା ସେଆଡ଼େ ଚାଲିଯିବି । ଭିକମାଗି ଅମରକୁ ପୋଷିବି । ମରିବି ପଛେ ଏ ଘରେ ଆଉ ତିଳେ ରହିବି ନାହିଁ ।

ମନକଥା ମନରେ ଅଛି, ସଞ୍ଜ ବୁଡ଼ିଲା । ଯେମିତିକି କରି ବୋଉ, ଟୁନକୁ ଖାଇବାକୁ ଦେଲା । ବୋଉ ଖାଇସାରି ଟୁନକୁ ନେଇ ଶୋଇବାକୁ ଗଲା । ମୋ ଖାଇବା ନ ଖାଇବା କିଛି ବୁଝିଲା ନାହିଁ କି ପଦେ ଆଉ ସାଉ ପଚାରିଲା ନାହିଁ । ଏଣିକି ପ୍ରାୟ ସେ ପଚାରେ ନାହିଁ । ମନ ଦୁଃଖରେ କିଛି ଖାଇଲି ନାହିଁ । ଅମର ଶୋଇ ପଡ଼ିଥାଏ । ତାରି ପାଖରେ ଯାଇ ଶୋଇପଡ଼ିଲି ।

ନିଦ ହେଉ ନଥାଏ । ଘଡ଼ିଏ ପହର ଗଡ଼ିଗଲା । କିଏ କୁଆଡ଼େ ଶୋଇ ପଡ଼ିଲେ । ଜାଣି ପାରିଲି ବୋଉ, ଟୁନ ନିଘୋଡ଼ ନିଦରେ ଶୋଇ ପଡ଼ିଲେଣି । ଅମରକୁ ଉଠାଇ କୋଳରେ ଧରିଲି । କାଳେ ଯଦି ସେ କାନ୍ଦେ—ଏହି ଭୟ ଆଗରୁ ଥାଏ । କିନ୍ତୁ ସେ କାନ୍ଦିଲା ନାହିଁ । ମୋ କୋଳକୁ ଆଉଜି ଶୋଇ ପଡ଼ିଲା ।

ବାଡ଼ି କବାଟ ଧୀରେ ଖୋଲି ପଦାକୁ ଆସିଲି । ମଇଳା ଜହ୍ନ ଆଲୁଅ ଚାରିଆଡ଼େ ବିଛୁଡ଼ି ହୋଇ ପଡ଼ିଥାଏ । ତଗର ଫୁଲ ପରି ଆକାଶରେ ତାରା ଗୁଡ଼ା ଫୁଟି ଉଠିଥାନ୍ତି ଅସୁମାରି ।

ଆଗକୁ ପାଦ ବଢ଼ାଉଚି—ସେ ପାଖ ସାଇରୁ ଶଙ୍ଖ ହୁଳହୁଳି ଶୁଭିଲା । ମନେ ପଡ଼ିଲା ମାଣିକର ଆଜି ମଙ୍ଗନ । ମାଣିକ—ଅର୍ଥାତ୍ ଆପଣାର ସାଙ୍ଗ ଏଇ ମାଣିକ—ରାତି ପାହିଲେ ତା'ର ବାହାଘର । ମନ କହିଲା, କାହିଁ ଆଜି ମାଣିକତ ଥରେ ପଚାରିଲା ନାହିଁ । କିଏ କାହାର, ରାତି ପାହିଲେ ମାଣିକ ବାହା ହୋଇ ପର ଘରକୁ ଚାଲିଯିବ —ସ୍ୱାମୀ ସୁଖରେ କାଳ କାଟିବ । କିନ୍ତୁ ମୁଁ.........

ମୋର ଜୀବନଟା ଠିକ୍ ତାର ଓଲଟା ଦିଗରେ ଗତି କରିବ । ରାତି ପାହିଲେ ମୁଁ ହେବି ଦ୍ୱାରଦୁଆର ଭିକାରୁଣୀ । ସେ ହେବ ରାଜରାଣୀ—ସବୁ ଭାଗ୍ୟ !

ମାଣିକ ବାହାଘରକୁ ମଧୁଆଭାଇ ଗାଁକୁ ଆସିଚନ୍ତି । ଭାବନା ଦଉଡ଼ିଲା ଅତୀତକୁ । ଏଇ ମଧୁଆଭାଇ କେତେ ଭଲ ପାଉଥିଲେ—କାହିଁ ଆଜିତ ଟିକେ ପଚାରିଲେ ନାହିଁ । କାହିଁକି ପଚାରିବେ । କୋଉ ଅଧିକାର ଅଛି ବା ତାଙ୍କର । ସବୁ ସୁଖ ଶରଧା ତ ମୁଁ ଜାଳି ପାଉଁଶ କରି ଦେଇଛି । ଗୋପଭାଇ ପଛରେ ନ ଦଉଡ଼ି ଥିଲେ ଏଇ ମଧୁଆଭାଇର ମୁଁ ହୋଇଥାନ୍ତି ସ୍ତ୍ରୀ—ମାଣିକର ନୂଆବୋଉ । ମାଣିକ ହସି ହସି କେତେ ଥଟ୍ଟା କରୁଥାନ୍ତା —ବୋଉ ମୋର ପ୍ରାଣଭରି ଶାନ୍ତି ପାଇଥାନ୍ତା—ଆଉ ମଧୁଭାଇ·········

ଥାଉ—ସେ ସବୁ ଯାଇଚି । ପୋଡ଼ିଗଲା ଭାତରେ ସୁଆଦ ନଥିଲା ପରି ସେ କଥାରେ ବି ସୁଆଦ ନାହିଁ । ଘର ଦୁଆରକୁ ଥରେ ଫେରି ପଡ଼ି ଅନାଇଲି । ଆଖିରୁ ମୋର ଲୁହ ଧାର ଧାର ହୋଇ ଗଡ଼ି ପଡ଼ିଲା । ଆହା, ରାତି ପାହିଲେ ଅତି ଆପଣାର ଭାଇ ଝୁନକୁ ଆଉ ଦେଖିବି ନାହିଁ । ନାନୀ, ନାନୀ ବୋଲି କେତେ ସେ ଖୋଜିବ । କାହାକୁ କହିବ, ନାନୀ ମୋତେ ଭେକ କଲଣି—ନାନୀ ମତେ ମିଠେଇ ଆଣିଦେ । ସବୁ ଅଳି ତା'ର ଆଜି ସରିଲା । ମନେ ମନେ କହିଲି—ଝୁନ, ଯାଉଛି—ପୁନ ନାନୀକୁ ଆଉ ଖୋଜିଲେ ପାଇବୁ ନାହିଁ—ସେ କାଲିଠୁ ମରିଯାଇଥିବ । ବୋଉକୁ ଅଜଣା ଦଣ୍ଡବତ ହୋଇ କହିଲି, ବୋଉ ସବୁ ଦିନ ପାଇଁ ଯାଉଚି—ଏଣିକି ସୁଖରେ ରହିବୁ । ଯେତେ ଦୋଷ କରିଚି—ସେ ସବୁ ତୁ କ୍ଷମା ଦେବୁ—ଆଉ ଆଶୀର୍ବାଦ କରିବୁ ନାତି ତୋର ଦୁନିଆରେ ବଞ୍ଚି ରହୁ ।

ମନେ ମନେ ଏତିକି କହି ଅଜଣା ଦେବତା ଉଦ୍ଦେଶ୍ୟରେ ଅନ୍ତରର ଅବ୍ୟକ୍ତ ନିବେଦନ ଜଣାଇ ଆଗକୁ ପାଦ କାଢ଼ିଲି । ଘରବାଡ଼ି, ମାଆ, ଭାଇ, ସ୍ନେହ ମମତା ସବୁ ପଡ଼ି ରହିଲା ପଛରେ ।

ମୁଁ ଚାଲିଲି । ଛପି ଛପିକା ଗଛ ତଳେଇ, ଆଲୁଅ ଅନ୍ଧାର ପାର ହୋଇ ଅରମା ଅବାଟରେ—ଖାଲ ଢିପ ନ ମାନି ଚାଲିଲି । କେତେ ବାଟ, କେତେ ଗାଁ ପାର ହୋଇ ଆସିଲି ଜାଣେ ନାହିଁ । ବେଳେ ବେଳେ ବିଲୁଆ କୁକୁର ଗୁଡ଼ାଙ୍କ ପାଟି ଶୁଣି ମୁଁ ଚମକି ପଡ଼େ—ପୁଣି ଚାଲେ । ଏତୁଟିଏ ହେଲଣି—ଭୂତକୁ ଡର ଦିନେ ବି ରାତିରେ ପଦାକୁ ଏକଲା ଉଠେ ନାହିଁ; କିନ୍ତୁ ଆଜି ମୋତେ ଭୂତ ଡର ନ ଥିଲା— ମୁଁ ପାଗଳୀ ପରି ଚାଲିଥିଲି ।

ରାତି ପାହାନ୍ତା ହେଲା । ପୂରୁବ ଆକାଶରେ ସିନ୍ଦୁର ଫାଟିଲା ବେଳକୁ ମୁଁ ଦେଖେ ଗୋଟାଏ ରେଲ ଷ୍ଟେସନରେ ଆସି ପହଞ୍ଚିଲଣି । ପଚାରି ବୁଝିଲି—ଜଗତପୁର ଷ୍ଟେସନ । ଗୋଡ଼ ମୋର ଥକି ଯାଇଥାଏ—ଅବଶ ଲାଗିଲା । ଷ୍ଟେସନ ଭିତରେ ସ୍ତ୍ରୀ ଲୋକଙ୍କ

ବିଶ୍ରାମଘରେ ମୁଁ ଯାଇ ବସି ପଡ଼ିଲି । ଆଉ ସେ ଘରେ କେହି ନଥାନ୍ତି—ଅମର ଘଣ୍ଟାକ ଆଗରୁ ନିଦରୁ ଉଠି ଯାଇଥିଲା, ତାକୁ କୋଳରେ ପୂରେଇ କ୍ଷୀର ଦେଲି ।

ଦୁ' ଘଣ୍ଟା ପରେ ଜଣେ ବାବୁ ଓ ଗୋଟିଏ ସ୍ତ୍ରୀ ଲୋକ ସେଇ ଘରକୁ ଆସିଲେ । କୁଲିଟି ଆସି ତାଙ୍କର ବିଛଣା ଓ ଟ୍ରଙ୍କଟି ରଖିଦେଇ ବାବୁଟିଠାରୁ ପଇସା ମାଗି ନେଇ ଚାଲିଗଲା । ସେମାନେ ମୋ ପାଖରେ ଥିବା ବେଞ୍ଚ ଉପରେ ବସିଲେ । ତାଙ୍କର ଚେହେରା ଓ ବେଶଭୂଷାରୁ ମନେ ହେଉଥିଲା ନିଶ୍ଚୟ କୌଣସି ସମ୍ଭ୍ରାନ୍ତ ବଡ଼ଘରର ପିଲା । ସ୍ତ୍ରୀଟି ବାରମ୍ବାର ମୋତେ ଅନାଉଥାନ୍ତି ।

ପାନ-ବିଡ଼ି-ସିଗାରେଟ୍, ପାନ-ବିଡ଼ି-ସିଗାରେଟ୍ ।

ପ୍ଲାଟଫର୍ମ ଉପରେ ସେତିକବେଳେ ଗୋଟିଏ ଟୋକା ଡାକି ଡାକି ଗଲା । ବାବୁଟି ସେହି ଟୋକାକୁ ଡାକି ସିଗାରେଟ୍ କିଣି ନିଆଁ ଧରେଇଲେ । ଟୋକାଟି ପଇସା ନେଇ ଚାଲିଗଲା । ସିଗାରେଟ ଟାଣୁ ଟାଣୁ ବାବୁଟି ପଚାରିଲେ, ମାଆ ତମେ କୁଆଡ଼େ ଯିବ ? ସତେ ମୁଁ କୁଆଡ଼େ ଯିବି ତାଙ୍କର ଏଇ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମୁଁ ବଡ଼ ଅଡୁଆରେ ପଡ଼ିଲି । କିଛି ଠିକ୍ ନ କରି ପାରି କହିଲି କୁଆଡ଼େ ଯିବି ଜାଣେନା । ମୋ ଉତ୍ତରରେ ଆଶ୍ଚର୍ଯ୍ୟ ହୋଇ ସେ କହିଲେ, କୁଆଡ଼େ ଯିବ, ଅଥଚ ନିଜେ ଜାଣନା ? ସ୍ତ୍ରୀ ଲୋକଟି ମୋ ଆଡ଼କୁ ସନ୍ଦେହ ଦୃଷ୍ଟିରେ ଅନାଇଲେ । ବାବୁଟି ପୁଣି ସ୍ନେହଭରା ଗଳାରେ କହିଲେ, କୁଆଡ଼େ ଯିବ ମା ସତ କୁହ । ତୁମକୁ ଦେଖିଲେ ମନେ ହେଉଚି ବୁନିଆଦି ଘରର ଝିଅ ପରି । ଅଥଚ ଏକଲା ତୁମେ —ସାଥିରେ କେହି ନାହିଁ । କୋଳରେ ଗ୍ରେଟ ପିଲାଟି, ଘୋଚା ହୋଇ ଘରୁ ବାହାରି ଆସି ନାହିଁତ ? ବାବୁଙ୍କ ଅନୁମାନଭରା ପ୍ରଶ୍ନଟି ମୋତେ ବିଚଳିତ କରି ପକାଇଲା । ମିଛରେ କହିଲି, ସ୍ୱାମୀ ମୋତେ ଘରୁ ବାହାର କରି ଦେଇଚନ୍ତି— ଘରୁ ଆସିଲିଣି ଆଠଦିନ ହେବ । କୁଆଡ଼େ ଯିବି କିଛି ସ୍ଥିର କରିନି । ଦେଖିଚି କେଉଁଠି ଚାକରାଣୀ ରହି ଏହି ପୁଅଟିକୁ ପୋଷିବି । ସ୍ତ୍ରୀ ଲୋକଟି ପଚାରିଲେ, କାହିଁକି ଝିଅ ତୋତେ ଘରୁ ବାହାର କରିଦେଲେ—ସ୍ୱାମୀ କଣ ତୁମକୁ ଭଲ ପାଆନ୍ତି ନାହିଁ ? କି ସୁନ୍ଦର ଚେହେରା—ରଜା ଝିଅ ପରି । କେଉଁ ଦୋଷ ଦେଖି ସ୍ୱାମୀ ତୁମର ରୋଷ ହେଲେ ?

କଣ କରିବି—କି ଉତ୍ତର ଦେବି, ବଡ଼ ଅଡୁଆ ପ୍ରଶ୍ନ ପଚାରିଲେ । ଟିକିଏ ଭାବି ଚିନ୍ତି କହିଲି, ସ୍ୱାମୀ ମୋର ଭାରି ଗଞ୍ଜେଡ଼ି—ଯାହା ରୋଜଗାର କରନ୍ତି ସବୁ ଗଞ୍ଜେଇରେ ଉଡ଼େଇ ଦିଅନ୍ତି । ଏଣେ ଘର ଚଳିବ କିପରି ? ଏହି କଥା କହିଲେ ସେ ମୋ

ଉପରେ ଭାର ଘୋଷା ହୁଅନ୍ତି, ବେଳେ ବେଳେ ଭଲ କଥାକୁ ଖରାପ ବୁଝି ମାରନ୍ତି । ବାର ଲୋକ ବାର ଦେଖଣା—ଖଜଣା ବାକୀ ଚାରିବରଷ ହେଲାଣି । ସେଦିନ ଜମିଦାର ଆସି କହିଲେ ଖଜଣା ଦେବତ ଦିଅ ନଚେତ ନାଲିସ କରି ଜମି ବାଡ଼ି କୋରକ କରିନେବି । ସେ ଦିନ ମୁଁ ଏଇ କଥା ତାଙ୍କୁ କହିଲି, ଏ ସବୁ ଖବର ବୁଝି ବତ ବୁଝ, ନଇଲେ ମୁଁ ଘରେ ଥିଲେ ରହିବ ନାହିଁ । ସେ କଣ ବୁଝିଲେ, ଗୋଟାଏ ମସ୍ତବଡ଼ ବାଡ଼ି ଆଣି ମୋତେ ବାଡ଼େଇ ବାଡ଼େଇ କହିଲେ, ଏଇ ଲାଗେ ମୋ ଘରୁ ବାହାରି ଯା—ମୋର ତୋ ପରି ମାଇକିନା ଦରକାର ନାହିଁ । ମୁଁ ଆଉ ଗୋଟାଏ ବାହା ହେବି । ଭାରି ରାଗ ହେଲା ମୋର—କେତେ ସହିବି—ପୁଅକୁ କୋଳରେ ନେଇ ଘର ଛାଡ଼ିଲି । ଭାବିଲି, ଯିବି କୁଆଡ଼େ, ବାପ ଘରେ ତ କେହି ନାହାନ୍ତି । ସମସ୍ତେ ଆରବରଷ ହଇଜାରେ ଆଖି ବୁଜିଚନ୍ତି । ମନେ ମନେ ସ୍ଥିର କରିଚି, କେଉଁଠି ମୂଲ ଲାଗି ପେଟ ପୋଷି ଏ ପିଲାଟିକୁ ମଣିଷ କରିବି । ଏହାରି ପାଇଁ ଖାଲି ବଞ୍ଚି ରହିବା କଥା । ପିଲାଟିକି ନେଇ ଏଆଡ଼େ ମରିଯିବି ପଛେ ଘରକୁ ଆଉ ଲେଉଟିବି ନାହିଁ । କହୁ କହୁ ଆଖିରେ ମୋର ଲୁହ ଜମି ଆସିଲା ।

ଏତିକିବେଳେ କୁଆଡ଼େ ଥିଲା ଗୋଟାଏ ମାଲଗାଡ଼ି ଦୁମ୍ ଦୁମ୍ ହୋଇ ଷ୍ଟେସନ କମ୍ପାଇ ଚାଲିଗଲା । ସ୍ତ୍ରୀ ଲୋକଟି କଣ ଭାବି କହିଲେ, କଟକ ଯିବ—ଆମ ଘରେ ରହିବ ? ମୁଁ ତାଙ୍କ କଥାର ଉତ୍ତର ନ ଦେଇ ବାବୁଙ୍କ ଆଡ଼କୁ ଅନାଇଲି । ବାବୁଟି ହସି ହସି ମୋ ମନ କଥା ଜାଣିଲା ପରି କହିଲେ, ମୋ ମତ ଲୋଡ଼ୁଛ ବୋଧହୁଏ—ମୋର କିଛି ଆପତ୍ତି ନାହିଁ । ଯିବ ଆମ ଘରକୁ ? ଝିଅ ପରି ରହିବ—କିଛି ଅସୁବିଧା ହେବନି । ବାବୁଙ୍କର ସ୍ନେହଭରା କଥା ଶୁଣି କୃତଜ୍ଞତାରେ ହୃଦୟ ପୂରିଗଲା । ତଳକୁ ମୁହଁ ପୋତି ସମ୍ମତି ଜଣାଇ କହିଲି, ଯିବି । ବାବୁଆଣୀଟି ହସି ହସି ମୋ କୋଳରୁ ପୁଅଟିକି ନେଇ ଗେଲ କରିବାକୁ ଲାଗିଲେ । କଟକ ଗାଡ଼ି ଆସିବାକୁ ସେତେବେଳକୁ ଅନେକ ଡେରିଥାଏ ।



ସେଦିନ ବାରଟା ଗାଡ଼ିରେ କଟକ ଆସିଲି । ବାବୁଙ୍କର ନାମ ପ୍ରତାପ ଚୌଧୁରୀ, କଟକର ସୁନାମଧନ୍ୟ ଓକିଲ । ତେଲେଙ୍ଗା ବଜାରରେ ନିଜର ଦୋମହଲା କୋଠା । ନିଜର ଏକମାତ୍ର ପୁଅ ବିକାଶ ବି. ଏ. ପାଶ୍ କରି 'ଲ' ପଢ଼ୁଛି । ବିକାଶ ଆଗରୁ ମୋ ପରି ତାଙ୍କର ଗୋଟିଏ ଝିଅ ମରିଯାଇଛି । ଝିଅଟିକୁ ପ୍ରତାପ ବାବୁ ଖୁବ ଭଲ ପାଉଥିଲେ । ଅତି ଆଦରରେ ତା'ର ନାଁ ଦେଇଥିଲେ "କଳ୍ପନା" । ଝିଅ ମରିବା ଦୁଃଖ ପ୍ରତାପ ବାବୁ ଏ ଯାଏ ଭୁଲି ପାରି ନାହାନ୍ତି । ମୋତେ ପାଇଲା ଦିନୁ କେବେ କେବେ କଳ୍ପନା କଳ୍ପନା ବୋଲି ଡାକନ୍ତି । ଆଉ ତାଙ୍କ ସ୍ତ୍ରୀକୁ କହନ୍ତି—ଜାଣିଲ ପ୍ରଭା, କଳ୍ପନା ମାଆକୁ ମୋର ଏତେ ଦିନେ ଫେରି ପାଇଛି । ପ୍ରଭାଦେବୀ ହସନ୍ତି—ପରିତୃପ୍ତିର ହସ ।

ଆସିଲା ଦିନ ପ୍ରତାପବାବୁ ଓ ପ୍ରଭାଦେବୀଙ୍କୁ କହିଲି, ମୋର ତ କେହି ନାହାଁନ୍ତି । ତମେ ମୋର ବାପ, ମା ସବୁ । ସେହିଦିନଠୁ ପ୍ରତାପବାବୁଙ୍କୁ ବାପା, ପ୍ରଭାଦେବୀଙ୍କୁ ବୋଉ ଓ ବିକାଶ ବାବୁଙ୍କୁ ଭାଇ ବୋଲି ଡାକେ । ନିଜ ଘରପରି ମୋତେ ଏଠି କେହି ପର ବୋଲି ଭାବନ୍ତି ନାହିଁ । ଅମରର ସବୁ ଯତ୍ନ ନିଅନ୍ତି । ଅମର ସାଥୀରେ ବାପା ବୋଉ କେତେ ଖେଳ ଖେଳନ୍ତି । ଅମର ହେଉଛି ତାଙ୍କ ନିରୋଳା ଜୀବନର ବଡ଼ ସାଥୀ । ବିକାଶଭାଇ ମୋତେ ନିଜର ଭଉଣୀଠାରୁ ଅଧିକ ସ୍ନେହ କରନ୍ତି । ବଜାରରୁ ନିଇତି କିଣି ଆଣନ୍ତି ମୋ ଲାଗି ଓ ଅମର ଲାଗି କେତେ ସଉଖିନ ଜିନିଷ । ମନା କରେ—ସେ ମନା ମାନନ୍ତି ନାହିଁ । ହସି ହସି ମୋ ସାଥିରେ କେତେ ଗେଲ ଖେଳନ୍ତି । ପୁଣି ସୁଅ ପରି ଦିନ ଗଡ଼ି ଚାଲେ ।

କେବେ କେବେ ଗାଁ ଛବି ଆଖି ଆଗରେ ନାଚି ଉଠେ । ଭାବନା ବାଦଲ ଭିତରୁ ଗୋଟି ଗୋଟି ହୋଇ ଉଙ୍କି ମାରନ୍ତି—ମଧୁଭାଇ, ଗୋପଭାଇ, ମାଣିକ, ବୋଉ,

ଚୂନ । କାହାନ୍ତି ସେ ସବୁ ଆଜି ! ମଧୁଭାଇ—ପିଲାବେଳର ସାଥୀ, ସେ ହୁଏତ ବାହା ହୋଇ ସାରିବେଣି । ମାଣିକ ବାହା ହୋଇ ଘରସଂସାର କଲେଣି । ଗୋପଭାଇ ବଡ଼ଲୋକ—ତାଙ୍କର କଣ ପୁରୁଣା କଥା ମନେ ଥିବ ? ସେ ହୁଏତ ବାହା ହୋଇ ସୁନା ସଂସାର କରିବେଣି । ବୋଉ, ଯୋଉ ବୋଉ ମୋତେ ଦଣ୍ଡେ ନ ଦେଖିଲେ ବଣା ହେଉଥିଲା, ସେ ଆଜି କପରି ଥିବ ? ହୁଏତ କୁଳକଳଙ୍କିନୀ ଝିଅଟାକୁ ହରାଇ ସୁଖରେ ଥିବ । କିନ୍ତୁ ଚୂନ—ଚୂନ କିନ୍ତୁ ମୋତେ ଭୁଲି ନଥିବ । ଏଇ କୋଳରେ ତାକୁ କାଖେଇ କୁଣ୍ଢେଇ ମଣିଷ କରିଚି; ସେ କଦାପି ଭୁଲି ପାରିବ ନାହିଁ । ଆଖିରୁ ଥପ୍ ଥପ୍ ହୋଇ ଲୁହ ଝରିପଡ଼େ । ଏହି ଭାବନାରେ ମୁଁ ବେଳେ ବେଳେ ଅନ୍ୟ-ମନସ୍କ ହୋଇ ଉଠିଲେ ବୋଉ କୁହନ୍ତି, ପୁରୁଣା ଘରକଥା ମନେ ପଡୁଚି କି ? ସତ କହ ମା ଘରକୁ ଯିବାକୁ ଇଚ୍ଛା ଥିଲେ ବିକାଶ ଯାଇ ଛାଡ଼ି ଦେଇ ଆସିବ । ମୁଁ ମୁହଁର ଭାବ ପରିବର୍ତ୍ତନ କରି ହସି ହସି କୁହେ, ନା ବୋଉ, ମୋର ଘରକଥା ମନେ ପଡୁନି । ଏଠି ମୁଁ ବେଶ ସୁଖରେ ଅଛି । ତମ ପରି ବୋଉ ପାଇଚି —ଏହାଠୁ ବଳି ଭାଗ୍ୟ ମୋର କଣ ଅଛି ! ବୋଉ ମୋ କଥାରେ ଭୁଲି ଯାଆନ୍ତି ।

ସତକୁ ସତ ବାପା ଅମରକୁ ଏତେ ଭଲ ପାଆନ୍ତି ଯେ ତାକୁ ଘଡ଼ିଏ କୋଳରେ ନ ପୂରେଇଲେ ମନଟା ତାଙ୍କର ଶାନ୍ତ ହୁଏନା । ଅମର ଆଣ୍ଠେଇଲାଣି । ବାପାଙ୍କୁ ଦେଖି କୁଲୁ କୁଲୁ ହୋଇ ହସେ । ସାଇ ପଡ଼ିଶା ଘରର ଝିଅମାନେ ସମସ୍ତେ ତାକୁ ଆଦର କରନ୍ତି । କହନ୍ତି, କେଡ଼େ ସୁନ୍ଦର ପୁଅଟିଏ ଲୋ—ଠିକ ପୁନେଇ ଜହ୍ନଟି ପରି । ହୃଦୟ ମୋର ଗର୍ବରେ ଫୁଲିଉଠେ ।

କିନ୍ତୁ ଏତେ ସୁଖ ଏତେ ଆଦରରେ ଥାଇବି ଯେପରି କାହାର ଅଭାବ ଅନୁଭବ କରେ । ମନଟା କଣ ପାଇବାକୁ ବେଳେ ବେଳେ ପାଗଳ ହୋଇଉଠେ । ବିକାଶଭାଇଙ୍କୁ ଦେଖିଲେ ଗୋପଭାଇଙ୍କର ଛବି ଆଖି ଆଗରେ ନାଚି ଉଠେ । କ୍ଷଣକ ପାଇଁ ହୃଦୟରେ ମୋର ଦୁର୍ବଳତା ଆସେ । କିନ୍ତୁ ପରକ୍ଷଣରେ ନିଜକୁ ସମ୍ଭାଳି ନିଏ । ଯଉବନର ଉଚ୍ଛଳା ମନ କେତେବେଳେ କୁଆଡ଼େ ଧାଏଁ—ଠିକ୍ କରି ପାରେନା ।

ଦେଖୁ ଦେଖୁ ଦୁଇଟା ବରଷ ହସାଇ କନ୍ଦାଇ, ଝୁରାଇ, ଫୁଟାଇ କୁଆଡ଼େ ହଜିଗଲା—ଅମଡ଼ା ଦୁନିଆରେ ଅସରନ୍ତି ପଥରେ । କେତେ ପୁନେଇଁ କେତେ ଅମାବାସ୍ୟା—କେତେ ମାସ, କେତେ ଋତୁ ବିତିଗଲା—ଜୁଆର ଭଟ୍ଟା, ଦ'ଦିନର ଦୁନିଆରେ ।



ସେଦିନ ଦି'ପହରରେ କୁଆଡ଼େ ଥିଲା ଖଣ୍ଡି ଅଦ୍ଭୁତ ପରି ମେଘଟା ଉଠାଇଲା । ପବନ ଜୋରରେ ପିଟୁଥାଏ । ଦି'ପହରର ଖରା ତେଜ ହଜିଯାଇଥାଏ । ଘରେ ବସି ଭାବୁଚି କୋଉ କଥା, ଟୁନି କଥା । ଗୋପଭାଇଙ୍କ ସ୍ମୃତିଭରା ଆଖି ଆଗରେ ନାଚି ଉଠୁଥାଏ । ମନଟା ଭାରି ଅସ୍ଥିର ହେଲା—ଆଖିରେ ଖାଲି ଲୁହ ଆସିଲା । ହଠାତ୍ କାହାର ଡାକ ଶୁଭିଲା—ପୁନି, ପୁନି । ଜାଣି ପାରିଲି, ବିକାଶଭାଇଙ୍କ ସ୍ୱର । ବିକାଶଭାଇଙ୍କ ଡାକ ଶୁଣି ଆଖିରୁ ଲୁହ ପୋଛି ପକାଇଲି ।

ସେ ଡାକି ଡାକି ତଳୁ ଉପର ମହଲାକୁ ଆସିଲେ । ମୋତେ ଦେଖି କହିଲେ, ପୁନି, ଆଜି ସଞ୍ଜବେଳେ ମୋର ଜଣେ ବନ୍ଧୁ ଆସିବେ—ନିମନ୍ତ୍ରଣ କରି ଆସିଚି । ତୁ ଯା କିଛି ଜଳଖିଆ ତିଆରି କର । କହିଲି, ବନ୍ଧୁଙ୍କ ପାଇଁ ଯଦି ଏତେ ଖଟିବି—ତେବେ ପୁରସ୍କାର କିଛି ମିଳିବ ନା ଖାଲି ଖାଲି । ହସି ହସି କହିଲେ—ଆଚ୍ଛା ଯା, କାଲି ସିନେମା ଦେଖେଇ ନେବି । ହସି ହସି କହିଲି, କାମ ସରିଗଲେ ଠକିବ । କାହିଁ—ସେଦିନ ପରା ତମର ଆଉ ଜଣେ ବନ୍ଧୁ ପାଇଁ ଏତେ ପରିଶ୍ରମ କରିଥିଲି—ଖୁବ୍ ତ ସିନେମା ଦେଖାଇଲ । ଗୋଟିଏ ମସ୍ତବଡ଼ ଠକ ତୁମେ ବିକାଶଭାଇ ! ବିକାଶଭାଇ ହସି ହସି ମୋ ହାତଧରି କହିଲେ, କାଲି ନିଶ୍ଚୟ ସିନେମା ଦେଖାଇ ଦେବି—ଯା ସୁନା ଭଉଣୀଟା ପରା । ହସି ହସି ପଚାରିଲି, ଆର ଥରତ ସୁଦାମ ବାବୁ ଆସିଥିଲେ, ଏଥର ପୁଣି କୋଉ ବନ୍ଧୁ ଆସୁଚନ୍ତି ? ସେ କହିଲେ ଏ ବନ୍ଧୁଟିର ନାମ ଗୋପବାବୁ । ଗୋପବାବୁଙ୍କ ନାଁ ଶୁଣି ହଠାତ୍ ମୋର ସାରା ଶରୀରରେ ସ୍ପନ୍ଦନ ଖେଳିଗଲା । ପଚାରିଲି, ଏ ବନ୍ଧୁଟିଙ୍କ ଘର କେଉଁଠି କି ? ସେ ଟିକିଏ ରହି କହିଲେ, ଘରଟା କେଉଁଠି ଠିକ୍ କରି କହି ପାରିବି ନାହିଁ । ତେବେ ଯେତେଦୂର

ଜାଣେ କୌଣସି ମଫସଲରେ—ବର୍ତ୍ତମାନ କଟକରେ ଅଛନ୍ତି । ନିଜର କୋଠା ବାଡ଼ି । ବ୍ୟବସାୟ ସବୁ କଟକରେ । ଏତକ କହି ସେ ତଳକୁ ଗଲେ । ସନ୍ଦେହ ରହିଲା ମନରେ । ଭାବିଲି, ଯଦି ପ୍ରକୃତ ମୋର ଅତି ଆପଣାର ଗୋପଭାଇ ହୋଇଥାନ୍ତି ତେବେ—ତେବେ କଣ କରିବି ? ତାଙ୍କୁ କଣ ଆଉ ଖାଇବାକୁ ଦେଇ ପାରିବି ? ନା ତାଙ୍କୁ ମୁଁ ଆଉ ଦେଖା ଦେବିନି । ସେ ସାତପରରେ ପର, ବିଶ୍ୱାସରେ ବିଷ ଦେଇଛନ୍ତି, ସାରା ଜୀବନକୁ ମୋତେ ଠକିଛନ୍ତି । ମନରେ ବହିଲା ଭାବନାର ଝଡ଼ ତୋଫାନ ।

ଜଳଖିଆ ପ୍ରଭୃତି ତିଆରି କରି ସାରିଲା ବେଳକୁ ସଞ୍ଜ ହୋଇଗଲା । ଅଧନମେଘଟା ଉଡ଼ି ଯାଇଥିଲା କେଉଁ ବିରହୀ ଯକ୍ଷର ସନ୍ଦେଶ ନେଇ—ଆକାଶ ହୋଇଥିଲା ସୁନ୍ଦର —ମନୋରମ । କଇଁଫୁଲିଆ ଜହ୍ନ ହସିଉଠିଲା । ବଗିଚାରେ ଫୁଟିଥିବା ହେନା ଫୁଲର ଗନ୍ଧ ଭାସି ଆସି ମନରେ ଅଜଣା ଛନ୍ଦ ତୋଳୁଥାଏ ।

କାନ୍ଥରେ ଥିବା ଘଡ଼ିରେ ଟଂ ଟଂ ହୋଇ ସାତଟା ବାଜିଲା । ବିକାଶଭାଇଙ୍କି ପଚାରିଲି, କାହିଁ ବନ୍ଧୁଟିଙ୍କର ଏଯାଏ ଦେଖା ନାହିଁ । ଜଳଖିଆ ପ୍ରଭୃତି ସବୁତ ଥଣ୍ଡା ହୋଇ ସାରିଲଣି । ଆଜି ଆସିବେ ନାହିଁ ନା କଣ ? ବିକାଶଭାଇ କହିଲେ, ନିଶ୍ଚୟ ଆସିବ—ମୁଁ ତାକୁ ବାର ବାର କରି କହିଚି । ପାଟି କଥା ପାଟିରେ ଅଛି ରେକ୍ସା ଘଣ୍ଟି ଶୁଭିଲା । କହିଲି, ଏଇ ଆସିଲେ ବୋଧହୁଏ । ଦୁହେଁ ଦୋତାଲା ଉପରୁ ତଳକୁ ଅନାଇଲୁ । ଦୋତାଲା ଉପରୁ ଛିଡ଼ା ହେଲେ ଆମ ଫାଟକ ସାମନା ରାସ୍ତା ଦେଖା-ଯାଏ । ସତକୁ ସତ ରେକ୍ସାଟି ଆମ ଫାଟକ ଭିତରକୁ ପଶି ସାରିଥିଲା । ବିକାଶ ଭାଇ ତରବର ହୋଇ ତଳକୁ ପଳାଇଲେ । ମୁଁ ସେଇ ରିକ୍ସା ଆଡ଼କୁ ଅନାଇଁ ଥାଏ । ରେକ୍ସା ଉପରୁ ସିଏ ଓହ୍ଲାଇ ପଡ଼ିଲେ ତାଙ୍କୁ ଚିହ୍ନିବାକୁ ଆଉ ଅବକାଶ ରହିଲା ନାହିଁ । ଗୋପଭାଇ—ମୋର ଅତି ଆପଣାର ସେଇ ଗୋପଭାଇ । ଭାବିଲି, ଗୋପଭାଇ ବୋଧହୁଏ ଗାଁ ଛାଡ଼ି ଏଇଲାଗେ କଟକରେ ଅଛନ୍ତି । ଗୋପଭାଇଙ୍କି ଦେଖିଲାକ୍ଷଣି ମୋ ଛାତି ଭିତରଟା କଣ ହୋଇଗଲା । ମୁଣ୍ଡଟା ଗୋଳମାଳ ଧରିଲା । ମୋ ଘରକୁ ଫେରି ଆସି ଖଟ ଉପରେ ଶୋଇପଡ଼ିଲି । ଗୋଟି ଗୋଟି ହୋଇ ପୁରୁଣା ସ୍ମୃତି ଦପ୍ ଦପ୍ କରି ମନ ଉପରେ ଜଳି ଉଠିଲା । ଗୋପଭାଇ ଯଦି ଜାଣନ୍ତି ମୁଁ ଏଠି ଅଛି—ତେବେ ସେ କଣ ପୁଣି ମୋତେ ଆପଣାର କରି ନେଇ ପାରିବେ ? ନା ନା—ମୁଁ ସିନା ଗୋପଭାଇଙ୍କି ଭୁଲି ପାରିନି—କିନ୍ତୁ ଗୋପଭାଇ କଣ ମୋ କଥା ମନେ ରଖିଥିବେ ? ମୁଁ ଘରଛାଡ଼ି ଆସିବା ପରେ ସେ ଭାବିଥିବେ, ପୁଷ୍ପ ବୋଧହୁଏ ମରିସିବଣି । ଭାବିଲି, କାହିଁକି ଗୋପଭାଇଙ୍କି ପରିଚୟ ଦେବି ? ମସ୍ତିଚକା

ପଛରେ ଆଉ ଦଉଡ଼ି ତୃଷା ତ ମେଣ୍ଟିବ ନାହିଁ—ଖାଲି ଦଉଡ଼ିବା ସାର ହେବ ସିନା ! ନା ଗୋପଭାଇଙ୍କଠାରୁ ଦୂରରେ ରହିବ ।

କ୍ଷଣକ ପରେ ବିକାଶଭାଇ ଆସି ପହଞ୍ଚିଲେ । କହିଲେ—ପୁନି, ଜଳଖିଆ ନେଇ ଚାଲି । ମୁଁ ମିଛରେ ଛଳନାକରି କହିଲି, ଭାଇ ମୋ ମୁଣ୍ଡଟା ବିନ୍ଧୁଛି— ଭଲ ଲାଗୁନି, ବୋଉକୁ କୁହ ଖାଇବାକୁ ଦେବ । ବିକାଶଭାଇ ସତ ବୁଝି ଚାଲିଗଲେ । ଗଲାବେଳେ କହିଗଲେ—ପୁନି, ମୁଣ୍ଡ ବିନ୍ଧୁଛି ତ ଶୋଇପଡ଼—ଆଜି ଅନେକ ପରିଶ୍ରମ କରିଛୁ ।

ବିକାଶଭାଇ ଚାଲିଗଲା ପରେ ମନଟା ମୋର ସ୍ଥିର ହେଲା ନାହିଁ । ଅଧଘଣ୍ଟା ପରେ ତଳକୁ ଆସି ପରଦା ଏ ପାଖରୁ ଫାଙ୍କରେ ଅନାଇଲି । ଦେଖିଲି, ଗୋପଭାଇ କୋଳରେ ଅମର ବସିଛି । ଗୋପଭାଇ ତାକୁ ଗେଲ କରୁଛନ୍ତି । ଟିକିଏ ପରେ ସେ ବିକାଶଭାଇଙ୍କୁ ପଚାରିଲେ, ଏ କିଏ ତମ ଭାଇ ନା ? ବିକାଶଭାଇ କଣ ଭାବି କହିଲେ, ଏ ମୋର ଭଉଣୀର ପୁଅ । ବଞ୍ଚିଗଲି । ଯଦି ସେ ଅମରର ଇତିବୃତ୍ତ କହିଥାନ୍ତେ ତେବେ ଗୋପଭାଇଙ୍କର ଚହ୍ନିବାର ଆଉ ଅବକାଶ ରହି ନଥାନ୍ତା । ମନେ ମନେ ଭାବୁଥାଏ— ନିଜ ପୁଅକୁ ଚହ୍ନିପାରୁ ନାହାନ୍ତି ? କହିଦେବିକି, ଗୋପଭାଇ ତମେ ଦିନେ ଯାକୁ ମାରିବାକୁ ଆସିଥିଲ—ସେଇ ଅମର । ସେ ମରିନାହିଁ, ବଞ୍ଚିଛି । ସାହସ ହେଲା ନାହିଁ—ମନକଥା ମୋର ମନରେ ରହିଲା । କେତେ ଘଡ଼ିଯାଏ ବିକାଶଭାଇଙ୍କ ସହିତ କେତେ ଆଉର ଗପ କରିବାକୁ ଲାଗିଲେ । ବିକାଶଭାଇ ତ ଏକ ମସ୍ତ ଗପୁଡ଼ି— ତାଙ୍କୁ ବି ଗୋଟାଏ ସାଙ୍ଗ ମିଳିଗଲା ।

ଘଡ଼ିରେ ଟଂ ଟଂ ହୋଇ ଦଶଟା ବାଜିଲା । ସ୍ୱପ୍ନ ରାଜ୍ୟରୁ ଫେରି ଆସିଲା ପରି ଗୋପଭାଇ ଉଠି ଛିଡ଼ା ହେଲେ । କହିଲେ, ବିକାଶ ବଡ଼ ଡେରି ହେଲାଣି — ହେମ କହିଥିଲା ଚଞ୍ଚଳ ଫେରିବାକୁ । ମୋର ଏତେ ଡେରି ଦେଖି ବ୍ୟସ୍ତ ହୋଇ ପଡ଼ିବଣି । ଆଜିପାଇଁ ବିଦାୟ ନେଉଛି । ବିକାଶ କହିଲେ, ସତରେ ଡେରି ହୋଇ- ଗଲାଣି—ହଉ ତେବେ ଚାଲନ୍ତୁ । ଦୁହେଁ ଉଠିଲେ ।

ଦୋତାଲା ଉପରକୁ ଚାଲି ଆସି ତଳକୁ ଅନାଇଲି । ଗୋପଭାଇ ହସି ହସି ରିକ୍‌ସାରେ ବସିଲେ । ଭାଇ ତାଙ୍କୁ ରାସ୍ତା ଉପରେ ଛାଡ଼ି ଘରକୁ ଫେରି ଆସିଲେ । ମନରେ ପ୍ରଶ୍ନ ଉଠିଲା, ହେମ କିଏ ? ଗୋପଭାଇ କଣ ବାହା ହେଲେଣି ? ହୁଏତ ବାହା ହୋଇ ସେ ତାଙ୍କର ସୁନାର ସଂସାର କରିବେଣି । ମୁଁ ସିନା ତାଙ୍କରି ଚରଣ ତଳେ ନିଜକୁ ଉତ୍ସର୍ଗ କରି ଦେଇଥିଲି—କିନ୍ତୁ ସେ ତ ମୋତେ ଆପଣାର କରି ଗ୍ରହଣ କରି ନ ଥିଲେ । କରିଥିଲେ କ୍ଷଣକ ପାଇଁ—ନିଜର କାମନା ଚରିତାର୍ଥ କରିବାକୁ । କିନ୍ତୁ ହୃଦୟ ଦେଇ ସେ ମୋତେ ଯେବେ ନ ଥିଲେ ।

ଗୋଟି ଗୋଟି ହୋଇ ଅଶ୍ରୁତର ଝାପ୍‌ସା ସ୍ମୃତିଗୁଡ଼ା ଭାସି ଆସିଲା । ଆଖିରୁ ଲୁହ ଝପ୍ ଝପ୍ ହୋଇ ଗଡ଼ିପଡ଼ିଲା । ଦୁଃଖରେ ମୋର ସାରା ହୃଦୟ ପୂରିଗଲା । ମନ କହିଲା, କିଏ କାହାର—ଦୁନିଆ ମିଛ—ସ୍ନେହ, ମାୟା, ମମତା ସବୁ ମିଛ । ଯୌବନର ପ୍ରଥମ ପରଶରେ ଆଖି ଆଗରେ କେତେ ରଙ୍ଗୀନ ଆଶା ନାଚି ଉଠେ । ମଣିଷ ଅନ୍ଧ-ପରି କଳ୍ପନାର ବିଳାସଭୂମିରେ ଗଢ଼େ ତା'ର କଳ୍ପିତ ନିଳୟ । ଦିନେ ଆସେ ଝଡ଼-ଯୌବନର ସୁନେଲି ଆଶା ତାର ଶୂନ୍ୟରେ ମିଳାଇଯାଏ—କଳ ଘରର ଧୂଆଁ ପରି । ତା' ପରେ ଲାଳାୟିତ ସ୍ୱପ୍ନ ଯାଏ ଭାଜି—ସେ ଦେଖେ ଗୁରୁଆଡ଼ ଅନ୍ଧାର । ଦୁନିଆ ଖେଳଘର—ପଛକୁ ଫେରି ଆସିବାର ବାଟ ନାହିଁ ।

ତା' ପରଦିନ ସକାଳେ ଗାଧୋଇ ଆସି ମୁଁ ମୁଣ୍ଡ କୁଣ୍ଡାଉଚି, ଅମର ତାର କାଠ-ଘୋଡ଼ାଟିକି ନେଇ ଖେଳୁଚି । ରାତିରେ ଘର କଥା, ଗୋପଭାଇଙ୍କ କଥା ମନେ ପଡ଼ି ଭଲ କରି ନିଦ ହୋଇ ନ ଥାଏ—ଆଖିଟା ପୋଡ଼ୁଥାଏ । ମନେ ମନେ ଭାବୁଥାଏ, ବିକାଶଭାଇଙ୍କି ପଚାରିବି କି ତମ ବନ୍ଧୁଟି ବାହା ହୋଇଛନ୍ତି ନା ନାହିଁ; କିନ୍ତୁ ଭୟ ହେଲା । କାଳେ ଯଦି ଭଲ କଥାକୁ ଓଲଟା ଅର୍ଥ କରି କିଛି ସନ୍ଦେହର ସୂଚନା କରନ୍ତି—ତେବେ ସର୍ବନାଶ । ନାଁ ନାଁ ପଚାରିବି ନାହିଁ । ସେ ବାହା ହୋଇ ଥାଆନ୍ତୁ ବା ନ ହୋଇ ଥାଆନ୍ତୁ ସେଥିରେ ମୋର ଯାଏ କେତେ ଆସେ କେତେ ? ମୁଁ ମୋ ପଥ ବାଛି ନେଇଚି । ତଥାପି ଅବୁଝା ମନ ବୁଝୁ ନ ଥାଏ । ଅମର କାଠଘୋଡ଼ା ଛାଡ଼ି ବୋଉ ବୋଉ କହି ମୋ କୋଳକୁ ଆସିବା ପାଇଁ ଅସ୍ଥିର ହେଲା । ହଠାତ୍ ଭାବନାଟା ମୋର ଗୋଳମାଳ ହୋଇଗଲା । ତାକୁ କୋଳକୁ ନେଇ ତା ଗାଲରେ ଚୁମା ଦେବାକୁ ଲାଗିଲି । ସେ କୁଳ୍ କୁଳ୍ ହୋଇ ମୋ ଲୁଗା ତଳେ ମୁହଁ ලୁଚେଇଲା । ତାକୁ ଦେଖି ହୃଦୟ ମୋର ପୁଲକରେ ପୂରି ଉଠିଲା । ମନ କହିଲା—ଗୋପଭାଇ ତମେ ସିନା ମୋତେ ପର କରି ଦେଲ—କିନ୍ତୁ ମୋ କୋଳରେ ତମେ ଯେଉଁ ଦାନଟିକୁ ଅଜାଡ଼ି ଦେଇଚ—ତାକୁ ମୁଁ ତ ପର କରି ପାରିଲି ନାହିଁ ?

ଦିନ ଗଡ଼ି ଚାଲିଲା । ମନରେ ଭୟ ଛୁଇଁଲା—ବିକାଶଭାଇଙ୍କି ଆଉ ଗୋପଭାଇଙ୍କ ସମ୍ବନ୍ଧରେ କିଛି ପଚାରିଲି ନାହିଁ । ପରେ ବୋଉଙ୍କଠାରୁ କଥା ଛଳରେ ଖବର ନେଇ ଜାଣିଲି ଗୋପଭାଇ କଟକରେ ବ୍ୟବସାୟ କରୁଛନ୍ତି । ବାହାହୋଇ ସାରିଲେଣି । ସପରିବାରରେ ଏଇଲାଗେ କଟକରେ ଅଛନ୍ତି ।



ସଞ୍ଜ ଖସି ନଇଁ ପଡ଼ିଲାଣି । ଚଢ଼େଇ ଗୁଡ଼ାକର କେଁକା ରାବ କାନ ଅତଡ଼ା ପକାଉଥାଏ । ଘରେ ବସି ଅମରକୁ କ୍ଷୀର ପିଆଉଚି, ବୋଉ ଆସି କହିଲେ, ପୁନି ବାପାଙ୍କ ପାଇଁ କପେ ଚା' କରି ନେଇଯା—ତଳ ଘରେ ଅଛନ୍ତି । ଅମରକୁ ବୋଉ କଡ଼ରେ ଛାଡ଼ି ଗଲି ଚା' କରିବାକୁ । ଘଡ଼ିକ ପରେ ଚା' କରି ବାପାଙ୍କ କପକ ନେଇ ତଳ ଘରକୁ ଗଲି । ବାପା ଖବରକାଗଜ ପଢ଼ୁଥିଲେ । ମୁଁ ଚା' ନେଇ ତାଙ୍କ କଡ଼ରେ ଥୋଇଲି । ସେ ଖବରକାଗଜ ଛାଡ଼ି ଚା' ପିଇଲେ । ପିଇସାରି କଣ ଦେଖିଲେ କେଜାଣି ମୋତେ ପଚାରିଲେ, ପୁନି ତୋ ଦେହ କାହିଁକି ଦିନକୁ ଦିନ ଝଡ଼ି ଯାଉଚି, ଦେହ କଣ ହେଉଚି କି ? କହିଲି, ନାଁ ବାପା ମୁଁ ତ ବେଶ୍ ଭଲରେ ଅଛି । ବାପା ହସିଲେ, କହିଲେ ପାଗଳୀ ମୋତେ ଲୁଚାଉଛୁ । ମୁଁ ଜାଣେରେ ଜାଣେ ତୋର ନିଶ୍ଚେ ଘର କଥା ମନେ ପଡ଼ୁଚି । ସତ କହ, ତୋର ଯଦି ଘରକୁ ଯିବାକୁ ଇଚ୍ଛା ଅଛି, ମୁଁ ନିଜେ ନେଇ ଛାଡ଼ିଦେଇ ଆସିବି । ବାପାଙ୍କ କଥା ଶୁଣି କହିଲି, ନା ବାପା ମୋର ଘରକୁ ଯିବାକୁ ଇଚ୍ଛା ନାହିଁ । ବଳେ ବଳେ ଆପଣ ମୋତେ ତଡ଼ି ଦେବେତ ଚାଲିଯିବି । ମୁଁ ବା ଆପଣଙ୍କର କିଏ ? ଏତେଦିନ ଆପଣ ମୋତେ ଝିଅ ପରି ପରି ପାଳିଲେ—ଆଉ କଣ ସବୁଦିନେ ରଖି ଥାଆନ୍ତେ—ସତ କୁହନ୍ତୁ ବାପା, ଆପଣ ଯଦି କହିବେ ମୁଁ ଏଇଲଗେ ଚାଲିଯିବି । ଆଖିରୁ ମୋର ଲୁହ ଝରି ପଡ଼ିଲା । ବାପା ମୋ ଆଖିରେ ଲୁହ ଦେଖି କୋଳକୁ ଟାଣି ନେଇ କହିଲେ, ପାଗଳୀ ଝିଅଟା ତୁ—ତୋତେ ମୁଁ କଣ କହିଲି ତୁ କାନ୍ଦୁଚୁ । ତାଙ୍କ ଲୁଗା କାନିରେ ମୋ ଆଖିରୁ ଲୁହ ପୋଛି ଦେଲେ । କହିଲେ, ପୁନି ତୋତେ ଦେଖିଲା ଦିନୁ ମୁଁ କଳ୍ପନା କଥା ପାସୋରି ପକାଇଚି—କିନ୍ତୁ ବେଳେବେଳେ ତୋର

ଏଇ ଶୁଖିଲା ମୁହଁ ଦେଖିଲେ ମୋ ହୃଦୟରେ କିଏ ଆଘାତ କରେ । ଉପରୁ ବୋଉ ଡାକଲେ, ପୁନି ପୁଅ କାନ୍ଦୁଛି—ଚଞ୍ଚଳ ଆ । ଆଖିରୁ ଲୁହ ପୋଛି ଉପରକୁ ଆସି ଅମରକୁ କୋଳକୁ ନେଲି ।

କଉଁ ରଜା ଝିଅର ସରଗ ବଗିଚାରେ ଅସୁମାରି ତରା ଫୁଲ ଫୁଟି ଉଠିଲା । ଅନ୍ଧାର ରାତରେ ତରା ଫୁଲର ଜକ ଜକ ଦେହ କେଡ଼େ ସୁନ୍ଦର ମାନୁଥାଏ । ରାସ୍ତାରେ ବିଜୁଳିବତି ଜଳି ଉଠିଲା । ପାଖ ଘର ରେଡ଼ିଓରୁ ସଙ୍ଗୀତ ମୂର୍ଚ୍ଛନା ଭାସି ଆସୁଥାଏ ।

ବାପାଙ୍କ କଥାରୁ ଆସି ମନଟା ମୋର କେଉଁଥିରେ ଲାଗୁ ନଥାଏ । ଅମରକୁ କୋଳରେ ଧରି ଘରେ ବସିଥାଏ । ଏତକବେଳେ କୁଆଡ଼େ ଥିଲେ ବିକାଶଭାଇ ଆସି ପହଞ୍ଚିଲେ—ସାଥୀରେ ତାଙ୍କର ଗୋଟିଏ ସୁନ୍ଦରୀ ଯୁବତୀ । ଯୁବତୀଟି ମୋତେ ନମସ୍କାର କଲେ । ତାଙ୍କୁ ଚିହ୍ନି ନ ପାରି ମୁଁ ବିକାଶଭାଇଙ୍କ ଆଡ଼କୁ ଅନାଇଲି । ସେ କହିଲେ, ଚିହ୍ନି ପାରୁନୁ—ମୋର ବନ୍ଧୁ ଗୋପବାବୁଙ୍କ ସ୍ତ୍ରୀ—ହେମାଙ୍ଗିନୀ ପରା ? ମୁଁ ପ୍ରତିନମସ୍କାର ଜଣାଇ ହସି ହସି କହିଲି, ଚିହ୍ନିପାରି ନଥିଲି ଭଉଣୀ, କ୍ଷମା ଦେବ । ସେ ହସିଲେ । ତାଙ୍କୁ ବସିବାକୁ କହିଲି । ସେ ମୋ କୋଳରୁ ଅମରକୁ ଟାଣିଲେ—ଅମର ଅଚିହ୍ନା ବାରିଲା ନାହିଁ । ହସି ହସି ତାଙ୍କ କୋଳକୁ ଡେଇଁ ପଡ଼ିଲା । ହେମାଙ୍ଗିନୀ ତାକୁ ଆଦର କରି କୋଳକୁ ନେଇ କହିଲେ, ଭାରି ସୁନ୍ଦର ପୁଅଟିଏ ଭଉଣୀ—ଏଟିକି ମତେ ଦେଇ ଦିଅନ୍ତୁ । ମୁଁ ହସି ହସି କହିଲି, ତାରି ପାଇଁ ତ ଭଉଣୀ ଜୀବନଟା ଅଛି—ତାକୁ ଦେଲେ ବଞ୍ଚିବି କିପରି ? ହେମାଙ୍ଗିନୀ ହସିଲେ । କହିଲେ, ହଁ ଭଉଣୀ ଏ ଜିନିଷଟି ନାରୀର ଅତି ଆପଣାର —ଆକୁ କିଏ ଛାଡ଼ିପାରେ ବିକାଶଭାଇ କହିଲେ, ତୁହେଁ ବସି ଗପକର, ମୁଁ ଯାଉଚି—ତଳେ ଗୋପବାବୁ ଏକଲା ବସିଥିବେ ।

ଦୁହିଁଙ୍କ ମଧ୍ୟରେ କେତେ ଗପ ପଡ଼ିଲା । ପଚାରିଲି, ବାବୁଟି ତମର କେମିତିକା ଲୋକ ? ତମକୁ ଆଦର ସୁଆଗ କରନ୍ତି ନାଁ । ହେମାଙ୍ଗିନୀ ହସିଲେ, କହିଲେ ବାବୁଟି ଆମର ଭାରି ଖେଆଲ ମେଜାଜର ଲୋକ; କିନ୍ତୁ ମୋତେ ଭାରି ଭଲ ପାଆନ୍ତି । ଦଣ୍ଡେ ନ ଦେଖିଲେ ବଣା ହୁଅନ୍ତି । କୁହନ୍ତି ହେମ ! ତୋତେ ନ ଦେଖିଲେ ମୋ ମନଟା କିଛି ଭଲ ଲାଗେନା । ମନର ଭାବନା ମୋର ଛପି ଛପି ଦଉଡ଼ିଲା ପଛକୁ । ଗୋପଭାଇ ଏମିତି ମୋତେ ଦିନେ କହୁଥିଲେ । ମୁଁ ଭୁଲିଥିଲି ତାଙ୍କର କଅଁଳ ମଧୁର କଥାରେ ନିଜକୁ । କିନ୍ତୁ କାହିଁ କେତେ ଦୂରରେ ଆଜ ଗୋଟାଇ— ଅଭି ଅତୀତର ଅଲୋଡ଼ା ସ୍ମୃତିଗୁଡ଼ାକ ଭିତରେ ପଡ଼ିଚି ମୁଁ ।

ଅଧଘଣ୍ଟା ପରେ ସେ ଉଠିଲେ । କହିଲେ, ପ୍ରକାଶବାବୁ ଅନେକ କରି କହିଲେ ବୋଲି ଆସିଲି ଭଉଣୀ—ନଇଲେ ଗୋପବାବୁ ଯେଉଁ ଲୋକ କୁଆଡ଼କୁ ଯିବାକୁ କହିଲେ ନେବେ ନାହିଁ । ଖାଲି ସେଇ ଘରେ ବସିଥାଏ । ବେଳେ ବେଳେ ଭାରି ବିରକ୍ତ ଲଗେ । ଚିଡ଼ିଲେ ମୋ ମନ ଭୁଲାଇବାକୁ ସିନେମା ଦେଖାଇବାକୁ ନେଇଯାନ୍ତି—ନଚେତ୍ ନାହିଁ । ପ୍ରକାଶଭାଇ ଆସି ଡାକିଲେ, ଆସ ହେମାଙ୍ଗିନୀ ଗୋପବାବୁ ଯିବାକୁ ତରବର ହେଲେଣି । ହେମାଙ୍ଗିନୀ ତଳକୁ ଗଡ଼ିଲେ । କହିଲେ, ଆମ ଘରକୁ କେବେ ଗଲେ ମନ ଖୋଲି କଥାବାର୍ତ୍ତା ହେବା; ଆଜି ଯାଉଚି ଭଉଣୀ ।

ଅମରକୁ କୋଳରେ ଧରି ହେମାଙ୍ଗିନୀ ତଳେ ପହଞ୍ଚିଲେ, ମୁଁ ଉପରୁ ଅନାଇଥାଏ । ଗୋପଭାଇ ହସି ହସି ଆସି ଅମରକୁ ନେବାକୁ ହାତ ବଢ଼ାଇଲେ । ଅମର ଫିକ କରି ହସି ହସି ଡେଇଁ ପଡ଼ିଲା । ସତେ ଯେପରି ଗୋପବାବୁଙ୍କ କୋଳରେ ସେ ଆଜି ଦୁନିଆ ପାଇକରି ଖୁସି । ହେମାଙ୍ଗିନୀ ପଚାରିଲେ, ସେ କିଏ ? ଅମର କୁଲୁ କୁଲୁ ହୋଇ କହିଲା, ବା ବା । ସମସ୍ତେ ହସି ଉଠିଲେ, କିନ୍ତୁ ହସି ପାରିଲି ନାହିଁ ମୁଁ, ଆଖିରେ ମୋର ଲୁହ ପୂରି ଉଠିଲା । ମନେ ମନେ କହୁଥାଏ, ଅମର ତମକୁ ବାପା ବୋଲି ଚିହ୍ନି ପାରିଲାଣି—ତମେ ତାକୁ ପୁଅ ବୋଲି ଚିହ୍ନି ପାରୁନା ଗୋପଭାଇ ! ଗୋପଭାଇ ହସି ହସି ଅମର ଗାଲରେ ଚୁମା ଦେଲେ । ତାପରେ ପ୍ରକାଶଭାଇଙ୍କ କୋଳରେ ତାକୁ ଛାଡ଼ି ଦୁହେଁ ରେକ୍‌ସାରେ ଉଠିଲେ ।

ସେଇ ଆଡ଼କୁ ଅନାଇଥାଏ । ଭାବନାର ଗଛ ଗହଳି ସେପଟରେ ଲୁଚିଗଲେ ଗୋପଭାଇ, ହେମାଙ୍ଗିନୀ, କିନ୍ତୁ ଭାବନାର ଗଛ ଗହଳି ଏପଟରେ ଲୁଚି ପାରିଲି ନାହିଁ ମୁଁ । ମନଟା ମୋର ସାଥୀହରା କପୋତ ପରି କାନ୍ଦି ଉଠିଲା । ଗୋପଭାଇ ହେମକୁ ପାଇ ସବୁ ଭୁଲି ଯାଇଛନ୍ତି କିନ୍ତୁ ମୁଁ······ପାଗଳ ଭାବନା ଦଉଡ଼ିଲା ଆଗକୁ ।

ହୃଦୟରେ ପ୍ରତାରଣାର ନିଆଁ—ମନରେ ଚିଆଁ । ସାରା ଶରୀର ଜଳି ପୋଡ଼ି ଉଠିଲା । ବିଛଣାକୁ ଫେରି ଆସି ମୁଁ ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦି ଉଠିଲି । କେତେବେଳ ଯାଏ ତକିଆରେ ମୁହଁ ମାଡ଼ି କାନ୍ଦୁଚି ଜାଣି ନାହିଁ । ହଠାତ୍ ପ୍ରକାଶଭାଇ ଆସି ଡାକିଲେ ପୁନି ! ପୁନି ! ବିଛଣାରୁ ଉଠି ବସିଲି । ସେ ମୋ ଆଖିରେ ଲୁହ ଦେଖି ଚମକି ପଡ଼ି କହିଲେ, କାନ୍ଦୁଚୁ କାହିଁକି ? ମୋ ପାଖରେ ଆସି ବସିଲେ । କହିଲି, ନା ପ୍ରକାଶଭାଇ କିଛି ହୋଇନି—ଦେହ ଭଲ ଲାଗୁନି,

ମୁଣ୍ଡଟା ବନ୍ଧୁଚି । ସେ କହିଲେ, ପୁନ ମୁଁ ପଚାରେ ତୋର ଭାଇ—ମୋତେ ମିଛ କହି ଠକୁଚୁ । ସତ କହ ତୋର କଣ ହୋଇଚି । ମୋ ଆଖିରୁ ଲୁହ ପୋଛିବାକୁ ଲାଗିଲେ ।

ମିଛ କହିବାକୁ ଆଉ ତୁଣ୍ଡ ଲେଉଟିଲା ନାହିଁ । କହିଲି, ବିକାଶଭାଇ, ବାପା, ବୋଉ, ତୁମ ନିକଟରେ ମୁଁ ବଡ଼ ଅପରାଧିନୀ । ସତ କୁହ ମୋତେ କ୍ଷମା କରିବ ? ହଁ ବୋଲି କହି ସେ ମୋତେ ଆଉଁସି ପ୍ରବୋଧନା ବାଣୀ ଶୁଣାଇଲେ । ମନର ସବୁ ଦୁର୍ବଳତା ଉଭାଇଗଲା ଦୂରକୁ । ଅତୀତର ଗୋଟି ଗୋଟି ହୋଇ ଯେତେ ଘଟଣା—ଗୋପଭାଇଙ୍କ କଥା—କାହିଁକି ଘର ଛାଡ଼ିଲି—ସବୁ ଗୋଟି ଗୋଟି ହୋଇ ତାଙ୍କର ଆଗରେ କହିଗଲି । ମୋର ଦୁଃଖ—ଦରଦୀଭରା କାହାଣୀଗୁଡ଼ା ବିକାଶଭାଇଙ୍କ ହୃଦୟକୁ ଥରାଇ ଦେଲା । ତାଙ୍କ ଆଖିରେ ଲୁହ ପୂରି ଉଠିଲା । ସେ କହିଲେ, ଭୁଲ କଲୁ ଭଉଣୀ ! ବଡ଼ଲୋକ ପଛରେ ଦଉଡ଼ି—ଅତି ଆପଣାର ମଧୁଭାଇକୁ ଠକିଲୁ । ତାର ଅଭିଶାପ ତୋତେ ପଡ଼ିଚି । ଗୋପବାବୁ ସିନା ବାହା ହୋଇ ତୋତେ ଭୁଲି ଯାଇଛନ୍ତି, କିନ୍ତୁ ସେ କେବେ ଭୁଲି ନଥିବ । କହିଲି, ଭାଇ ଟିକିଏ ଭୁଲ ହେଲା ନାହିଁ ତ—ହେଲା ମସ୍ତବଡ଼ ଭୁଲ । ଏ ଭୁଲ ଆଉ ଏ ଜୀବନରେ ସୁଧାର ହେବ ନାହିଁ । ସେ ହସି ହସି ମୋର ମଉଳା ମୁହଁରୁ ଗଡ଼ି ଆସୁଥିବା ଲୁହ ଦୁଇ ବିନ୍ଦୁ ପୋଛି ଦେଉ ଦେଉ କହିଲେ, ହବ ଭଉଣୀ—ସବୁ ହବ । ସମୟର ସୁଅ ପୁଣି ବଦଳିବ—ମେଘ ମଉଳା ଆକାଶରେ ପୁଣି ପୁନେଇଁ ଜହ୍ନ ହସି ଉଠିବ ।



ଏ କଥା ଆଉ ଛପି ରହିଲା ନାହିଁ । ବାପା, ବୋଉଙ୍କ କାନକୁ ଗଲା । କିନ୍ତୁ ସବୁ ଜାଣି ଶୁଣି ବି ସେମାନେ ମୋତେ ଘୃଣା ଚକ୍ଷୁରେ ଦେଖିଲେ ନାହିଁ । ବରଂ ଆହୁରି ଆପଣାର ପରି ଆଦର କଲେ । କିନ୍ତୁ ମନଟା ମୋର ପାପ ଛୁଇଁ—ବାପା, ବୋଉଙ୍କଠାରୁ ସବୁବେଳେ ଦୂରେଇ ଦୂରେଇ ରହେ । କୁଳଟା ମୁଁ—ଘର ଦୁଆର ମା, ଭାଇ ସବୁ ଗ୍ଲାନିତ କାହା ପାଇଁ ? ମନରେ ପଶେ ଏଇ ଭାବନା—ଆଖିରୁ ଝରେ ଲୁହ ।

ଦଶ ଦିନ ପରେ । ଦି' ପହରର ଖରା ତେଜ ମଉଳି ଗଲାଣି । ଘରେ ବସି ଅମର ପାଇଁ ଗୋଟାଏ ସ୍ୱିଟର ବୁଣୁଛି—ମନରେ ଏଣୁ ତେଣୁ ଭାବନା । ହଠାତ୍ ବିକାଶଭାଇ ସେଇ ଘରକୁ ପଶି ଆସିଲେ—ସାଥିରେ ଗୋପଭାଇ । ଗୋପଭାଇଙ୍କୁ ଦେଖି ଛପିଲା କୋହ ମୋ ମନରେ ଉଜାଣି ଉଠିଲା । ଆଖିରୁ ଲୁହ ଧାର ଧାର ହୋଇ ଗଡ଼ି ପଡ଼ିଲା । ତାଙ୍କର ଚରଣ ତଳେ ଯାଇ ମୁଣ୍ଡିଆ ମାରି କାନ୍ଦିଉଠିଲି । ଆଖିରୁ ତାଙ୍କର ଲୁହ ଝର ଝର ହୋଇ ଝରି ପଡ଼ୁଥାଏ । ସେ କହିଲେ, ପୂନି ମୋତେ କ୍ଷମାକର । କହିଲି, କ୍ଷମା ଦେବାର ପାତ୍ର ମୁଁ ନୁହେଁ ଗୋପଭାଇ ! ଦୁହେଁ ଦୁହିଁଙ୍କ ଧରି କାନ୍ଦି ଉଠିଲୁ । ବିକାଶଭାଇ କେତେ ବୁଝାଇ ଶାନ୍ତ କଲେ । ସେ କହିଲେ, ପୂନି ମୋତେ ଯଦି କ୍ଷମା ଦେଇଚୁ—ତେବେ ଚାଲ ମୋ ବସାକୁ । ହେମ ସାଥିରେ ରହିବୁ—ଦି'ଭଉଣୀ ପରି । ସେ ତୋତେ ପର ବୋଲି ଭାବିବ ନାହିଁ । କହିଲି, ନା ଗୋପଭାଇ ତା ହୋଇପାରିବ ନାହିଁ—ତମେ ଯାଅ । ମୁଁ କାହିଁକି ଯାଇ ତମ ସୁଖ ସଂସାରରେ କାଳ ହେବି । ସିଏନା—ମୁଁ ଏଇଠି ଖୁବ୍ ସୁଖରେ ଅଛି । ସେ

ଯେତେ ବୁଝାଇଲେ କବୁ ମୁଁ ଜିଦ୍ ଧରି ବସିଲି ଯିବି ନାହିଁ । ଶେଷକୁ ବିକାଶଭାଇ, ବୋଉ, ବାପା ଆସି କହିଲେ, ଯା ପୁନି — ଆପତ୍ତି କରନା । ଆମେ ଅଛୁ — ତୋର କିଛି • ଅସୁବିଧା ହେବନି — ବରଂ ଏହାଠୁ ଭଲ ସୁଖରେ ସ୍ୱାମୀ ସହ ଘର କରି ରହିବୁ ।

ସେହିଦିନ ସଞ୍ଜ ଗଡ଼ିଲା ବେଳକୁ ବାପା, ବୋଉ, ବିକାଶ ଭାଇଙ୍କଠାରୁ ବିଦାୟ ନେଇ ଗୋଡ଼ଧୂଳି ମୁଣ୍ଡରେ ମାରି ଘୋଡ଼ାଗାଡ଼ିରେ ବସିଲି । ଆଗରୁ ଗୋପଭାଇ ଅମରକୁ ଧରି ବସିଥାନ୍ତି । ଆଖିରୁ ମୋର ଲୁହ ଅପ୍ ଅପ୍ ହୋଇ ପଡ଼ୁଥାଏ । ବାପା ବୁଝାଇ କହିଲେ, ଗୋପବାବୁ କଲ୍ପନା ମଲା ପରେ ଏ ହୋଇଥିଲା ଆମର କଲ୍ପନା । ଏହାରି ମୁହଁ ଚାହିଁ ଆମେ କନ୍ୟା ଦୁଃଖ ଭୁଲିଥିଲୁ । ଏ ମୋର ଝିଅ । ପରଘରର ଝିଅ ବୋଲି ଆଜି ଭାବିବି ନାହିଁ । ତା'ର ନାହିଁ କଣ ? ଏ ଘର ଦୁଆର ସବୁ ତାହାର — ବିକାଶ ପରି ଭାଇ ତାହାର । ତା ମନରେ ସୁଖ ଶାନ୍ତି ଆଣିବା ପାଇଁ ଚେଷ୍ଟା କରିବ । ହେମକୁ ବୁଝାଇ କହିବ ସେ ଯେପରି ବାଦ ନ କରେ । ବାପାଙ୍କ ଆଖିରୁ ଲୁହ ଗଡ଼ି ପଡ଼ିଲା । ବିକାଶଭାଇ ଘୋଡ଼ାଗାଡ଼ି ବାଲାକୁ ସିଧା ଉଗରପଡ଼ା ଗାଡ଼ି ଚଲାଇବାକୁ ନିର୍ଦ୍ଦେଶ ଦେଲେ । ଘୋଡ଼ାଗାଡ଼ି ଆଗକୁ ଚାଲିଲା । ବିକାଶଭାଇ କିଛି ବାଟ ଆସି ବିଦାୟ ନେଲେ । ତାଙ୍କ ହାତଧରି କହିଲି, ବିକାଶଭାଇ ଭୁଲି ଯିବନି । ସେ କହିଲେ ପୁନି ଭୁଲି କି କିଏ ପାରେ—ଯା, ମୁଁ କାଲି ତୋ କତିକି ଯିବି ଯେ ।

ଘୋଡ଼ାଗାଡ଼ି ଆଗକୁ ଚାଲିଚି । ଉପରେ ନେଳିଆ ଆକାଶରେ ଚାନ୍ଦ ହସୁଚି । ପାଖରେ ଗୋପଭାଇ—ହଜିଲା ଇପ୍‌ସିତ ଧନ ପୁଣି ଏତେଦିନେ ଫେରି ପାଇଚି । କିନ୍ତୁ କାହିଁ ଆଜି କାହିଁକି ହୃଦୟରେ ମନଉଚ୍ଛୁଳା ଜୁଆର ଆସୁ ନାହିଁ ! ଦୁଇ ବରଷ ତଳର ଏଇ ଗୋପଭାଇଙ୍କ ସାଥିରେ ଦିନ ଗୁଡ଼ିକ ଆଖିଆଗରେ ନାଚି ଉଠୁଥାଏ । ଭାବନା ଭିତରେ ଦେଇ କେତେବେଳେ ଗାଡ଼ି ଆସି ଉଗରପଡ଼ାରେ ପହଞ୍ଚିଲାଣି—ଜାଣେ ନା । ଗୋପଭାଇ କହିଲେ, ପୁନି ଓହ୍ଲା । ମୋ ହାତଧରି ସେ ତଳକୁ ଓହ୍ଲାଇ ଦେଲେ । ଅମର ନିଦରେ ଶୋଇ ପଡ଼ିଥାଏ । ଘୋଡ଼ାଗାଡ଼ିବାଲାକୁ ଦାମ ଦେଲେ । ସେ ସଲାମ କରି ଗାଡ଼ି ପଛକୁ ବୁଲାଇଲା ।

ସୁନ୍ଦର ଦୋ' ମହଲା କୋଠା । ତା'ରି ଭିତରକୁ ପଶିଲୁ । ଗୋପଭାଇ ଆଗରେ—ମୁଁ ପଛରେ । ଘର ଭିତରକୁ ପଶି ଗୋପଭାଇ ଦାମ ଦାମ ବୋଲି ଡାକିଲେ । ବାର ବରଷର ଗୋଟିଏ ଟୋକା ଆଖି କଚି ଆସି ହାଜର ହେଲା । ଗୋପଭାଇ କହିଲେ, ଦାମ ମା'ଙ୍କୁ ନେଇଯା ଉପରେ ମୋ ଘରକୁ । ଆଉ ଖଟ ଉପରଟା ଝାଡ଼ିଦେବୁ ।

ମୋତେ କହିଲେ, ପୁନି ଯା ଅମରକୁ ଖଟ ଉପରେ ଶୋଇଦେବୁ । ଦୋତାଲ ଉପରକୁ ଆସିଲି । ଦାମ ମୋତେ ଚହିଁ ନ ପାରି କଣ ଭାବୁଥାଏ । ଗୋପଭାଇଙ୍କ ଘରେ ଛାଡ଼ି ସେ ଖଟ ଉପରି ବିଛଣା ଝାଡ଼ି ଦେଲି । ମୁଁ ଅମରକୁ ଶୋଇ ଦେଇ କହିଲି, ଦାମ ଯା ବାବୁଙ୍କ ଖବର ବୁଝିବୁ । ଦାମ ଚାଲିଗଲା ।

ମନରେ ଭାବନା ପଶିଲି ହେମାଙ୍ଗିନୀ କାହାନ୍ତି । ଭାବୁ ଭାବୁ ମୋତେ ନିଦ ମାଡ଼ିଲା । ଅମର କଡରେ ଶୋଇ ପଡ଼ିଲି । ଦୁ'ଘଣ୍ଟା ପରେ କା ହାତର ନରମ ପରଶରେ ନିଦଟା ଚୂଉଁ କରି ଭାଙ୍ଗିଗଲା । ଉଠି ବସି ଅନାଇଲି । ଗୋପଭାଇ କହୁଚନ୍ତି, ପୁନି ଖାଇବୁ ଉଠ । ନିଦ ମଳ ମଳ ଆଖିରେ କହିଲି, ଗୋପଭାଇ ମୋତେ ଭୋକ ନାହିଁ । ମୁଁ ଶୋଉଚି—କାଲି ସକାଳେ ଉଠି ଖାଇବି । ପଚାରିଲେ, ତମେ ଖାଇଲଣି । ସେ କହିଲେ, ତୁ ଖାଉନାହୁଁ—ମୁଁ ଖାଇବି କପରି ? କଣ କହିବି—ବାଧ୍ୟ ହୋଇ ଉଠିଲି । ଦାମ ଆସି ଭାତ ଦେଇଗଲା । ଗୋପଭାଇ ଖାଇଲେ । ଗୋପଭାଇ ଖାଇ ଆସିଲା ପରେ ମୁଁ ଦୁ'ଟା ଆଉଁ ସାଉଁ ଖାଇ ଉଠିଲି । ପଚାରିଲେ, ହେମାଙ୍ଗିନୀ କାହାନ୍ତି କି ? ଗୋପଭାଇ ହସିଲେ । କହିଲେ, ସେ ଦୁ'ଦିନ ହେଲା ତାଙ୍କ ଘରକୁ ଯାଇଚି—ଫେରିବ ମାସକ ପରେ । ଆଉ କିଛି ନ ପଚାରି ଉପରକୁ ଆସିଲି । ଦେହଟା ଭଲ ଲାଗୁ ନଥାଏ । ଅମର କଡରେ ପୁଣି ଆସି ଶୋଇ ପଡ଼ିଲି । ବିଛଣା ଧରୁ ଧରୁ କୁଆଡ଼େ ନିଦ ଲାଗି ଆସିଲା ।

ରାତି ଦଶଟା ବେଳକୁ ନିଦଟା ଭାଙ୍ଗିଗଲା । ଅନାଇଲି, ଘରେ ବତୀଟା ସେମିତି ଜଳୁଚି । ଗୋପଭାଇ ଖଟତଳେ ଖଣ୍ଡେ ସପ ପାରି ଶୋଇଚନ୍ତି । ଖଟ ଉପରୁ ଓହ୍ଲାଇ ପଡ଼ିଲି । ମୁଁ ଶୋଇବି ଖଟ ଉପରେ ସେ ଶୋଇବେ ତଳେ ନାଁ ନାଁ ଏହା ହେବ ନାହିଁ । ଗୋପଭାଇଙ୍କ ହାତ ଧରି ହଲାଇଲି । ସେ ନିଦ ମଳ ମଳ ଆଖିରେ ଉଠି ପଚାରିଲେ, ପୁନି କଣ ? କହିଲି, ତଳେ ଶୋଇଚନ୍ତି କାହିଁକି ? ଖଟ ଉପରକୁ ଯାଉନ୍ତୁ । କିଛି କହିଲେ ନାହିଁ । ଘଡ଼ିଏ କାଳ ମୋ ମୁହଁକୁ ଅନାଇଲେ । ତାଙ୍କ ଚାହାଣିରେ କି ମାଦକତା ଥିଲା କେଜାଣି ମୁଁ ତାଙ୍କ ମୁହଁକୁ ଭଲ କରି ଅନାଇ ପାରିଲି ନାହିଁ । ତଳକୁ ମୁହଁ ପୋତି ଛିଡ଼ା ହେଲି । ସେ ଉଠି ଖଟ ଉପରେ ବସିଲେ । ମୋ ହାତ ଧରି ପାଖକୁ ଟାଣି ନେଲେ । ମୋତେ କୋଳରେ ପୂରେଇ ଭିଡ଼ି ଧରି ଚୁମ୍ବନ କରିବାକୁ ଲାଗିଲେ । ଦେହ ମନ ମୋର ପୁଲକି ଉଠିଲା—ତାଙ୍କର ପଦତଳେ ନିଜକୁ ଅଜାଡ଼ି ଦେଲି ।

କେତେବେଳେ ଯାକ କେତେ ଅତୀତର କଥା ପଡ଼ିଲା । ଘର ଛାଡ଼ିବା ଦିନୁ ସବୁ କଥା ତାଙ୍କୁ କହିଲି । ଆଖିରେ ତାଙ୍କର ଲୁହ ପୁରି ଉଠିଲା । କହିଲେ, ପୁନି ଅତୀତକୁ

ଭୁଲିଯା—ପୁଣି ନୂଆ କରି ଆମ ଜୀବନକୁ ଗଢ଼ିବା । ପୁଣି ଆମର ନୂଆ ପଥରେ ଫୁଟି ଉଠିବ ରାଶି ରାଶି ଯୁଇ, ହେନା, କାମିନୀ, ମାଳତୀ । ଏହାର ଗନ୍ଧକୁ ଠୁଳ କରି ଅଧିନରେ ମଳୟ ବହିବ ଦୁଇଟି ଅତୃପ୍ତ ପ୍ରାଣର ତୃଷ୍ଣି ପାଇଁ—ଜୀବନ ହେବ ସରସ ଓ ସୁନ୍ଦର । ତାଙ୍କର କଥା ମୋତେ ଭୁଲାଇ ଦେଲା । ତାଙ୍କ କୋଳରେ ମୋତେ ଜୀବନର ସ୍ୱର୍ଗ ସୁଖ ଅନୁଭବ କଲା ପରି ଜଣାଗଲା ।

ନିଦ କିଏ ଭାଙ୍ଗିବ ନାହିଁକି ଆଜି ? ଗୋପଭାଇଙ୍କ ଡାକରେ ଉଠି ବସି ଅନାଇଲି, ବେଳ ଆସି ଆଠଟା ବାଜିଲାଣି । ଅମର ଉଠି ଘରେ ଖେଳୁଚି । କହିଲି, ମୋତେ ଡାକ ଦେଲେନି ଏତେବେଳ ହେଲାଣି । ସେ କହିଲେ,ଅନେକ ଡେରିରେ ଶୋଇଥିଲ ବୋଲି ଡାକିଲି ନାହିଁ । ମୁଁ ଯାଉଛି ଗୋଟାଏ କାମରେ—ଫେରୁ ଫେରୁ ଘଣ୍ଟା ବାଜିଯିବ । ଦାମ ଅଛି—କିଛି ଅସୁବିଧା ହେବ ନାହିଁ ତ ? କହିଲି, ନାହିଁ ତମେ ଯାଅ—ଦାମ ସାରି ଚଞ୍ଚଳ ଆସିବ ।

ନିତ୍ୟକର୍ମ ଓ ଗାଧୁଆ ସାରିଥିଲେ । ଫୁଲ୍‌ପ୍ୟାଣ୍ଟ ଓ ସାଦା ଫୁଲ ଶାର୍ଟଟା ପିନ୍ଧି ଯୋତାଟା ଗୋଡ଼ରେ ଗଳାଇଲେ । କହିଲି, ଚଞ୍ଚଳ ଆସିବେ—ଡେରି କରିବେ ନାହିଁ । ସେ ହସିଲେ । ମୋତେ ପାଖକୁ ଟାଣିନେଇ ଗୋଟିଏ ଚୁମ୍ବନ ଦେଇ ବିଦାୟ ନେଲେ । ମୁଁ ଗାଧୁଆ ସାରି ଅମରକୁ ଦୁଧ ଖୁଆଇଲି ।

ଗାଧୁଆ ବେଳେ ରୋଷେଇବାସ ସାରି ଦାମକୁ କହିଲି, ଦାମ ! ବାବୁ ତ ଆଜି ଡେରିରେ ଆସିବେ— ତୁ ଖାଇବୁ ଯା । ଦାମ କହିଲା, ଆପଣ ଖାଇବେ ନାହିଁ ? ମୁଁ କହିଲି, ନାଁ,ବାବୁ ନଆସିଲେ ମୁଁ ଖାଇବି ନାହିଁ । ଦାମ ଆପତ୍ତି ତୋଳି କହିଲା,କେତେବେଳେ ଯାଏ ବାବୁଙ୍କୁ ଅପେକ୍ଷା କରିବେ—ଦି'ଟା ଖାଇ ଦିଅନ୍ତୁ ମା । ମୁଁ ମନା କଲି । ବାଧ ହୋଇ ସେ ଆଗ ଖାଇଲା । ଦାମକୁ ମୁଁ ଭାତ ତରକାରି ସବୁ ଚୁଲ୍ଲୀ ଉପରେ ଘୋଡ଼ାଇ ରଖିବାକୁ କହି ଉପରେ ଆସି ଖଟ ଉପରେ ଶୋଇଲି । କେତେ ଆଉର ଭାବନା ମନ ଉପରେ ଆସୁଥାଏ—ଯାଉଥାଏ । ବୋଉ କଥା, ଟୁନି କଥା ମନେ ପଡ଼ିଲା । ବୋଉ ଏହିକ୍ଷଣି କଣ କରୁଥିବ । ଟୁନି କେଡ଼ୁଟିଏ ହେଲଣି । ମନ ହେଉଥାଏ ଥରେ ଟୁନିକୁ ଦେଖି ଆସିବାକୁ; କିନ୍ତୁ ପରକ୍ଷଣରେ ଭୟ ହେଉଥାଏ । କେଉଁ ସାହସରେ ଯିବି—ଏ ପୋଡ଼ା ମୁହଁକୁ ବୋଉକୁ ଦେଖାଇବି । ଇଆଡ଼େ ମରିବି ପଛକେ ଆଉ ଗାଁ ଦାଣ୍ଡ ମାଡ଼ିବି ନାହିଁ । ପରକ୍ଷଣରେ ଗୋପଭାଇଙ୍କ କଥା ମନେ ପଡ଼ିଲା । ମୁଁ ଏଠି ଅଛି ବୋଲି ସେ ତ ଜାଣି ନ ଥିବେ । ଯଦି ଜାଣିବେ ତେବେ ଗୋପଭାଇଙ୍କ ଦଶା ହେବ କଣ ? ଭୟରେ ଛାତି ମୋର ଥରି ଉଠିଲା । ଭାବୁ ଭାବୁ ଶୋଇ ପଡ଼ିଲି ।

ନନ୍ଦ ଭାଙ୍ଗିଲା ବେଳକୁ ଗୋପଭାଇ ଘରେ ଆସି କାମିକ ଖୋଲୁଚନ୍ତି । ମୋ ଆଡ଼କୁ ଚାହିଁ ହସି ହସି କହିଲେ, କେତେ ଶୋଉଚ—ରାତି ମଜୁରୀ କଣ ଗ୍ରାଡ଼ ନାହିଁ ? ମୁଁ ତାଙ୍କ ମୁହଁକୁ ଅନାଇ ମୁରୁକି ହସି ମୁହଁ ଧୋଇ ଆସିଲି । ସେ କହିଲେ, ଦେଖ ଏସବୁ କଣ ଆଣିଚି । କାଗଜ ପୁଡ଼ିଆ ଖୋଲି ଦେଖିଲି, ଦୁଇଟା ଶାନ୍ତିପୁରୀ ଶାଢ଼ୀ, ଦୁଇଟା ଶିଲ୍କ ବ୍ଲାଉଜ ଓ ଦୁ'ଟା ସାୟା । ଅମରର ପାଇଁ କେତେ ଆଡ଼ୁ ସାଡ଼ୁ ଖେଳଣା, ପେଣ୍ଟ, ଜାମା, ଯୋତା । କହିଲି, ଏ ସବୁ କାହିଁକି ଆଣିଲେ । ଶାଢ଼ୀ, ବ୍ଲାଉଜ, ସାୟା ମୋର ତ ଅନେକ ଅଛି । ସେ ହସିଲେ,କହିଲେ ସେ ସବୁ ଜନକ ତୋର—ମୋର ସେଥିରେ କଣ ଅଛି । ଆଉ ଗୋଟାଏ ଖୋଲ ଖୋଲି ଦେଖାଇଲେ । ସେଥିରେ ଅଛି ସୁନାକାଚ, ସୁନା ଯ୍ୱାରିଂ ଓ ଗୋଟିଏ ସୁନ୍ଦର ସୁନାର ହାର ।

ଏ ସବୁ ଦେଖି ମୁଁ ଭାରି ଚିଡ଼ି ଉଠିଲି । କହିଲି, ଏ ସବୁ କଣ ହେବ ? ସେ ହସି ହସି କହିଲେ, ତୋ ସୁନ୍ଦର ଦେହକୁ ଏ ସବୁ ବେଶ ମାନିବ ପୁନି—ଅତି ସ୍ନେହରେ କିଣି ଆଣିଚି—ତୁ ନ ପିନ୍ଧିଲେ ମୋ ମନରେ ଭାରି ଦୁଃଖ ହେବ । ମନା କଲି ମୁଁ ସେ ସବୁ ପିନ୍ଧିବି ନାହିଁ । ସେ ଭାରି ଜିଗର କଲେ—ଶେଷକୁ ରାଣ ପକାଇଲେ । ବାଧ୍ୟ ହୋଇ ତାଙ୍କ କଥାରେ ରାଜିହେଲି । ସେ ସୁନା କାଚ, ହାର ଓ ଯ୍ୱାରିଂ ପିନ୍ଧାଇ ଦେଇ କହିଲେ, ପୁନି ଆଜି ଥିଏଟର ଦେଖିଥିବା—ଅନ୍ନପୂର୍ଣ୍ଣାରେ ଭଲ ଖେଳ ଅଛି । କହିଲି, ଆଗେ ଖାଇବେ ଚାଲନ୍ତୁ । ନଖାଇ ମୁହଁଟା ଶୁଖି କଳା କାଠ ପଡ଼ିଗଲଣି । ସେ ଭଲକୁ ଆସିଲେ । ମୁଁ ଖାଇବାକୁ ଜାଗା କରିଦେଲି । ଦାମ ଆସି କହିଲା, ବାବୁ ଆପଣ ଖାଇ ନାହାନ୍ତି ବୋଲି ମା ବି ଏଯାଏ ଖାଇ ନାହାଁନ୍ତି । କହିଲେ, ବାବୁ ଆସନ୍ତୁ—ଖାଇବ । ଗୋପଭାଇ ଭାରି ବ୍ୟସ୍ତ ହେଲେ । କହିଲି, ତୁମେ ଖାଇ ସାରିଲ ପରେ ମୁଁ ଖାଇବି ନାହିଁକି, ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ସେ ଖାଇ ସାରି ଉଠିବା ପରେ ମୁଁ ଆଡ଼ୁ ସାଡ଼ୁ ଦୁଇଟା ଖାଇ ଉପରକୁ ଆସିଲି । ସେତେବେଳକୁ ସାଢ଼େ ଛଅଟା ବାଜିଗଲାଣି । ଗୋପଭାଇ କହିଲେ, ପୁନି ଲୁଗା ପିନ୍ଧ—ଥିଏଟର ସାଢ଼େ ସାତଟାରେ ଆରମ୍ଭ—ଯିବାକୁ ଏଇ ଲାଗେ ଅଧଘଣ୍ଟା ସମୟ ଲାଗିବ—ଚଞ୍ଚଳ କାମ ସାର ।

ସେ ଅମରକୁ ପେଣ୍ଟ, ଜାମା, ଯୋତା ପିନ୍ଧାଇ ଦେଲେ । ମୁଁ ତାଙ୍କର ଆଣିଥିବା ଶାଢ଼ୀ, ବ୍ଲାଉଜ, ସାୟା ପିନ୍ଧିଲି । ମୁଣ୍ଡଟା ଟିକିଏ କୁଣ୍ଡାଇ ବାହାରି ପଡ଼ିଲି । ଗୋପଭାଇ ମୋତେ ଦେଖି ହସି ହସି କହିଲେ, ପୁନି ଆଜି ତୋର ଏଇ ରୂପକୁ ଦେଖିଲେ, କିଏ ନଭୁଲିବ । ସେ ଖଟ ଉପରକୁ ମୋତେ ଟାଣିନେଇ ମୋ ଗାଲରେ ଚୁମ୍ବନ ଦେଲେ । ତା'ପରେ ଯାଇ ତାଙ୍କ ମନଟା ଶାନ୍ତହେଲା । ଦାମ ତଳୁ ଡାକିଲା, ବାବୁ ଘୋଡ଼ାଗାଡ଼ି ଆସିଲାଣି । ଅମରକୁ କୋଳରେ ପୁରେଇ

ଚାଲକୁ ଆସିଲି । ସେ ଦିନ ଅଠେଇଶର ଦେଖି ଫେରୁ ଫେରୁ ରାତି ବାରଟା ବାଜିଲା । କିନ୍ତୁ ମାଉସୀଏ କିନ୍ତୁ ଗୋପଭାଇ ମୋତେ ଶୋଇ ଦେଲେ ନାହିଁ । ଅନିଦ୍ରାରେ ରାତିଟା ପାହିଲା ।

ଇମିତି ସ୍ୱପ୍ନ ପରି ଦିନ ସାତଟା କୁଆଡ଼େ ବିତିଗଲା । ବିକାଶଭାଇ ଆସି ପଚାରିଲେ, ପୁଣି କଣ ଅସୁବିଧା ହେଉଛି ? କହିଲି, ନା ଭାଇ ଅସୁବିଧାରେ ପଡ଼ିନି ନାହିଁ—ତେବେ ଆମ ଘରଟା ବିଶେଷ ସୁଖରେ ନାହିଁ । ସେ ହସିଲେ, କହିଲେ, ପାଗଳୀ ଘର କରି ଜାଣିଲେ ସବୁ ସୁଖ ସବୁ ସୁନ୍ଦର ଆପେ ଆପେ ଆସେ । କେତେ ବୁଝାଇ ଶୁଝାଇ ସେ ଚାଲିଗଲେ ।

ସେଦିନ ସଞ୍ଜବେଳେ ଗୋପଭାଇ ଦିନରୁ କୁଆଡ଼େ ଯାଇଚନ୍ତି ଯେ ଏ ଯାଏ ଦେଖା ନାହାନ୍ତି । ଖଟ ଉପରେ ବିଛଣାଟା ମୁଁ ଝାଡ଼ି ପାରୁଚି । ହଠାତ୍ ତକିଆ ତଳେ ଖଣ୍ଡେ ଚିଠି ଉପରେ ମୋର ନଜର ପଡ଼ିଲା । ଖୋଲି ପଢ଼ିଲି । ଲେଖା ଅଛି ।

ପ୍ରିୟତମ,

ମୁଁ ଏଠି ଶୁଣୁଛି ତମେ ଆଉ ଗୋଟିଏ ସୁନ୍ଦରୀ ଯୁବତୀଟିଏ ଆଣି ଘରେ ରଖିଚ । ଏକଥା କେତେ ଦୂର ସତ୍ୟ ମୁଁ ଜାଣିପାରୁନି । ବାହା ହେବା ଦିନଠାରୁ ଆଜିଯାଏ ମୋତେ କେତେ ସ୍ନେହ କରିଚ—ପାଗଳ ପରି ଦଣ୍ଡେ ନ ଦେଖିଲେ ବଣା ହୋଇଚ । ତେଣୁ ତମଠାରେ ଦିନେ ମୁଁ ଭଲପାଇବା ଭିତରେ ଅବିଶ୍ୱାସର ଗ୍ରାସ୍ଥା ଦେଖିନି । କିନ୍ତୁ ଆଜି ମୋର କାହିଁକି ବିଶ୍ୱାସ ହେଉଚି, ମୋର ଅନିଚ୍ଛା ସତ୍ତ୍ୱେ ତମେ ମୋତେ ବଳେ ବଳେ ଅଣି ବାପ ଘରେ ଛାଡ଼ି ଦେଇ ଯାଇଚ । ବୋଧହୁଏ ମୁଁ ରହିବା ଦ୍ୱାରା ସେଇ ସୁନ୍ଦରୀ ଯୁବତୀକ ଘରକୁ ଆଣିବା ସମ୍ଭବପର ହୋଇ ନଥାନ୍ତା ।

ଏସବୁ କଥା ଶୁଣିଲା ଦିନଠୁ କାଲିଠାରୁ ମୋ ମନରେ ବିଶେଷ ଦୁଃଖ । ବାପା, ବୋଉଙ୍କ ମନର ଅବସ୍ଥା କହିଲେ ନ ସରେ । ମୁଁ ପଅରି ଦିନ କଷ୍ଟକରେ ପହଞ୍ଚିବି । ସତ ସତ ମୁଁ ଯଦି ସେଇ ଯୁବତୀଟିକୁ ଘରେ ଥିବାର ଦେଖେ—ତେବେ ସେଇଠି ବିଷ ଖାଇ ମରିବି । ଆଉ କିଛି ଲେଖି ପାରୁନି । ଇତି । ତମର

ହେମାଙ୍ଗିନୀ

ହେମାଙ୍ଗିନୀର ଚିଠିଟା ପଢ଼ିସାରି ସବୁ ସ୍ୱପ୍ନ ମୋର ସ୍ୱପ୍ନରେ ମିଳାଇଗଲା । ମୁଣ୍ଡଟା ଗୋଳମାଳ ହୋଇଗଲା । ହେମାଙ୍ଗିନୀ ମୋ ପାଇଁ ବିଷ ଖାଇ ମରିବ । ନାଁ ନାଁ

ଏହା କଦାପି ହୋଇ ପାରେନା । ଗୋପଭାଇଙ୍କର ଏ ଅନ୍ୟାୟ । ମୋ ପାଇଁ ନିଜର ସ୍ତ୍ରୀକୁ ସେ ଜାଣି ଜାଣି ମାରିବେ ! ମୁଁ ବା ତାଙ୍କର କିଏ, ସାତପରରେ ପର । ହେମାଙ୍ଗିନୀ—କେତେ ସରଳ ସୁନ୍ଦର ହେମାଙ୍ଗିନୀ । ସେ ଦିନକ ଭିତରେ ମୋତେ ଆପଣାର କରି ପକାଇଥିଲା । ମୁଁ ପୁଣି ଆସି ତାର ସଂସାରରେ ନିଆଁ ଜାଳି ଦେଉଛି । ନା ନା ଏହା ହେବନି । ମୋର ସୁଖ ସଂସାର ଗଢ଼ିବା ଦରକାର ନାହିଁ । ଚିର ହତଭାଗୀ ତ ମୁଁ—ଆଉ ପୁଣି କାହିଁକି ଆଜି ବଡ଼ ଆଶା । ହେମାଙ୍ଗିନୀ ସୁଖରେ ରହୁ—ସେଇ ମୋର ଶାନ୍ତି ।

ଏ ଘର ଦୁଆର, ଗୋପଭାଇଙ୍କ ସ୍ନେହ ମମତା କାଟି ଆଜି ରାତିରେ ମୁଁ ପଳାଇବି—ନଇଲେ ଗତି ନାହିଁ । କାଲି ହେମାଙ୍ଗିନୀ ଆସିବ—ସବୁକଥା ସରିଯିବ । ଝରୁ ଝରୁ ଆଖିରୁ ଝରି ପଡ଼ିଲା ଲୁହ । ଗୋପଭାଇଙ୍କ ଯୋତା ଶବ୍ଦ ଶୁଭିଲା । ଆଖିରୁ ଲୁହ ପୋଛି ଗୋଟିଏ ତକିଆ ତଳେ ରଖି ବସି ଗୋଟାଏ ବହି ପଢ଼ିବାର ଛଳନା କଲି । ସେ ହସି ହସି ଘର ଭିତରକୁ ଆସି ମୋ କଡ଼ରେ ବସିଲେ । ମୋତେ କୋଳକୁ ଟାଣି ବାରମ୍ବାର ଚୁମ୍ବନ କଲେ । ଘରୁ ଆସିଲାବେଳେ ପୁଣି ଗଲାବେଳେ ଗୋପଭାଇଙ୍କ ଏ ବ୍ୟବହାରରେ ମୁଁ ବାଧା ଦେଇ ପାରେ ନା । ତା'ପରେ ଗୋପଭାଇ କହିଲେ, ପୁନି ଆଜି ମୁଁ ଗୋଟିଏ ବନ୍ଧୁର ବାହାଘରରେ ବରଯାତ୍ରୀ ହୋଇ ଯିବି—ଆସୁ ଆସୁ ରାତି ବାରଟା ହେବ । ଡର ମାଡ଼ିବ ନାହିଁ ତ । କହିଲି, ନା, ଦାମ ଅଛୁ—ଡର କଣ । ଯିବେତ ଯାଉ ନାହାନ୍ତି । ସେ ପୋଷାକ ବଦଳାଇ ଧୋତି ଓ ସିଲ୍କ ପଞ୍ଜାବି ପିନ୍ଧିଲେ । ତା'ପରେ ହସି ହସି କହିଲେ, ଯାଉଛି । ସେ ଚାଲିଗଲେ । ଘଡ଼ିଏ କାଳ ତାଙ୍କ ଗତିପଥକୁ ଚାହିଁ ରହିଲି । ଭାବିଲି ଜୀବନରେ ଏ ମୋର ଶେଷ ଦେଖା—ହୁଏତ ଏ ଜନମରେ ଆଉ କେବେ ଦେଖା ହେବ ନାହିଁ ।

ଗୋପଭାଇ ଚାଲିଗଲାରୁ ମୋର ପଥ ପରିଷ୍କାର ହୋଇଗଲା । ଠିକ୍ କଲି ଦାମ ଶୋଇ ସାରିଲା ପରେ ନିଦ ଠେଲିରେଇ ଏ ଘରୁ ମୁଁ ଚାଲିଯିବି ଦୂରକୁ—ବହୁତ ଦୂରକୁ । ଚିଠି ଖଣ୍ଡିଏ ଲେଖିବାକୁ ସ୍ଥିର କଲି । ଖଣ୍ଡେ ଗୋପଭାଇଙ୍କ କଡ଼କୁ ଲେଖିଲି ।

ସ୍ୱାମୀ ମୋର,

ଜୀବନର ଶେଷ ବିଦାୟ ମୁହୂର୍ତ୍ତରେ ଆଜି ମୋର ଏଇ ସମ୍ବୋଧନ ଶୁଣି ଚମକି ପଡ଼ିବ ନାହିଁ । ଭଉ ଭାଇ ବୋଲି ସାରା ଜୀବନ ଡାକି ଆସିଥିଲି, ଆଜି ଶେଷ ମୁହୂର୍ତ୍ତରେ ସ୍ୱାମୀ ବୋଲି ଡାକି ଜୀବନର ସବୁ ଇଚ୍ଛା ମେଣ୍ଟାଇ ନେଉଛି । ଘରକୁ ଫେରି ରାତି ବାରଟା ବେଳକୁ ମୋତେ ବହୁତ ଖୋଜିବ—କିନ୍ତୁ ସେତେବେଳକୁ

ମୁ ଥିବ ଯାଇ କାହିଁ କେତେ ଦୂରରେ । ଖୋଜଲେ ପାଇବ ନାହିଁ କି ଖୋଜବାର ବୃଥା ଚେଷ୍ଟା କରବ ନାହିଁ ।

ଆଜ ମୋ ସୁଖରେ ମୁଁ ଚ୍ୱଲଯାଉଚ ହସି ହସି—ତମ ଉପରେ ମୋର କୌଣସି ଅଭିଯୋଗ ନାହିଁ—ଦୁଃଖ ନାହିଁ । ଚିର ହତଭାଗିନୀତ ମୁଁ—ଆଉ କାହିଁକି ବଡ଼ ଆଶା ପୋଷି ଜୀବନଟାକୁ ହା ହୁତାଶରେ ଭରବ । ହେମାଙ୍ଗିନୀକୁ ସୁଖୀ କର । ହେମାଙ୍ଗିନୀକୁ ନେଇ ତମର ସଂସାର ନୂଆ କର ଗଢ଼ । ତା'ର ଚିଠିଟା ମୋତେ ଆଜ ନୂଆ ଜୀବନ ଦେଇଚ । ଦେଖା ହେଲେ କହିଥାନ୍ତି, ହେମାଙ୍ଗିନୀ ତମେ କେତେ ମହତ୍; କିନ୍ତୁ ଏ ଜୀବନରେ ଆଉ ତାଙ୍କ ସହିତ ଦେଖା ହେବାର ସୁଯୋଗ ନାହିଁ ।

ଜୀବନ ନେଇ ଖେଳ ଖେଳବାକୁ ଆଉ ସାହସ କର ନାହିଁ । ବାର ବାର କର କହୁଚ, ହେମାଙ୍ଗିନୀକି ସୁଖୀ କରବ । ସେ ସୁଖୀ ହେଲେ ମୁଁ ଯେଉଁଠି ଥିଲେ ବ ସୁଖୀ ହେବ । ଅତୀତର ସବୁ ସ୍ମୃତିଗୁଡ଼ା ମନରୁ ପୋଛି ପକାଇବ । ଏ ଜୀବନରେ ଆଉ ତୁମକୁ ମୁଁ ଆପଣାର କର ପାରଲି ନାହିଁ । ହୁଏତ ପରଜୀବନରେ ହୋଇପାରେ—ଏଇ ଆଶା ରହିଲା । ଅମରକୁ ମଣିଷ କରବ । ତାକୁ ତମର ପୁଅ ବୋଲି ସବୁଠି ପରିଚୟ ଦେବ । ଏତକି ଶେଷ ମୁହୂର୍ତ୍ତରେ ଅଳି । ଆଉ କିଛି ଲେଖି ପାରୁନ—ଆଖିରୁ ଲୁହ ଧାର ଧାର ହୋଇ ଛୁଟିଚ । ମୋ ପଥ ମୋତେ ହାତ ଠାର ଡାକିଲଣି—ଯାଉଚ । ଜୀବନର ଶେଷ ଲୁହବୋଳା ଚୁମ୍ବନଟି ମୋର ଗ୍ରହଣ କରବ । ବି···ଦା···ୟ···

ତମର—ପୁନି

ଆଉ ଖଣ୍ଡେ ଚିଠି ଲେଖିଲି ହେମାଙ୍ଗିନୀ କତକି ।

ଭଉଣୀ,

ଚିଠିଟା ପାଇ ଚମକି ପଡ଼ିବ ନାହିଁ । ତମ ସ୍ୱାମୀଙ୍କୁ ମୁଁ ଆଜ ତମର ହାତରେ ସମର୍ପି ଦେଇ ଚ୍ୱଲଯାଉଚ ଏକ ଅଜଣା ପଥରେ । ଜାଣେନ ଏ ପଥର ଶେଷ କେଉଁଠି ? ତମେ ତମର ସ୍ୱାମୀଙ୍କୁ ଫେର ପାଇବ—କିନ୍ତୁ ଏ ଜୀବନରେ ମୁଁ ଆଉ ମୋ ସ୍ୱାମୀକୁ ଫେର ପାଇବ ନାହିଁ ।

ତମେ ଯାହାକୁ ସ୍ୱାମୀ ବୋଲି ହସି ହସି ଗ୍ରହଣ କରଚ—ମୁଁ ବ ତାଙ୍କୁ ଅମ୍ଳାନ ବଦନରେ ସେଇପର ଗ୍ରହଣ କରଚ; କିନ୍ତୁ ତଥାପି ମୁଁ ହାରଲି—ତମେ ଜିତିଲ ।

କାହିଁକି ତମେ ତାଙ୍କର ସ୍ତ୍ରୀ—ଦୁନିଆ ଜାଣନ୍ତି । କିନ୍ତୁ ମୋତେ, ମୋତେ ଜାଣେ କିଏ ? ଜାଣେ ଗୋପଭାଇ, ଜାଣେ ଉପରେ ଅସୀମ ନୀଳ ଆକାଶ—ଆଉ ତଳେ ଶ୍ୟାମଳ ଧରଣୀ । କିନ୍ତୁ ପ୍ରଣୟରେ ଜନ୍ମପାଟ ନେଇଛି ମୁଁ ଆଶା—ହସି ହସି ମୋ କୋଳରେ ଆସିଛି ଅମର । ତଥାପି ମୁଁ ଦୁର୍ବଳ ହେମାଙ୍ଗିନୀ । ଦୁନିଆ ଆଗରେ ନିଜର ସ୍ୱାମୀ ବୋଲି ଦାବୀ କରି ପାରିଲି ନାହିଁ । ଭୟ ହେଲା—କିଏ ବିଶ୍ୱାସ କରିବ ଗରିବ, ହତଭାଗିନୀ ଝିଅଟା ସହିତ ସମ୍ଭ୍ରାନ୍ତ ବଂଶର ଖାନଦାନ ଭୂନିଆଦ ଘରର ଗୋପବାବୁଙ୍କର ହୃଦୟର ମିଳନ ! ଦୁନିଆ କହିବ ଅସମ୍ଭବ । ସଭ୍ୟଜଗତର ପାଚେରୀ ଉହାଡ଼ରେ ଇମିତି ନିତିଦିନିଆ କେତେ ଘଟଣା ଘଟୁଛି, ଜାଣିଥିବ ।

ଆଉ କିଛି ଲେଖୁନି, ଅମରକୁ ମୋର ତମରି ହାତରେ ଦେଲି । ଯାହା ତମେ ମାଗିଥିଲ ଦେଇ ନଥିଲି—ଆଜି ବଳେ ବଳେ ଯାଚି କରି ଦେଇ ଯାଉଛି । ଘୃଣା କରିବ ନାହିଁ—ହସି ହସି ଗ୍ରହଣ କରିଲେ—କାହିଁ କେତେ ଦୂରରେ ଥିଲେ ବି ଜୀବନଟା ମୋର ଶାନ୍ତିରେ କଟିବ । ବି···ଦା···ୟ···ଭଉଣୀ···

ତମର କେହି ଜଣେ

ଶେଷ ଚିଠିଖଣ୍ଡିରେ ବିକାଶଭାଇଙ୍କ କଥକି ଦି'ଧାଡ଼ି ଲେଖିଲି ।

ବିକାଶ ଭାଇ,

ମୋତେ ଆଣି ଗ୍ରହଣ ଦେଇ ଯାଇଥିଲ ସୁଖୀ କରିବାକୁ—ମୋ ଶୁଖିଲା ମୁହଁରେ ହସ ଫୁଟାଇବାକୁ, କିନ୍ତୁ ବାସୀ ଗୋଲାପର ମଉଳା ମୁହଁରେ ହସ କଣ ଫୁଟି ପାରେ ? ଯେତେ ମଳୟ ବହିଲେ, ଯେତେ ଭ୍ରମରର ଗୁଣୁ ଗୁଣୁରେ ବି ସେ ସେମିତି ପଡ଼ିଥାଏ—ମଳିନ, ନିସ୍ତେଜ, ଅଲୋଡ଼ା ଦରବ ପରି ।

ପାରିଲି ନାହିଁ ଜୀବନକୁ ସୁନ୍ଦର କରି—ମୋ ପଥରେ ମୁଁ ହାରି ମାନି ଗଲିଗଲି । ଜୀବନରେ ତମର ସ୍ନେହ ଭୁଲି ପାରୁନି—ଶେଷ ମୁହୂର୍ତ୍ତିରେ ତମର କଥା ବେଶୀ ମନେ ପଡ଼ୁଚି । ବାପା, ବୋଉଙ୍କୁ ମୋର ଲୁହବୋଳା ପ୍ରଣାମ ଦେବ । କହିବ, ପୁନି ଯାଇଛି ବହୁତ ଦୂରକୁ—ଦିଗ୍‌ବଳୟର ଆହୁରି ସେପଟକୁ । ସେ ଫେରିବ, ଏ ଜନମରେ ନୁହେଁ—ଆର ଜନମରେ । ସେତେବେଳେ ଯେପରି ପର ବୋଲି ଭାବିବ ନାହିଁ—"କଲ୍ପନା" ବୋଲି କୋଳକୁ ଟାଣିନେବେ । ଆଜି ଏତିକି—ପୁଣି ଯାଇ କେବେ··· ··· ···

ତମର

ଅଲୋଡ଼ା ପୁନି

ଚଠି ଭଳ ଖଣ୍ଡେ ଲେଖି ସାର ଗୋପଭାଇଙ୍କ ଟେବୁଲ ଉପରେ ରଖିଲି । ଅମରକୁ ଦୁଧ ଖାଇବାକୁ ଦେଇ ଶୋଇ ପକାଇଲି । ଗଲି ବୋପେଇ ଘରକୁ । ଦେଖିଲି, ଦାମ ସବୁ ବୋଷେଇ ସାରଲେଣି । କହିଲି,ଦାମ ଆଜ କାହିଁକି ଭାର ନିଦ ମାଡ଼ଲେଣି—ଭାତ ବାଢ଼, ଖାଇବା । ବାବୁ ତ ଆଜି ଖାଇବେ ନାହିଁ । ସେ ଭାତ ବାଢ଼ିଲି—ମୁଁ ଖାଇ ବସିଲି । ପେଟକୁ ମୋର ଭାତ ଗଲା ନାହିଁ । ଆଖିରୁ ଲୁହ ଗଡ଼ି ଭାତ ଥାଳି ଓଦା ହୋଇଗଲା । ଲୁହ ପୋଛି ଉଠି ଆସିଲି । ଦାମ ଆସି ପଚାରିଲା, ମା ଖାଇଲେ ନାହିଁ, ଉଠିଗଲେ । ତରକାରୀ କଣ ଖରାପ ହୋଇଚ କି ? କହିଲି, ନାରେ ସବୁ ଭଲ ହେଇଚ । ପେଟଟା କାହିଁକି ଟାଣି ଦେଉଚ—ବେଶି ଖାଇବାକୁ ଇଚ୍ଛା ହେଲା ନାହିଁ । ଦାମକୁ ଖାଇବାକୁ କହି ଉପରକୁ ଆସିଲି । ଟିକିଏ ପରେ ଦାମ ଖାଇସାର ଶୋଇବାକୁ ଗଲା । ଦ'ଘଣ୍ଟା ବିତିଗଲା । ଘଡ଼ିକି ଅନାଇଲି ସାଢ଼େ ବାର । କାନ ପାରଲି ଦାମ ନିଘୋଡ଼ ନିଦରେ ଶୋଇ ପଡ଼ିଲେଣି ।

ଅମର ନିଦରେ ଶୋଇ ପଡ଼ିଥାଏ । ତାକୁ ଆଉଁସି ଦେଇ ତା ଗାଲରେ ସବୁ ଚୁମ୍ବନ ଦେଲି । ଦେହରୁ ସୁନା ଗହଣା ସବୁ କାଢ଼ି ଖଟ ଉପରେ ରଖି ଧୀରେ ଧୀରେ ତଳକୁ ଆସିଲି । ଆଖିରୁ ଲୁହ ଧାର ଧାର ହୋଇ ବହୁଥାଏ । ଯା, ପାଇଁ ଦିନେ ଘର ଦୁଆର, ବୋଉ, ଟୁନ ସବୁ ଛାଡ଼ିଥିଲି—ତାକୁ ଆଜି ନିଛାଟିଆ ରାତିରେ ଏକଲା ଛାଡ଼ି ଯାଉଥାଏ ବୋଲି ହୃଦୟ ମୋର ଦୁଃଖରେ ଭରି ଯାଉଥାଏ । ମନର ସବୁ ଦୁର୍ବଳତା ପୋଛି ଧୀରେ ଧୀରେ ଆସି ଦାଣ୍ଡ ଦରଜା ଥରକର ଖୋଲିଲି । ଗୋଡ଼ ଚପି ପଦାକୁ ଆସିଲି । ଆକାଶରେ ମେଘ ଡାକୁଚି । ଚାରିଆଡ଼େ ଜହ୍ନର ମଇଳା ଆଲୁଅ ବିଛୁଡ଼ି ହେଇ ପଡ଼ିଚ । ପଛକୁ ନ ଚାହିଁ ଜୋରରେ ଆଗକୁ ପାଦ କାଢ଼ି ଚାଲିଲି । ଇମିତି ଆଉ ଗୋଟିଏ ଦିନର ସ୍ମୃତି ଆଖି ଆଗରେ ନାଚି ଉଠିଲା । ବୋଉ, ଟୁନ, ଗାଁ ଘର-ଦୁଆର, ମାଣିକ, ମଧୁଭାଇ—କାହାନ୍ତି ସେ ସବୁ ଆଜି ? ସବୁକୁ ତ ଦିନେ ମୋର ବୋଲି କହିଥିଲି ।

କେତେ ବାଟ ଆଗେଇ ଆସିଲା ପରେ ଦୂରରେ ଦ୍ୱାଦଶୀର ବଙ୍କା ଜହ୍ନ ଡ଼ୁବିଗଲା— ଗଛ ଗହଳି ସେ ପଟରେ । ଚାରିଆଡ଼ ଢାଙ୍କିଲା ଅନ୍ଧାର । ପେଚାଟା ଗଛ ଉପରୁ ବୋବାଉ ଥାଏ । କୁଆଡ଼େ ଥିଲି ହଠାତ୍ ପବନଟା ଖୁବ୍ ଜୋରରେ ବହିଲା । ଆକାଶ ମେଘ ଘଡ଼ଘଡ଼ିରେ କମ୍ପି ଉଠିଲା—ବିଜୁଳୀ ଜୋରରେ ପିଟୁଥାଏ । କୁଆଡ଼କୁ କାନ ନ ଦେଇ ମୁଁ ଚାଲିଥାଏ ମୋର ପଥରେ—କେତେ ଗଛ ଗହଳି, ଖାଲ, ଢିପ, ବିଲ, ଅପନ୍ତରା, ନଈ, ନାଳ, ମଶାଣି ଭୂଇଁ ଅତିକ୍ରମ କରି । ଗୋପଭାଇ, ବିକାଶ-ଭାଇ, ଟୁନ କେତେ ପଛରେ ରହିଲେଣି କିଛି ଜଣା ନାହିଁ । ମୁଁ ଚାଲିଚ—ସୀମାହୀନ

ଅସୀମ ପଥରେ । କେବେ କେଉଁଠି ଏ ଯାତ୍ରାର ଶେଷ ହେବ—କେବେ କେଉଁଠି ନୂତନ ସକାଳର ପ୍ରଥମ ଆଲୁଅ ଜୀବନକୁ ସରସ ସୁନ୍ଦର କରି ମୋ ପଥରେ ରଙ୍ଗିନ କଅଁଳ ଗାଲିଚ୍ଚ ବିଛାଇ ଦେବ ଜାଣେ ନାହିଁ ।

ମୁଁ ଚାଲିଚି·········କାହିଁ କେତେଦୂର············ପଥ କାହିଁ ?············ସବୁ ଅନ୍ଧାର··················································

ଜୀବନରେ ସୂର୍ଯ୍ୟ କଣ ଆଉ ଉଠିବନି ???

କବିତାଭବନ, କଟକ-୩

ରଚନାକାଳ ୧୯୫୧ ମସିହା

